# ଜଗନ୍ନାଥ ପୁରାଣ

## ❋ ଲୀଳା ଖଣ୍ଡ ❋

### ଇନ୍ଦ୍ରଦ୍ୟୁମ୍ନ ବିବରଣ

ଜୟ ଜୟ ଶ୍ରୀଗୁରୁ ଗୋବିନ୍ଦ ଦୟାବାନ
ଜୟ ଶିକ୍ଷାଗୁରୁ କର ପ୍ରେମଭକ୍ତି ଦାନ ।
ଜୟ ଜୟ ଶ୍ରୀଶଚୀନନ୍ଦନ ଗୌରଚନ୍ଦ୍ର
ଜୟ ଜୟ ପତିତପାବନ ନିତ୍ୟାନନ୍ଦ ।
ଜୟ ଜୟ ଅଦ୍ୱୈତ ଆଚାର୍ଯ୍ୟ ଗଦାଧର
ଜୟ ଶ୍ରୀବାସ ପଣ୍ଡିତ ପ୍ରେମ କଳେବର ।
ଭକ୍ତ ଗୋଷ୍ଠୀ ସହ ବନ୍ଦେ ଶ୍ରୀକୃଷ୍ଣ ଚୈତନ୍ୟ
ଅବତରି ରାଧାନାଥ ଧରା କଲେ ଧନ୍ୟ ।
ଜୟ ଜୟ ଦାରୁବ୍ରହ୍ମ ମୂର୍ତ୍ତି ଜଗନ୍ନାଥ
ବଳଭଦ୍ର ସୁଭଦ୍ରା ଯେ ସୁଦର୍ଶନ ସାଥ ।
ଜୟ ଜୟ କ୍ଷେତ୍ରବାସୀ ବୈଷ୍ଣବଗଣ
ଶିରେଧରି ବନ୍ଦୁଅଛି ସବୁରି ଚରଣ ।
ସୃଷ୍ଟିଖଣ୍ଡ ଅନ୍ତେ ଲୀଳାଖଣ୍ଡର ବର୍ଣ୍ଣନ
ଯେଉଁରୂପେ ଦାରୁବ୍ରହ୍ମ ହେଲେ ପ୍ରକଟନ ।
ନୈମିଷ କାନନେ ଶୌନକାଦି ମୁନିଗଣେ
ଜୈମିନିଙ୍କୁ ପଚାରିଲେ ପରମ ଯତନେ ।

ଋଷିରୁବାଚ

କହ କହ ମୁନିବର ଅଦ୍ଭୁତ କଥନ
ଲୀଳାଖଣ୍ଡ ରସକୁ କରାଅ ଆସ୍ୱାଦନ ।
କିରୂପେ ହୋଇଲା ଦାରୁବ୍ରହ୍ମଙ୍କ ପ୍ରକାଶ
ସେହିକଥା ଶୁଣିବାରେ ବଳଇ ମାନସ ।
କେଉଁବଂଶେ ଇନ୍ଦ୍ରଦ୍ୟୁମ୍ନ ନୃପତି ଜନ୍ମିଲେ
କେଉଁଦେଶେ ବାସକରି ପ୍ରଜାଙ୍କୁ ପାଳିଲେ ।
କିରୂପେ ପୁରୁଷୋତ୍ତମେ ଗଲେ ନୃପମଣି,
ବିଷ୍ଣୁ ପ୍ରତିମା ପ୍ରକାଶ କଲେ କେହ୍ନେ ପୁଣି ।
ସର୍ବତତ୍ତ୍ୱ ଜାଣ ତୁମ୍ଭେ ମହାବିଚକ୍ଷଣ
ଯେହ୍ନେ ଯେମନ୍ତ କହ ସେ ସର୍ବ ବିବରଣ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ତହୁଁ ଆହେ ମୁନିଗଣ
କଲ ଯେ ଉତ୍ତମ ପ୍ରଶ୍ନ କରହେ ଶ୍ରବଣ ।
ଯେଉଁ ଚରିତ ଅଟଇ ଅତି ପୁରାତନ
ସଦା ଶୁଭଦାନ କରେ ପାତକ ନାଶନ ।
ଶ୍ରବଣମାତ୍ରେ ଭକତି ମୁକ୍ତି କରେ ଦାନ
ସେହିସବୁ କଥା ଶୁଣ ହୋଇ ସାବଧାନ ।
ପ୍ରଥମ ପରାର୍ଦ୍ଧ ଜାଣ ସହୁଁ ଗତ ହେଲା
ଦ୍ୱିତୀୟ ପରାର୍ଦ୍ଧ ଆସି ପ୍ରବେଶ ହୋଇଲା ।
ସ୍ୱାୟମ୍ଭୁବ ପ୍ରଥମମନୁର ଅଧିକାରେ
ତହିଁ ସତ୍ୟଯୁଗେ ଯାହା କହିବା ବିସ୍ତରେ ।
ମରୀଚି ନାମରେ ହେଲେ ବ୍ରହ୍ମାଙ୍କ ନନ୍ଦନ
ତାଙ୍କ ପୁତ୍ର ହୋଇଲେ କଶ୍ୟପ ତପୋଧନ ।
କଶ୍ୟପଙ୍କ ପୁତ୍ର ଯେ ହୋଇଲେ ଦିବାକର
ଇନ୍ଦ୍ରଦ୍ୟୁମ୍ନ ରାଜା ହେଲେ ତାହାଙ୍କ କୁମର ।
ସତ୍ୟଯୁଗେ ହେଲେ ଇନ୍ଦ୍ରଦ୍ୟୁମ୍ନ ନରପତି
ସତ୍ୟବାଦୀ ସଦାଚାର ଦାତା ଶୁଦ୍ଧମତି ।
ସାତ୍ତ୍ୱିକ ଶ୍ରେଷ୍ଠ ପାଳନ୍ତି ନ୍ୟାୟେ ପ୍ରଜାଗଣ
ମଣୁଥାନ୍ତି ପରଜାଙ୍କୁ ପୁତ୍ରର ସମାନ ।
ଆତ୍ମ-ପରମାତ୍ମ-ତତ୍ତ୍ୱଜ୍ଞାନରେ ପ୍ରବୀଣ
କ୍ଷତ୍ରିଧର୍ମେ କରନ୍ତି ଶତ୍ରୁଙ୍କୁ ଅଧୀନ ।
ସଭାରେ ବସି ପୂଜନ୍ତି ସଦା ଦ୍ୱିଜଗଣେ
ପିତା ମାତାଙ୍କୁ ସେବନ୍ତି କାୟବାକ୍ୟମନେ ।
ଅଷ୍ଟାଦଶ ବିଦ୍ୟାରେ ଦ୍ୱିତୀୟ ବୃହସ୍ପତି
ଐଶ୍ୱର୍ଯ୍ୟରେ ଯେଉଁପରି ଇନ୍ଦ୍ର ସୁରପତି ।
ଭଣ୍ଡାର ସଞ୍ଚୟ ତାଙ୍କ କୁବେର ସମାନ
ଦାତା ଭୋକ୍ତା ପ୍ରିୟବାଦୀ ଅତିରୂପବାନ ।
ଶୁଭଗ ଶ୍ରୀମାନ ସର୍ବ ଯଜ୍ଞ ଅଧିକାରୀ
ସତ୍ୟବାଦୀ ସଦାହିଁ ବିପ୍ରଙ୍କ ହିତକାରୀ ।

ଆଦିତ୍ୟ ସମାନ ତେଜ ଅତି ଶୋଭବନ
ସମର୍ଥ ନହୋନ୍ତି ସର୍ବେ ଦର୍ଶନ କାରଣ ।
ସହସ୍ରାଶ୍ୱମେଧ ରାଜସୂୟ ଯଜ୍ଞଧର
ସାବଧାନ ହୋଇ ସବୁ କଲେ ନୃପବର ।
ମୋକ୍ଷ ବାଞ୍ଛାଯୁକ୍ତ ସଦା ପରମ ଶ୍ରୀମାନ
ସକଳ ଗୁଣରେ ଶ୍ରେଷ୍ଠ ଅଟନ୍ତି ରାଜନ ।
ମାଳବ ନାମେଣ ଦେଶ ବିଖ୍ୟାତ ଭୁବନେ
ଅବନ୍ତୀ ନଗର ତହିଁ ବସିଛି ଯତନେ ।
ନନାରତ୍ନେ ଯୁକ୍ତ ସେହି ଅବନ୍ତୀ ନଗର
ଦ୍ୱିତୀୟ ଅମରାବତୀ ଶୋଭେ ମନୋହର ।
ସେହିସ୍ଥାନେ ରହି ରାଜା କାୟବାକ୍ୟମନେ
ଅଦ୍ଭୁତ ଭକତି କଲେ ବିଷ୍ଣୁଙ୍କ ଚରଣେ ।
ଏହିରୂପେ ଥାନ୍ତି ରାଜା ଅବନ୍ତୀନଗରେ
ବରନାରୀଗଣ ସଦା ସେବନ୍ତି ସାଦରେ ।
ବିଷ୍ଣୁପୂଜା କରନ୍ତି ସେ ହରଷ ହୃଦୟେ
ଏକଦିନେ ଶ୍ରୀପତିଙ୍କ ପୂଜାର ସମୟେ ।
ଦେବତାଙ୍କ ଗୃହେ ନିଜେ ପ୍ରବେଶ ହୋଇଲେ
ନୃପ କୁଳପୁରୋହିତ ସେକାଳେ ଅଇଲେ ।
ସଙ୍ଗେ ବହୁ ପଣ୍ଡିତ ଦୈବଜ୍ଞ କବିଗଣ
ତୀର୍ଥଯାତ୍ରୀମାନେ ପୁଣି ଅନେକ ବ୍ରାହ୍ମଣ ।
ସେହିକାଳେ ଜଗନ୍ନାଥ ଜଟିଳ ରୂପରେ
ପୁରୋହିତ ସଙ୍ଗେ ମିଳି ଚଳନ୍ତି ପଥରେ ।
ନୀଳାଚଳ କ୍ଷେତ୍ର ପ୍ରକାଶିବାର କାରଣେ
କପଟବେଶେ ଚଳନ୍ତି ରାଜା ସନ୍ନିଧାନେ ।
ତେଜୋମୟ ସନ୍ନ୍ୟାସୀ ଦେଖିଣ ବିପ୍ରବର
ସଙ୍ଗେ ଘେନି ଚଳିଲେ ଯେ କରିଣ ଆଦର ।
ଏ ସଭଙ୍କ ସହ ଦ୍ୱିଜ ପ୍ରବେଶ ହୋଇଲେ
ଦେଖି ରାଜା ସମାଦରେ ତାହାଙ୍କୁ କହିଲେ ।
ଶୁଣ ପୁରୋହିତେ କ୍ଷେତ୍ର କଥା ଜାଣ ଭଲେ
ସାକ୍ଷାତ ଶ୍ରୀହରି ବିହରନ୍ତି ଯେଉଁସ୍ଥଳେ ।
ଏହିନେତ୍ରେ କରି ପାରିବି କି ଦରଶନ
ଯଦି ଜାଣ କହିଦେବ ମୋହର ଅଗ୍ରେଣ ।
ଶୁଣି ପୁରୋହିତ ଗୃହୀଁ ତୀର୍ଥଯାତ୍ରୀଗଣେ
କହନ୍ତି ବିନୟ କରି ମଧୁର ବଚନେ ।
ଶୁଣ ଶୁଣ ଧର୍ମଶୀଳ ତୀର୍ଥ ଯାତ୍ରୀଗଣ
ନୃପତି କହିଲେ ଯାହା କଲତ ଶ୍ରବଣ ।
ସେହି ସଭା ମଧ୍ୟରେ ଜଟିଳ ଯେହୁ ଥିଲେ
ରାଜାଙ୍କଠାରେ କରୁଣା କରିଣ କହିଲେ ।
ଶୁଣ ମହାରାଜ କହୁଛି ମୋହର ବଚନ
ଶିଶୁ କାଳରୁ ଯେ ମହିଁ କରିଛି ଭ୍ରମଣ ।
ଭ୍ରମିଣ ଆସିଲି ମୁହିଁ ସେହୁ ତୀର୍ଥମାନ
ସେ ସବୁ ମୋ ଠାରୁ ନରେ କରନ୍ତୁ ଶ୍ରବଣ
ମନୁଷ୍ୟର ଅଗମ୍ୟ ଅସଂଖ୍ୟ ତୀର୍ଥଗଣ
ଯତନେ କହିବି ତାର ବିସ୍ତାର କଥନ ।
ଏକ ମନ ହୋଇ ରାଜା ସାବଧାନେ ଶୁଣ
ପୃଥ୍ୱୀର ସକଳ ତୀର୍ଥ କଲିଁ ଯେ ଭ୍ରମଣ ।
ଭାରତବର୍ଷ ମଧ୍ୟରେ ଅଛି ଏକସ୍ଥାନ
ଓଡ୍ର ଦେଶ ନାମ ତାର ବିଖ୍ୟାତଟି ଜାଣ ।
ସେହି ଓଡ୍ର ଦେଶରେ ଦକ୍ଷିଣ ସିନ୍ଧୁତୀରେ
ମନୋହରକ୍ଷେତ୍ର ପୁରୁଷୋତ୍ତମ ନାମରେ ।
ସେହି କ୍ଷେତ୍ର ବିରାଜେ ନୀଳଗିରି ନାମ
ଗିରିବର କାନନେ ଆବୃତ୍ତ ଅନୁପମ ।
ସେହିଗିରି ମଧ୍ୟେ ଅଛି କଳ୍ପବଟ ଏକ
ଗିରିବରେ ଏକ ଏକ କୋଶ ଯାଏଁ ଠିକ ।
ସେହି ବଟବୃକ୍ଷର ମହିମା ଅକଥନ
ସାକ୍ଷାତେ ଅଟଇ ସେହୁ ବିଷ୍ଣୁଙ୍କ ସମାନ ।
ଯେ ବଟପତ୍ରର ଛାୟା ପଡ଼େ ଯାର ଦେହେ
ବ୍ରହ୍ମହତ୍ୟା ପାପ ତାର ତତ୍‌କ୍ଷଣ ପଳାଏ ।
ରୋହିଣୀ ନାମରେ କୁଣ୍ଡ ପଶ୍ଚିମେ ତାହାର
ପାବନ ଜଳେ ସେ କୁଣ୍ଡ ପୂର୍ଣ୍ଣ ନୃପବର ।
ତାର ଜଳ ସ୍ପର୍ଶେ ମୁକ୍ତି ପଦ ମିଳେ ବଳେ
କୁଣ୍ଡର ମହିମା କିଏ କହିବ ସଂସାରେ ।
ତାରପୂର୍ବ ତଟେ ଛନ୍ତି ପ୍ରଭୁ ଭଗବାନ
ଇନ୍ଦ୍ର ନୀଳମଣି ନୀଳମାଧବ ମୋହନ ।
କୁଣ୍ଡେ ସ୍ନାନସାରି ସେହୁ ଦରଶନ କରେ
ତତ୍‌କ୍ଷଣେ ମୁକ୍ତି ପାଏ ବୁଝ ହେ ମନରେ ।
ପ୍ରଭୁଙ୍କ ପଶ୍ଚିମ ଦିଗେ ଏକ ସ୍ଥାନ ପୁଣ
ଶବର ଦୀପକ ବୋଲି ଅଟେ ତାର ନାମ ।
ଉତ୍ତମ ଆଶ୍ରମ ସେହି ଜାଣ ହେ ନିଶ୍ଚୟେ
ଶବର କୁଟୀର ବୃନ୍ଦାବନେ ଶୋଭାପାଏ ।
ଏକପଦ ପଥ ଅଛି ଯେତାଳୁ ଯେମନ୍ତେ
ଗମନ କରନ୍ତି ବିଷ୍ଣୁ ଆଳୟ ନିମନ୍ତେ ।

ଶ୍ରୀନୀଳମାଧବ ମୂର୍ତ୍ତି ପ୍ରଭୁ ଭଗବାନ
ଦରଶନେ ମାତ୍ରେ କରନ୍ତି ଯେ ମୁକ୍ତି ଦାନ ।
ତାଙ୍କ ସେବା ଲାଗି ମୁହିଁ ହୋଇ ବନବାସୀ
ବର୍ଷେ ହେଲା ଆସିଲଣି ଏ ବ୍ରତ ଆଚରି ।
ପ୍ରଭୁ ଦର୍ଶନେ ଆସନ୍ତି ନିତ୍ୟେ ଦେବଗଣ
କଳ୍ପତରୁ କୁସୁମ କରନ୍ତି ବରଷଣ ।
ନାନା ସ୍ତୁତି ଗାନ ମୁହିଁ ଶୁଣଇ ଶ୍ରବଣେ
ଏମନ୍ତ ମହିମା ଦେଖା ନାହିଁ କେଉଁ ସ୍ଥାନେ ।
ସେଠାରେ ଶୁଣିଲି ଏକ ପୁରାତନ ବାକ୍ୟ ।
ମାଧବ ଦର୍ଶନେ ଚତୁର୍ଭୁଜ ହେଲା କାକ ।
ପୂର୍ବେ ମୁହିଁ ଅଜ୍ଞତାରୁ ଅଜ୍ଞାନ ଯେ ଥିଲି
ଶ୍ରୀହରି ଦର୍ଶନେ ଚିତ୍ତ ନିର୍ମଳ କରିଲି ।
ଏଣୁକରି କାହିଁରେ ନଲାଗେ ମୋର ମନ
ବିଷ୍ଣୁ ବିନା ନେତ୍ରେ କିଛି ନକରେ ଦର୍ଶନ ।
ତୁମ୍ଭେ ମହାଭକ୍ତ ଏଣୁ ଦେବାକୁ ଆଦେଶ
ଆସିଅଛି ସିନା ମୁହିଁ ଅହେ ନରେଶ ।
ଧନ ରତ୍ନେ କିଛି ମୋର ନାହିଁ ପ୍ରୟୋଜନ
ଏହି ମୋ ମାଗୁଣି ଭଜ ମାଧବ ଚରଣ ।
କେବେହେଁ ନମଣ ମିଥ୍ୟା ଏ ମୋର ବଚନ,
ସତ୍ୟ ସତ୍ୟ ଜାଣ ଏହୁ ସବୁ ବିବରଣ ।
ଏହିରୂପେ ଇନ୍ଦ୍ରଦ୍ୟୁମ୍ନେ ଜଟିଳ କହିଣ
ସେଠାରୁ ସେ ମହାତମା ହେଲେ ଅନ୍ତର୍ଦ୍ଧାନ ।
ଶ୍ରୀଗୁରୁ ଗୌରାଙ୍ଗ ପାଦପଦ୍ମ କରିଆଶ
ଲେଖଇ କ୍ଷେତ୍ର ମାହାତ୍ମ୍ୟ ବଇଷ୍ଣବ ଦାସ ।

—×—

## ବିଦ୍ୟାପତି ଓ ରାଜାଙ୍କ ବୃତ୍ତାନ୍ତ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ସର୍ବେ କର ହେ ଶ୍ରବଣ
ଜଟିଳଙ୍କ ଅନ୍ତର୍ଦ୍ଧାନ ଦେଖିଣ ରାଜନ ।
ବ୍ୟାକୁଳିତ ଚିତ୍ତ ହୋଇ ତହୁଁ ସେ କହନ୍ତି
ଦିନଟିଏ ଆହା ମୋର ହୋଇବ କି ଗତି ।
ପୁରୋଧାଙ୍କୁ ଚାହିଁଣ କହନ୍ତି ଦୁଃଖମନେ,
ପୁରୁଷୋତ୍ତମ ଦର୍ଶନ କରିବି ମୁଁ କେନ୍ତେ ।
ଶୁଣି ପୁରୋହିତ ଭଣି ନହୁଅ କାତର
ଅବଶ୍ୟ ଦେଖିବ ତୁମ୍ଭେ ଦେବ ଗଦାଧର ।
ବିଦ୍ୟାପତି ଆମ୍ଭର କନିଷ୍ଠ ସହୋଦର
କ୍ଷେତ୍ରେ ପଠାଇବା ତାଙ୍କୁ ଆହେ ନୃପବର ।
ତହିଁ ଯାଇଁ ମାଧବଙ୍କ ଉଦ୍ଦେଶ କରିଣ
ତୁମ୍ଭଙ୍କୁ କହିବେ ଆସି ସବୁ ବିବରଣ ।
ଏମନ୍ତ କହି ପୁରୋହିତ ନିଜପୁରେ ଗଲେ
ବିଦ୍ୟାପତି ଭାଇଙ୍କି ସେ ସମସ୍ତ କହିଲେ ।
ତା ଶୁଣି ହରଷ ଚିତ୍ତ ହେଲେ ତପୋଧନ
ରାଜାଙ୍କ ନିକଟେ ବେଗେ କଲେ ସେ ଗମନ ।
ଭକ୍ତ ଇନ୍ଦ୍ରଦ୍ୟୁମ୍ନ ରାଜା ଦେଖି ଧାଇଁକାରେ
କାନ୍ଦି କାନ୍ଦି କହିଲେ ଯେ ଗଦଗଦ ସ୍ୱରେ ।
ଶୁଣ ଦେବ ବିଦ୍ୟାପତି ମୋର ନିବେଦନ
ଯଦ୍ୟପି ଆପଣ କ୍ଷେତ୍ରେ କରନ୍ତି ଗମନ ।
ନିର୍ଣ୍ଣୟ କରିଣ ସ୍ଥାନ କହନ୍ତି ମୋହରେ
ତେବେ ଜାଣିବି ସୁଦୟା ଅଛି ଭୃତ୍ୟଠାରେ ।
ବିଦ୍ୟାପତି କହନ୍ତି ନୃପତି ବାଣୀ ଶୁଣି
ସ୍ଥିର ଚିତ୍ତ ହୋଇ ତୁମ୍ଭେ ରହ ନୃପମଣି ।
ଏହିକ୍ଷଣି କ୍ଷେତ୍ରେ ମୁହିଁ କରିବି ଗମନ
ଏତେ କହି ଗଲେ ଦ୍ୱିଜ କରି ପ୍ରଦକ୍ଷିଣ ।
ରଥେ ଚଢ଼ି ଚଳିଗଲେ ହୋଇ ତୋଷମନ
ହୃଦମଧ୍ୟେ ପ୍ରଭୁପଦ କରୁଛନ୍ତି ଧ୍ୟାନ ।
ଭାଳନ୍ତି ସେ ପୁଣି ମନେ ମନେ ଯେ ଏମନ୍ତେ
ପୂର୍ବ ପୁଣ୍ୟ ଫଳ ଆଜି ମିଳିଲାତ ମୋତେ ।
ଯେଣୁ ସାକ୍ଷାତେ ଦେଖିବି ଦେବ ଶିରିପତି
ଯାର ଦରଶନେ କାକ ଲଭିଲା ମୁକତି ।
ଶାସ୍ତ୍ର ପୁରାଣେ ଯାହାର ଅନ୍ତ ନମିଳଇ
ସାକ୍ଷାତରେ ତାହାଙ୍କୁ ଦେଖିବି ନେତ୍ରେ ମୁହିଁ ।
କର୍ମ ଧର୍ମ ଜ୍ଞାନେ ଯାଙ୍କ ଚରଣ ଅଦୃଶ୍ୟ
କେବଳ ଭକତ ଭାବେ ଯେଉଁ ପ୍ରଭୁ ବଶ ।
ଯାର ପ୍ରତିଲୋମ କୂଳେ ଅଶେଷ ବ୍ରହ୍ମାଣ୍ଡ
ଯାହାର ନିଶ୍ୱାସୁ ଜାତ ବେଦଗ୍ରନ୍ଥ ଖଣ୍ଡ ।
ସେହିପୁଣି ଗୁପ୍ତ ପଞ୍ଚକୋଶର ଭିତରେ
ସ୍ୱରୂପ ଜ୍ଞାନରେ ମାତ୍ର ଜାଣନ୍ତି ଯାହାରେ ।
ସେଉଁ ହରି ନୀଳଗିରି ମଣ୍ଡଳ ମଣ୍ଡନ
ଏ ପାପୀ ନୟନ ତାଙ୍କୁ କରିବ ଦର୍ଶନ ।
ଯତେକ ଏ ଭାଗ୍ୟମୋର ଉଦୟ ହୋଇଛି
ଶୁଭେ ମୋତେ ଦରଶନ ଦେବେ ଶିରୀହରି ।

ଏହିପରି ଭାବି ଭାବି ଗଲେ ବିଦ୍ୟାପତି
କିଛିଦିନେ ଉତ୍କଳର ସୀମାରେ ମିଳନ୍ତି ।
ପୁଣ୍ୟତୋୟା ମହାନଦୀ ହୋଇଗଲେ ପାର
ଏକାମ୍ର କାନନେ ଚଳିଗଲେ ବିପ୍ରବର ।
ଚତୁର୍ଭୁଜ ଜମ୍ବୁ ସର୍ବ ଦେଖିଣ ସେଠାରେ
ପ୍ରଣାମ କରି ଚଳିଲେ ଅତି ହରଷରେ ।
କୋଟିଲିଙ୍ଗେଶ୍ୱର ଦେଖି ଦଣ୍ଡବତ କରି
ସେଠାରୁ ଚଳିଲେ ମନେ ଧ୍ୟାୟିଣ ଶ୍ରୀହରି ।
ଭାର୍ଗବୀ ନଦୀକି ପାରହୋଇ ଅଚିରରେ
ପ୍ରବେଶ ହୋଇଲେ ଯାଇଁ ଶ୍ରୀନୀଳାଚଳରେ ।
ଅତିଉଚ୍ଚ ଗିରିବର କଣ୍ଟକେ ବ୍ୟାପିତ
ଉଠି ନପାରି କାନ୍ଦନ୍ତି ମନେ ହୋଇ ଖିତ ।
ହାୟ ହାୟ କେଉଁ ବୁଦ୍ଧି କରିବଇଁ ଏବେ
ଦର୍ଶନ କରିବି କେମନ୍ତେ ଶ୍ରୀନୀଳମାଧବେ ।
ଜନଶୂନ୍ୟ ସ୍ଥାନ ଛନ୍ତି ସିଂହ ବ୍ୟାଘ୍ରଗଣ
ଜାଣିଲି ନିଶ୍ଚୟ ହେଲା ମୋହର ମରଣ ।
ଏତେ କହି ଶୟନ କରିଣ କୁଶାସନେ
ଜପନ୍ତି ପ୍ରଣବମନ୍ତ୍ର ଶ୍ରୀକାନ୍ତକ ମନେ ।
ଏମନ୍ତ ସମୟେ ମନୁଷ୍ୟର ବାଣୀ କର୍ଣ୍ଣେ
ଶ୍ରବଣ କଲେ ସେ ଘୋର ଗହନ କାନନେ ।
ଗିରିର ପଶ୍ଚିମ ଦିଗେ ଧୀର ଧୀର ହୋଇ
ଚଳିଗଲେ ଦ୍ୱିଜବର ଗିରିଆରୋହି ରହିଁ ।
ସେହି ପଶ୍ଚିମ ପାରୁଶେ ଚତୁର୍ଭୁଜ ହୋଇ
ବସିଛନ୍ତି ବହୁଜନେ ଦିବ୍ୟତେଜ ପାଇ ।
ତାହାଙ୍କୁ ଦର୍ଶନ କରି ଆନନ୍ଦିତ ମନେ
ପ୍ରଣମିଲେ ଭକ୍ତିଭରେ ତାଙ୍କର ଚରଣେ ।
ବେନି ନୟନରୁ ବହିଯାଏ ଅଶ୍ରୁଧାର
ହରି ହରି ବୋଲିଣ ଡାକିଲେ ବାରବାର ।
ଏହିକାଳେ ବିଶ୍ୱାବସୁ ନାମରେ ଶବର
ହରିଙ୍କ ସେବକ ସେହୁ ମହାଭକ୍ତ ବର ।
ନୀଳମାଧବଙ୍କ ମାଳା ପ୍ରସାଦ ଘେନିଣ
ନିଜଗୃହେ ଆସୁଅଛି ହରଷ ହୋଇଣ ।
ଦ୍ୱିଜବରେ ଦେଖି ସେହି ଶବର ତକ୍ଷଣି
ଭୂମିଷ୍ଠ ପ୍ରଣମି ପଦ କଲେକ ବନ୍ଦନ ।
ସମ୍ମାନ କରି ବୋଇଲେ ବଚନ ମଧୁର
ମୋଗୃହେ ଆଗତ କେଉଁକାର୍ଯ୍ୟେ ଦ୍ୱିଜବର ।

ବଡ଼ ଭାଗ୍ୟମୋର ଆଜ ପାଇଲି ଅତିଥି
ବିପ୍ର ବିଷ୍ଣୁ ଏକବୋଲି ବେଦେ କହୁଛନ୍ତି ।
ବିଦ୍ୟାପତି କହନ୍ତି ଶୁଣ ହେ ମହାଶୟ
ଇନ୍ଦ୍ରଦ୍ୟୁମ୍ନ ନାମେ ଅବନ୍ତୀର ନରରାୟ ।
ହରିଙ୍କ ଉଦ୍ଦେଶେ ମୋତେ ଏଥି ପଠାଇଲେ
ଦେଖିଯାଇଁ ତାଙ୍କୁ ସବୁ କହିବଇଁ ଭଲେ ।
ଯେ ପର୍ଯ୍ୟନ୍ତ ନ ଦେଖିବି ପ୍ରଭୁଙ୍କ ଚରଣ
ସେ ପର୍ଯ୍ୟନ୍ତ ଉପବାସ ରହିବି ପ୍ରମାଣ ।
ଶୁଣି ଶବର ନୃପତି ବିସ୍ମୟ ହୋଇଲା
ମନେ ମନେ ପୁଣି ଏହିପରି ସେ ଭାବିଲା ।
ଜାଣିଲଇଁ ଏତେଦିନେ ଦୟାମୟ ହରି
ଛାଡ଼ିଲେ ନିଶ୍ଚଏଁ ମୋତେ ଆନେ କୃପାକରି ।
ଏହିପରି ଚିନ୍ତା କରୁ କରୁ ତାର ମନେ
ପୂର୍ବକଥା ଚେତୋଇଲା ପୁଣି କିଛିକ୍ଷଣେ ।
ସତ୍ୟଯୁଗେ ଇନ୍ଦ୍ରଦ୍ୟୁମ୍ନ ହୋଇବେ ରାଜନ
ହୋଇବେ ସେ ପୁଣି ଭବେ ମହାଭକ୍ତିମାନ ।
ସର୍ବଶୁଭେ ଏହିଠାକୁ ଆସିଣ ସେ ନୃପ
କରିବେ ସହସ୍ରେ ଯଜ୍ଞ ଦୂରାଇବେ ପାପ ।
ତହିଁ ତୋଷହୋଇ ନୀଳରୂପୀ ନାରାୟଣ
ନବ ଲାବଣ୍ୟ ମୂରତି ହେବେ ଅନ୍ତର୍ଦ୍ଧାନ ।
ଦାରୁବ୍ରହ୍ମ ରୂପେ ପ୍ରକଟିବେ ନୀଳାଚଳେ
ପତିତପାବନ ବାନା ଉଡ଼ାଇବେ ହେଳେ ।
ପ୍ରଥମେ ଆସିଣ ତାଙ୍କ କୁଳପୁରୋହିତ
କହିବ ରାଜାଙ୍କୁ ନୀଳମାଧବ ବୃତ୍ତାନ୍ତ ।
ପ୍ରସିଦ୍ଧ ହୋଇଛି ଏହି କଥା ପୂର୍ବବତ୍
ଅନ୍ତର୍ଦ୍ଧାନ ହେବେ ନିଶ୍ଚେ ବାଞ୍ଛାକଳ୍ପତରୁ ।
ତେବେ ଆଉ ବିପ୍ରେ ପ୍ରତାରଣା କିବାକାର୍ଯ୍ୟ
ଏହୁ ମନଦୁଃଖ କଲେ ହୋଇବ ଅକାର୍ଯ୍ୟ ।
ଏତେଭାବି କହିଲା ସେ ମଧୁର ବଚନ
ଆସହେ କରିବ ନୀଳମାଧବ ଦର୍ଶନ ।
ଏହାକହି ବିପ୍ରକର ଧରି ଘେନିଗଲା
ନୀଳଗିରି ଉପରେ ଯାଇଣ ଉତ୍ତୁରିଲା ।
ଶ୍ରୀରୋହିଣୀ କୁଣ୍ଡ କଳ୍ପବଟ ଏହିଦୁଇ
ଅତି ଆନନ୍ଦ ମନରେ ଦର୍ଶନ କରାଇ ।
ନୀଳମାଧବଙ୍କୁ କରାଇଲା ଦରଶନ
ନେତ୍ରଭରି ଦେଖେ ବିପ୍ର ପ୍ରଭୁ ଭଗବାନ ।

କୋଟିକାମ ଜିଣି ରୂପ ପ୍ରସନ୍ନବଦନ
ନବୀନ ନୀରଦ ତନୁ ଭୁବନ ମୋହନ ।
ଚତୁର୍ଭୁଜ ଶଙ୍ଖଚକ୍ର ଗଦାପଦ୍ମ ଧାରୀ
ହୃଦୟେ କୌସ୍ତୁଭ କୋଟିସୂର୍ଯ୍ୟ ତିରସ୍କାରି ।
ଗଳାରେ ଯେ ବନମାଳା ବୈଜୟନ୍ତୀ ହାର
ରତନ ମୁକୁଟ ଶିରେ ଅତି ମନୋହର ।
ସର୍ବାଙ୍ଗ ଯାକରେ ନାନାରତ୍ନ ଆଭରଣ
ଦାଉ ଦାଉ ହୋଇ ଅପୂର୍ବ କରଣ ।
ଶ୍ରୀରଙ୍ଗ ଚରଣ ଶୋଭା ଅତ୍ୟନ୍ତ ମାଧୁରୀ
ଉପମା ଦେବାକୁ ନାହିଁ ନାହିଁ ତିନିପୁରୀ ।
ବାମ ପାର୍ଶ୍ୱରେ ଶୋଭା ଲକ୍ଷ୍ମୀଠାକୁରାଣୀ
ସୌନ୍ଦର୍ଯ୍ୟର ସୀମା ବୀଣା-ବାଦ୍ୟପରାୟଣୀ ।
ଏକସ୍ଥେ ଉଦିତ ହେମ ମରକତ ଆଭା
ଶ୍ୟାମମେଘେ ସୌଦାମିନୀ ଜଡ଼ିଅଛି କିବା ।
ପ୍ରଭୁଙ୍କ ବଦନେ ଦୃଷ୍ଟି କରନ୍ତି ଅର୍ପଣ
ପୂର୍ଣ୍ଣଚନ୍ଦ୍ର ମୁଖେ ମୃଦୁହାସ ସୁଶୋଭନ ।
ସପ୍ତଫଣା ଛତ୍ରଧର ପଛରେ ଅନନ୍ତ
ରହିଛନ୍ତି ଆହା କେଡ଼େ ଶୋଭା ଲକ୍ଷ୍ମୀକାନ୍ତ ।
ସମ୍ମୁଖରେ ସୁଦର୍ଶନ ଗରୁଡ଼ ସହିତ
ରୂପଦେଖି ବିପ୍ରବର ହୋଇଲେ ମୂର୍ଚ୍ଛିତ ।
ତାହା ଦେଖିଣ ଶବର ତୋଳିଣ ଧଇଲେ
ଜୟ ଜୟ ଧ୍ୱନି ଉଚ୍ଚାରଣ କୋଳକଲେ ।
ପ୍ରେମସିନ୍ଧୁନୀରେ ଦ୍ୱିଜବର ନିମଗନ
ଦୁଇ କରଯୋଡ଼ି ସ୍ତବ କଲେ ତତକ୍ଷଣ ।
ଜୟ ଜୟ ଲକ୍ଷ୍ମୀପତି ବ୍ରହ୍ମାଣ୍ଡ ଠାକୁର
ଜୟ ଜୟ ବିଶ୍ୱମ୍ଭର କରୁଣାସାଗର ।
ଜୟ ଜୟ ମାୟାମୟ ପରମ କାରଣ
ଜୟ ଜୟ ଭୁବନମୋହନ ନାରାୟଣ
ଜୟ ଜୟ ପତିତପାବନ ଦୀନବନ୍ଧୁ
ଜୟ ଜୟ ଭକତବତ୍ସଳ ଗୋପଇନ୍ଦୁ ।
ଜୟ ଜୟ ଅନ୍ତର୍ଯ୍ୟାମୀ ନାଥ ଦଇତ୍ୟାରି
ଜୟ ଜୟ ସର୍ବେଶ୍ୱର ମୁକୁନ୍ଦ ମୁରାରି ।
ଦୟାକର ଶ୍ରୀଚରଣ ଛାୟା ଦେଇ ମୋରେ
ମାଗୁନାହିଁ ଧନଜନ ତବ ଶ୍ରୀଛାମୁରେ ।
ଏହିପରି ନାନାସ୍ତବ କରି ଦ୍ୱିଜବର
ବାର ବାର ପ୍ରଣମିଲେ ପ୍ରଭୁଙ୍କ ପୟର ।

ଶବର ସହିତେ ଗୃହେ ପରବେଶ ହେଲେ
ସେହି ରାତି ଦୁହେଁ ହରି କଥାରେ ମଜ୍ଜିଲେ ।
ଆରଦିନ ପ୍ରାତେ ଉଠି ସ୍ନାନ ବିଧି ସାରି
ପ୍ରଭୁଙ୍କ ଦର୍ଶନ ପୁଣି କଲେ ମୋଦଭରି ।
ସମୁଦ୍ରରେ ସ୍ନାନକରି ପଞ୍ଚକ୍ରୋଶୀ ଭ୍ରମି
ନୀଳମାଧବ ଦେବଙ୍କ ପାଦପଦ୍ମେ ନମି ।
ଶବର ପାଶୁଁ ମେଲାଣି ମାଗି ଦ୍ୱିଜବର
ଲେଉଟିଲେ ନିଜଦେଶେ ଆନନ୍ଦ ଅନ୍ତର ।
ଅବନ୍ତୀ ନଗରେ ଯାଇଁ ହୋଇଲେ ପ୍ରବେଶ
ତୁଣ୍ଡେ ଗାଇ ଗାଇ ଶ୍ରୀହରିଙ୍କ ଗୁଣ ଯଶ ।
ସେହିଦିନ ସାୟାହ୍ନେ ଯେତେକ ଦେବଗଣେ
ନିତ୍ୟାନୁରୂପେ ଆସିଲେ ପ୍ରଭୁ ଦରଶନେ ।
ସେହିକାଳେ ଘୋରବାତ ବହିଣ ଲାଗିଲା
ସୁବର୍ଣ୍ଣ ବାଲୁକା ଉଡ଼ି ଦିଗ ଆଚ୍ଛାଦିଲା ।
ଅତିଶୟ ଘୋରତର ପ୍ରଳୟ ସମାନ
ଅନ୍ଧକାର ହେଲା କିଛି ନ ଦିଶିଲା ପୁଣ ।
ଚକ୍ଷୁ ଫେଇ ଚାହିଁ ନ ପାରନ୍ତି ଦେବଗଣେ;
ଶକ୍ତି ନାହିଁ ଶ୍ରୀନୀଳମାଧବ ଦରଶନେ ।
ଯେତେବେଳେ ଘୋରବାତ ହୋଇଲା ନିବୃତ୍ତି
ତହୁଁ ନୟନ ଫେଇଲେ ଭଲେ ଦେବବ୍ରାତ ।
ଦେଖିଲେ ବାଲୁକାରାଶି ପର୍ବତ ସମାନ
ମାଧବ ରୋହିଣୀ କୁଣ୍ଡ ହେଲା ଅନ୍ତର୍ଦ୍ଧାନ ।
ବ୍ୟାକୁଳିତ ଚିତ୍ତହୋଇ ସର୍ବଦେବଗଣ
କର କଣ୍ଠେ ଜଣ ସେହୁ କରନ୍ତି ରୋଦନ ।
ବୋଲନ୍ତି କରୁଣସ୍ୱରେ ଆହା ଦେବ ହରି
ଶ୍ରୀନୀଳମାଧବ ରୂପ ନୀଳାଦ୍ରି ବିହାରୀ ।
ନୟନାନନ୍ଦ ମୂରତି ବ୍ରହ୍ମାଣ୍ଡ ଠାକୁର
କେଉଁପରି ଦରଶନ ପାଇବୁଁ ତୁମ୍ଭର ।
କି କରିବୁଁ କାହିଁ ଯିବୁ ନ ଦିଶଇ ବୁଦ୍ଧି
ଦୟାକରି ଦରଶନ ଦିଅ ଦୟାନିଧି ।
କି ଅପରାଧେ ତେଜିଲ ଆମ୍ଭଙ୍କୁ ମାଧବ
ଅନୁଗତ ଶ୍ରୀଚରଣେ ଆମ୍ଭେ ସର୍ବଦେବ ।
ତୁମ୍ଭ ଶ୍ରୀମୂର୍ତ୍ତି ଆମ୍ଭର ଅଟଇ ପ୍ରାଣଧନ
କି କାରଣେ ବନେ ତ୍ୟାଗ କରୁଛ ଆପଣ ।
ଶୁଣ ଆହେ ଦେବ-ଦେବ ରାଜଚକ୍ରବର୍ତ୍ତୀ
ଆମ୍ଭ ସନ୍ଧିଙ୍କି ଯେ ପରଜ ବାଞ୍ଛିତ୍ରଜ ମତି ।

ତୁମ୍ଭର ଆଦେଶବଳେ ତୋଷ କରୁଁ ତାକୁ
ଏବେ ଯେ ଦର୍ଶନ ଯାହା ନ ହଅ ଆମ୍ଭଙ୍କୁ ।
ଆଜ ସ୍ୱର୍ଗେ କମ୍ପା ଯିବୁଁ କବାକାର୍ଯ୍ୟ ତହିଁ
ନଗରହାଟରେ ବନେ ଥିବୁଁ ଜଟାବଲ୍‌କ ବହି ।
ଯେ ଅବଧି ନପାଇବୁଁ ତୁମ୍ଭ ଦରଶନ
ତାବତ କାଳ ବନସ୍ତେ ଥିବୁଁ ଜନାର୍ଦ୍ଦନ ।
ତୁମ୍ଭ ଦର୍ଶନ ବନୁହେ ଜଗତ-ଈଶ୍ୱର
ଅତ୍ୟନ୍ତ ଅନାଥ ଆମ୍ଭେ ସକଳ ଅମର ।
ଦୁଃଖ ସିନ୍ଧୁମରେ ବୁଡ଼ ରହିଲୁଣି ହାଦେ
ଲୟ ଲଗାଇଛୁଁ ଏକା ତୁମ୍ଭ ପଦ୍ମପାଦେ ।
ଦୀନବନ୍ଧୁ ଜଗନ୍ନାଥ କରୁଣା ସାଗର
ସୁପ୍ରସନ୍ନ ହୋଇ କୃପା ଦୃଷ୍ଟି ପାତକର ।
ଏ ଦୁଃଖ ସମୁଦ୍ର ଜଳୁଁ କର ହେ ଉଦ୍ଧାର
ଅନ୍ୟଗତି ନାହିଁ କିଛି ଜାଣ ବିଶ୍ୱମ୍ଭର ।
ଏହିରୂପେ ଦେବଗଣ କରୁଣ କ୍ରନ୍ଦନେ
ଡାକନ୍ତେ ଅତି ଆକୁଳେ ବିଷାଦିତ ମନେ ।
ତାହାଙ୍କ ପ୍ରତି ସଦୟ ହୋଇ ଚକ୍ରପାଣି
ଅନ୍ତରୀକ୍ଷେ ରହିଣ କହିଲେ ମଞ୍ଜୁବାଣୀ ।
ଶୁଣ ଶୁଣ ଦେବଗଣ ନିକର କନ୍ଦନ
ଏହି ବିଷୟରେ ସର୍ବେ ତେଜ ହେ ଯତନ ।
ଆଜଠାରୁ ଦର୍ଶନ ଦୁର୍ଲ୍ଲଭ ହେବ ଜାଣ
ଶ୍ରୀନୀଳମାଧବ ରୂପ କଲି ଅନ୍ତର୍ଦ୍ଧାନ ।
କେବଳ ଦର୍ଶନ ଫଳ ଏଠାରେ ପାଇବ
ଏବନୁ ମୋହର ମୂର୍ତ୍ତି ଦେଖି ନ ପାରିବ ।
ଯେଉଁ ମୋ ରୂପକୁ ମନେ ମନେ ଚିନ୍ତା କରି
ପ୍ରଣାମ କରିବ ଏଥି ହୃଦେ ଭକ୍ତିଭରି ।
ନିଶ୍ଚୟ ଏକଥା ବୁଝି ସବୁ ଦେବଗଣ
ଏଥି ନମସ୍କାର କରି କର ହେ ଗମନ ।
ବ୍ରହ୍ମଲୋକେ କାରଣ ଜଣାଅ ବ୍ରହ୍ମାପାଶ
ଅନ୍ତରେ କେହିହେ ତୁମ୍ଭେ ନ ହୁଅ ନିରାଶ ।
ଦୟାସାଗର ଶ୍ରୀହରି ଭକତ ଜୀବନ
କରନ୍ତେ ଏମନ୍ତ ଆଜ୍ଞା ତହୁଁ ଦେବଗଣ ।
ସେହିସ୍ଥାନେ ଭକ୍ତି ଚିତ୍ତେ ପ୍ରଣାମ ଆଚରି
ବ୍ରହ୍ମଲୋକକୁ ଚଳିଲେ ବୋଲି ହରି ହରି ।
ନୀଳମାଧବଙ୍କ ଅନ୍ତର୍ଦ୍ଧାନ ହେବା କଥା
କହନ୍ତେ ହୃଦୟ ଫାଟେ ଭମିପାଏ ମଥା ।
ସକଳ ଅମରେ ବ୍ରହ୍ମଲୋକେ ପ୍ରବେଶିଲେ
ଆଦ୍ୟପ୍ରାନ୍ତ କରି ଏକେ ଏକେ କହିଲେ ।
ଦେବଙ୍କ ବ୍ୟାକୁଳଭାବ ଦେଖି ବେଦବର
ପ୍ରବୋଧ ବାକ୍ୟେ କହିଲେ ହେ ସବୁ ଅମର ।
ଶୋକ ପରିହରି ନିଜ ନିଜ ସ୍ଥାନେ ଯାଅ
ପ୍ରଭୁଙ୍କ ବିଚିତ୍ରଲୀଳା ବୁଝିବା ବିସ୍ମୟ ।
ସମ୍ପ୍ରତି ହୋଇଲେ ଶ୍ରୀମାଧବ ଅନ୍ତର୍ଦ୍ଧାନ
ପୁଣି ଦାରୁରୂପେ ପ୍ରକଟିବେ ଭଗବାନ ।
ଦର୍ଶନ ପାଇବ ତୁମ୍ଭେ ମହୋଦଧି ତୀରେ
ସେହି ଏକ ମୂରତିଙ୍କି ଚତୁର୍ଦ୍ଧା ରୂପରେ ।
ଆଶ୍ୱାସ ବଚନେ ଏହା କହନ୍ତେ ବିଧାତା
ଦୁଃଖିତ ମାନସେ ତହୁଁ ସକଳ ଦେବତା ।
ନିଜ ନିଜ ଆଳୟେ ଚଳିଲେ ତତକ୍ଷଣ
ମାନସରେ ଚିନ୍ତାକଲେ ଅଭୟ ଚରଣ ।
ଆଶା ରହିଲା ସବୁରି ପ୍ରଭୁଙ୍କ ଦର୍ଶନ
କପରି ଚତୁର୍ଦ୍ଧା ମୂର୍ତ୍ତି ହେବେ ଭଗବାନ ।
ସତେ କି ସୁଭାଗ୍ୟ ହେବ ଆମ୍ଭମାନଙ୍କର
ଦରଶନେ ସୁଖୀ ହେବା ସକଳ ଅମର ।
ଏହିପରି ଦେବଗଣ କରନ୍ତି ଭାଳେଣି
ତାହାହିଁ ଶୁଣନ୍ତି ବ୍ରହ୍ମଲୋକେ କୁଶପାଣି ।
ଏଣେ ବିଦ୍ୟାପତି ଯାଇ ଅବନ୍ତୀ ନଗରେ
ପ୍ରଭୁଙ୍କ ନିର୍ମ୍ମଲ୍ୟ-ମାଳା ଭେଟିଲେ ରାଜାରେ ।
ଶ୍ରୀନୀଳମାଧବଙ୍କର ଅଙ୍ଗଲାଗି ମାଳ
ସବୁ ଶୁଭେ ଦେଖି ସେ ଅବନ୍ତୀ ମହୀପାଳ ।
ପ୍ରେମ ଗଦଗଦ ବାକ୍ୟେ ବହୁସ୍ତୁତି କରେ
ପ୍ରେମ-ଅଶ୍ରୁଧାର ବେନି ନୟନରୁ ଝରେ ।
ବିହ୍ୱଳଇ ନରପତି ହୋଇ ମୋଦଭର
ଆଜ ଜନ୍ମ କର୍ମ୍ମସବୁ ସଫଳ ମୋହର ।
ଶ୍ରୀମୂର୍ତ୍ତିଙ୍କ ଲାଗିମାଳା ଶିରେ ହୃଦେ ଥୋଇ
ବାରମ୍ବାର କରଣ କହଇ ନରସାଇଁ ।
ଜୟ ଜୟ ମାଳାରୂପୀ ଶ୍ରୀନୀଳମାଧବ
ଜୟ ଜୟ ହେ ଅନନ୍ତ ଅଚ୍ୟୁତ କେଶବ ।
ହେ ମୁକୁନ୍ଦ ଦେବହରି କଳୁଷ ନାଶନ
ଆଜ ମୁହିଁ କରିଲିଁ ସାକ୍ଷାତ ଦର୍ଶନ ।
ଧନ୍ୟ ଧନ୍ୟ ଆଜ ମୋର ଶୁଭ କତିଥିଣୀ
ଲଭିଲି ଶ୍ରୀମାଳାରୂପେ ପ୍ରଭୁ ଚକ୍ରପାଣି ।

ହେ ଗୋବିନ୍ଦ ଶିରୋଭୂଷା ପୁଷ୍ପମାଲ୍ୟ ବର
ତୁମ୍ଭଙ୍କୁ ମୋହର କୋଟି କୋଟି ନମସ୍କାର ।
ଯାର ସୁଗନ୍ଧରେ ତୁଚ୍ଛ କଳ୍ପତରୁ ଗନ୍ଧ
ଯାର ମଧୁଗନ୍ଧେ ଅଳିପଙ୍କ୍ତି ହୋନ୍ତି ଅନ୍ଧ ।
ଯାର ବାୟୁ ବାଜିଲେ ଜଗତ ପାପ ହରେ
ଯାର ଶୋଭା ଦର୍ଶନେ ନୟନାନନ୍ଦ ଧରେ ।
ଏମନ୍ତ ପ୍ରଫୁଲ୍ଲ ସୁବାସିତ ସୁଷମାର
ଶ୍ରୀମୁକୁନ୍ଦ ବକ୍ଷ ବିମଣ୍ଡିତ ମାଳାବର ।
ତାହାକୁ କିବା ଉପମା ଦେବା କେଉଁପରି
ଯାଦରେ ଯାହାକୁ ହୃଦେ ବହିଥାନ୍ତି ହରି ।

ପଦ୍ମାହୃତପଦ୍ମବନ୍ଧଂ ସପତ୍ନୀ ଯା ହୃତ୍ୟ ସୌ
ବିକସିତୈଃ ପ୍ରସୂନୈ ହସ୍ତୀଙ୍ଗ ସ୍ଥିତଗର୍ବିତା ।

ଯେଉଁ ବକ୍ଷ ମଣ୍ଡିଥାନ୍ତି ଲକ୍ଷ୍ମୀସାମନ୍ତାଣୀ
ସେହି ବକ୍ଷେ ପୁଷ୍ପମାଳା ବିରାଜଇ ପୁଣି ।
ହରି ହୃଦେ ଥାଇମାଳା ଗର୍ବକରୁଥାଇ
ସପତ୍ନୀଭାବେ ଲକ୍ଷ୍ମୀଙ୍କି ଆପଣେ ମଣଇ ।
ବିକସିତ ପୁଷ୍ପଛଳେ ହସିକରେ ଜଣା
ଦେଖ ଦେଖ ଆଗୋ ରମା ସାଗର ଦୁଲ୍ଲଣା ।
ଶ୍ରୀହରିଙ୍କ ବକ୍ଷେ ସଦା ମୁହିଁ ଅଛି ରହି
ମୋ ତୁଲେ ତୁମ୍ଭେ କି ସମ ହେବ କମଳାଇ ।
ଯେ ମାଳା କରେ ଏସନ ଲକ୍ଷ୍ମୀସଙ୍ଗେ ବାଦ
ତାହାର ମହିମା ବର୍ଣ୍ଣିବ କି କେ କୋବିଦ ।
ଏ ପ୍ରାୟ ଯେ କଣ୍ଠଭୂଷା ଦେଖିଲି ନୟନେ
ମୋ ଭାଗ୍ୟର ସୀମା କହି ନୋହିବ କଥନେ ।
ଶୁଣ ହେ ଶ୍ରୀହରି ମାଳା ମୋର ନିବେଦନ
କେଉଁ ତପେ ଏ ଫଳ କରିଛ ଉପାର୍ଜ୍ଜନ ।
ଯେଣୁ ତୁମ୍ଭେ ଶୋଭାପାଅ ଶ୍ରୀହରି ହୃଦରେ
ବ୍ୟାପିଅଛ ଯେ ଆବର ତାଙ୍କ ସର୍ବାଙ୍ଗରେ ।
ଏହିପରି କହୁଁ କହୁଁ ସେ ଯେ ନରପତି
ବଢ଼ିଲା ଆନନ୍ଦସିନ୍ଧୁ ପ୍ରେମ ପୂର୍ଣ୍ଣମତି ।
ଭୂମିଷ୍ଠ ହୋଇ ରାଜନ ଦଣ୍ଡବତ କରେ
ପୁଲକ ଫୁରି ଉଠଇ ସର୍ବ କଳେବରେ ।
ବିନୟରେ ଆଜ୍ଞେଣ ପୁଚ୍ଛନ୍ତି ନରସାଇଁ
କହନ୍ତି ଯେ ବିଦ୍ୟାପତି ହରଷିତ ହୋଇ ।
ଶ୍ରୀନୀଳମାଧବ ପାଦପଦ୍ମ କରି ଆଶ
କହଇ ଦୀନ ଅକିଞ୍ଚନ ବଇଷ୍ଣବ ଦାସ ।

## ବିଦ୍ୟାପତିଙ୍କ ମାଲ୍ୟପ୍ରାପ୍ତି ଓ ଶ୍ରୀକ୍ଷେତ୍ର ବିବରଣ

ଜୈମିନି ଉବାଚ

ଏଥୁ ଅନନ୍ତରେ ଶୁଣ ଅପୂର୍ବ କଥନ
ସିଂହାସନ ପରେ ବସି ହରଷେ ରାଜନ ।
ବିଦ୍ୟାପତିଙ୍କି ପୁଚ୍ଛିଲେ ସଧୀର ବଚନେ
ବଡ଼ ସଂଶୟ ତ ଜାତ ହେଉଛି ମୋ ମନେ ।
ଯେଉଁଠାକୁ କେବେ ହେଲେ ନ କରନ୍ତି ଗତି
ସେ କଥା କେହ୍ନେ ଜାଣିଲ ଆହେ ବିଦ୍ୟାପତି ।
ନୃପତି ବଚନେ ବିଦ୍ୟାପତି ତହୁଁ ଭଣି
ଶୁଣିବା ହେଉ ପୁଚ୍ଛିଲ ଯାହା ନୃପମଣି ।
ନୀଳଗିରି ନିକଟରେ ଅତି ଆନନ୍ଦରେ
ବାସ କରି ରହିଛନ୍ତି ଅନେକ ଶବରେ ।
ତହିଁ ବିଶ୍ୱାବସୁ ନାମେ ଶବରେକ ଜାଣ
ସବୁ ଶବରଙ୍କ ମଧ୍ୟେ ଅଟେ ସେ ପ୍ରଧାନ ।
ତାର ସଙ୍ଗେ ସଖ୍ୟ ଭାବ ଉପୁଜିଲା ମୋର
ସଙ୍ଗେ ନେଇ ମୋତେ ସେ ଭ୍ରମିଲା ବନଘୋର ।
ବୁଲି ବୁଲି ସବୁସ୍ଥାନ ଦେଖାଇଲା ମୋତେ
ଆନନ୍ଦମନେ ଭ୍ରମିଲି ମୁଁ ତାର ସଙ୍ଗତେ ।
ସାୟାହ୍ନକାଳେ ବୁଲନ୍ତେ ପର୍ବତ ଉପରେ
ଶୁଭ ଚିହ୍ନ ନିରେଖିଲୁଁ ସେହି ସମୟରେ ।
ଶ୍ରୀହରିଙ୍କ ସନ୍ନିଧାନେ ଗଲୁଁ ଯେତେବେଳେ
ପୁଷ୍ପର ସୁଗନ୍ଧ ପ୍ରସରିଲା ସେହି କାଳେ ।
ମନୋହର ସୁଶୀତଳ ଧୀର ସମୀରଣ
ପ୍ରସରିଲା ଘନଘନ ଆମୋଦିତ ପ୍ରାଣ ।
ଆକାଶ ମଣ୍ଡଳୁ ଶୁଭେ ଦୁନ୍ଦୁଭି ଶବଦ
ନାନାବିଧ ପୁଷ୍ପ ବୃଷ୍ଟି କଲେ ଦେବବୃନ୍ଦ ।
କୁତୂହଳେ ପ୍ରବେଶିଲେ ସକଳ ଅମରେ
ବୀଣା ବେଣୁ ମୃଦଙ୍ଗ ବଜାଇ ମଧୁସ୍ୱରେ ।
ସୁ-ମଧୁରେ ଗାନ କଲେ ସର୍ବେ ସ୍ତୁତି ଗୀତ
ଦିବ୍ୟ ଉପଚାରେ ପୂଜା କଲେ ଦେବ ଯୂଥ ।
ଜୟ ଜଗନ୍ନାଥ ବୋଲି ସ୍ତବ ଆରମ୍ଭିଲେ
ପ୍ରଭୁଙ୍କୁ ଆରାଧି ସ୍ୱର୍ଗପୁରେ ଚଳିଗଲେ ।
ସେହି ଉପହାର ପୁଷ୍ପ ମାଳା ଅଟେ ଏହି
ସ୍ନେହେ ମୋତେ ଆଣିଦେଲା ସେ ଶବର ସାଇଁ ।

ଅଲକ୍ଷେ ଏ ମାଳା ପାପ ନାଶେ ସୁଖ ହେତୁ
ମ୍ଳାନ ନୁହଇ କେବେହେଁ ଆହେ ଧର୍ମ୍ମ ସେତୁ ।
ଯତ୍ନ କରି ଆଣିଛୁ ମୁଁ ତୁମ୍ଭର ନିମନ୍ତେ
କ୍ଷେତ୍ର ବିବରଣ ଏବେ ଶୁଣ ଏକ ଚିତ୍ତେ ।
ପଞ୍ଚକ୍ରୋଶ ବିସ୍ତାର ଯେ ଅଟେ କ୍ଷେତ୍ରବର
ଚୌଦିଗେ ପୁଷ୍ପ କାନନ ଅତି ମନୋହର ।
ମହୋଦଧି ତୀରେ ବିରାଜଇ ନୀଳଗିରି
ସୁବର୍ଣ୍ଣ ବାଲୁକାମୟ ତହିଁ ସାରି ସାରି ।
କଳ୍ପତରୁବର ଏକ ଅଛି ଗିରିଶିଖେ
ଦେଖିଲାମାତ୍ରେ ଆନନ୍ଦ ଜନ୍ମେ ଅନ୍ତରେକେ ।
ଏକ କ୍ରୋଶ ଆୟତନ ଅଟଇ ତାହାର
ଫୁଲ ଫଳ ନଷ୍ଟ ନୁହଇ କେବେହେଁ ଯାହାର ।
ରବି ଗମନରେ ତଳେ ଛାୟା ନ ଟଳଇ
ରୋହିଣୀ ନାମେ କୁଣ୍ଡେକ ପଶ୍ଚିମେ ଶୋଭଇ ।
ନୀଳ ପାଷାଣରେ ଶୋହେ ବିଚିତ୍ର ସୋପାନ
ତାର ଚାରି ଦିଗରେ ସ୍ଫଟିକ ବେଦୀମାନ ।
ସେହି କୁଣ୍ଡ ସଦା ପୂର୍ଣ୍ଣ କାରଣ ସଲିଳେ
ଊଣା ବା ଅଧିକ ନ ହୁଅଇ କେତେବେଳେ ।
ସେହି ଜଳକୁ ଛୁଇଁଲେ ମୁକ୍ତି ଲଭିହୁଏ
କହିଛି ଶବର ରାଜା ଏ କଥା ନିଶ୍ଚୟେ ।
ଆବର ଶ୍ରବଣ କର ହେ ତପନ ବଂଶି !
କୁଣ୍ଡ ପୂର୍ବଦିଗେ ଏକ ସ୍ୱର୍ଣ୍ଣ ବେଦୀ ଅଛି ।
କଳ୍ପବଟ ସୁଶୀତଳ ଛାୟା ମନୋହର
ବିରାଜନ୍ତି ବେଦୀପରେ ଜଗତ ଠାକୁର ।
ଇନ୍ଦ୍ର ନୀଳମଣି ମୟ ଶ୍ରୀଅଙ୍ଗ ବିରାଜେ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିଭୁଜେ ।

**ଏକାଶୀତ୍ୟଙ୍ଗୁଳ ମିତଃ ସ୍ୱର୍ଣ୍ଣ ପଦ୍ମୋପରି ସ୍ଥିତଃ**
**ଅଷ୍ଟମୀ ଚନ୍ଦ୍ର ସକଳ ଶୋଭ ବିଜଦ୍ଧି ସ୍ଥଳଭୁଃ ॥**

ଏକାଶୀ ଅଙ୍ଗୁଳ ତାଙ୍କ ଦେହ ପରିମାଣ
ସୁବର୍ଣ୍ଣର ପଦ୍ମାସନେ ବିଜୟେ ଆପଣ ।
ଲଲାଟ ଶୋଭଇ ଅଷ୍ଟମୀର ଚନ୍ଦ୍ର ଜିଣି
ନୀଳ ଉତ୍ପଳ ନୟନ ତେଜିଛି ଶ୍ରୁହିଁଣି !
ନାସାପୁଟ ତିଳ ଫୁଲ ଜିଣି ମନୋରମ
ଯେଉଁ ନାସା ଦେଖି ଭୃତ୍ୟ ବିନତା ନନ୍ଦନ ।
ପୂର୍ଣ୍ଣ ବିଧୁ ବଦନରୁ ଅମୃତ କରନ୍ତି
ତାପିତର ତାପତ୍ରୟ କରେ ବିମୋଚନ ।

ଯଦିବା ପାଷାଣମୟ ଶ୍ରୀବପୁ ଧାରଣ
ତଥାପି ଧରନ୍ତି ଏହ୍ନ ସବୁ ନିଦର୍ଶନ ।
ଅଧରୁ ଅମୃତ ଝରେ ହସିବାର ଛଳେ
ଚିକ୍କଣ ଚିବୁକ ଶୋଭେ ପରମ ଉଜ୍ଜଳେ ।
ମର୍କତ ମୁକୁର ଜିଣି ଗଣ୍ଡ ଯୁଗ ସ୍ଥଳ
ଅନୁପମ ରମଣୀୟ ଶ୍ରୀମୁଖ ମଣ୍ଡଳ ।
ମକର କୁଣ୍ଡଳ ଶୋହେ ବେନି ଶ୍ରୁତି ମୂଳେ
ଚୂଳ ବିମଣ୍ଡିତ ମଲ୍ଲୀ ମାଳତୀ ବକୁଳେ ।
ଦୟଣା ମରୁଆ ଗନ୍ଧ ତୁଳସୀର ତୁଲେ
ଆଜାନୁଲମ୍ବିତ ମାଳା ବାସ ବନ ଫୁଲେ ।
ଶ୍ରୀମୁଖମଣ୍ଡଳ ଝଳ କୋଟି ରବି ଜିଣି
ନୀଳ ନାସିକାରେ ଝୁଲେ ମୁକୁତା ବସଣୀ ।
ସେ ମୁଖଚନ୍ଦ୍ରକୁ ମୁହିଁ କି ଉପମା ଦେବି
ସୁ-ଲଳିତ ଗଣ୍ଡସ୍ଥଳ ଶୋଭା କି କହିବି ।
ତହିଁ ଦୋହଲିବା ରମ୍ୟ କୁଣ୍ଡଳ ଶ୍ରୁତିର
ଏମନ୍ତ ଉପମା ଆସେ ମନକୁ ମୋହର ।
ଦୁଇପାର୍ଶ୍ୱେ ଗୁରୁ ଶୁକ୍ର ମଧ୍ୟେ ଶଶଧର
ଏପରି ଶୋଭେ ସେ ମୁଖେ କୁଣ୍ଡଳ ସୁନ୍ଦର ।
କଣ୍ଠଦେଶ ନାନା ଅଳଙ୍କାରେ ବିଭୂଷିତ
ଦକ୍ଷିଣ ଆବର୍ତ୍ତ ଶଙ୍ଖେ ମୋତିକ ଜଡ଼ିତ ।
ବକ୍ଷରେ ଶ୍ରୀବତ୍ସ ଚିହ୍ନ କଉସ୍ତୁଭ ମଣି
ମୁକ୍ତାହାର ସରି ସରି ତାରାବଳୀ ଜିଣି ।
ସ୍କନ୍ଧଯୁଗ ସୁପୀନ ଆୟତ୍ତ ମନୋରମ
ଆଜାନୁଲମ୍ବିତ ଚତୁର୍ଭୁଜ ଅନୁପମ ।
ପରିଘର ବକ୍ଷଃସ୍ଥଳ ଅପୂର୍ବ ଶୋଭିତ
ନିର୍ମ୍ମଳ ରତନହାର ତହିଁ ବିଦୋଳିତ ।
ଉଜ୍ଜଳ ପ୍ରବାଳ ମୋତି ମାଣିକ୍ୟର ଜ୍ୟୋତି
ପଦ୍ମରାଗ ବୈଦୁର୍ଯ୍ୟର ମାଳ ପନ୍ତି ପନ୍ତି ।
କୌସ୍ତୁଭର ମଧ୍ୟେ ଯେହ୍ନେ ଏ ଚୌଦ ଭୁବନ
ପ୍ରତିବିମ୍ବ ହୋଇଅଛି ହୁଏ ଅନୁମାନ ।
ନିମ୍ନନାଭି ହ୍ରଦ ସୃଷ୍ଟ ରୋମାବଳୀଗଣ
ଆବିଷ୍ଟ ହେବାରେ ସେ ବିଚିତ୍ର ସୁଶୋଭନ ।
ଯେସନେ ମତ୍ତଗଜ ନିଜ ଶୁଣ୍ଢକୁ ବଢ଼ାଇ
ଜଳପାନ କରେ ସରୋବରେ ମଗ୍ନ ହୋଇ ।
ବେନି ଉରୁ ଉପରକୁ ଝୁଲେ ରତ୍ନହାର
କନିକାର କିଙ୍କିଣୀ ମଧ୍ୟ ସ୍ଥାଣୁ ପରକାର ।

ଶୋଭନ ମେଖଳା ଦାମ କଙ୍କିଣୀର ଜାଳେ
ଛତ୍ରି ଅଙ୍କ ମନୋହର ଶୋଭେ ସୂକ୍ଷ୍ମମାଳେ ।
ଦୃଢ଼ପୀଠ ସନ୍ନିସ୍ଥାନ ପରମ ଶୋଭନ
ଉଜ୍ଜଳ ଲାବଣ୍ୟମୟ କାନ୍ତି ମୂର୍ତ୍ତିକକଣ ।
ସୁନାଭିର ଧନ୍ୟ ପୀତାମ୍ବର ପରିଧାନ
କଟରେ ସୁବର୍ଣ୍ଣ ଉତ୍ତରୀ ମାନସ ମୋହନ ।
ଗଳାଠାରୁ ମୁକ୍ତାମାଳା ଜାନୁ ପରିଯନ୍ତେ
ଧୀରେ ଧୀରେ ଦୋହଲଇ ସୁ-ଶୀତଳ ବାତେ ।
ସ୍ତମ୍ଭର ସମାନ ବେନି ଉରୁ ସୁଶୋଭନ
କି ଅବା ଉଲଟ ରମ୍ଭାତରୁ ମର୍କତେଣ ।
ମୁକ୍ତା ଦାନେ ମାଙ୍ଗଳା ତୋରଣ ଖଟେ ଭଲ
ତୋରଣ ଆଶ୍ରୟ ଦୁଇ ଉରୁ ସ୍ତମ୍ଭ ହେଲ ।
ଅନୁକ୍ରମେ ବର୍ତ୍ତୁଳ ଶୋଭଇ ଜାନୁ ଦୁଇ
ଚରଣକୁ ତୁଳନା ଏ ତ୍ରିଭୁବନେ ନାହିଁ ।
ସୁରକ୍ତ ଉତ୍ପଳ କିବା ଜଳର ମଧ୍ୟରେ
ଶ୍ୱେତ ବର୍ଣ୍ଣ ପୁଷ୍ପ ଫୁଟେ ତା ଚଉକନ୍ତରେ ।
ରତନ ବଳୟ ଶୋଭେ ସେ ପ୍ରଭୁ ଚରଣେ
ମଞ୍ଜୁ ମଞ୍ଜୀର ବାଜେଣି ମୁନି ମନ କଣେ ।
ସେ ପଦ୍ମ ପାଦ ଯୁଗଳ ଦେଖି ମୁଁ ନୟନେ
ଆନନ୍ଦ-ସମୁଦ୍ରେ ମଗ୍ନ ହେଲି ତତକ୍ଷଣେ ।
ସର୍ବାଙ୍ଗେ ରତ୍ନ ଭୂଷଣ ନାନା ପରକାରେ
ସେ ରୂପ ମାଧୁରୀ ଦେଖାନାହିଁ ତ୍ରିପୁରେ ।
ଜ୍ଞାନ ଅହଙ୍କାର ଅଇଶ୍ୱର୍ଯ୍ୟ ବେଦ ସାଥେ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରି ହାତେ ।
ଦଣ୍ଡବତପାତକୁ ଆଲିଅ କରି ତେଜେ
ନୀଳାଦ୍ରି ଶିଖରେ ପ୍ରଭୁ କରିଛନ୍ତି ବିଜେ ।
ସ୍ମରଣ କଲେ ଦିଅନ୍ତି ଅଚଳା ଭକତି
ଭବ ବନ୍ଧନରୁ ତାରି ଦିଅନ୍ତି ମୁକତି ।
ଅତୀବ ମହିମା ତାଙ୍କ ଶୁଣ ହେ ରାଜନ
ଅଦ୍ଭୁତ ଦେଖିଲି ଯାହା କରୁଛି ଜଣାଣ ।
ସେ ପ୍ରଭୁଙ୍କ ବାମ ପାଶେ ଲକ୍ଷ୍ମୀ ଠାକୁରାଣୀ
ସୌନ୍ଦର୍ଯ୍ୟର ସୀମା ସରସ୍ୱତୀ ବୀଣାପାଣି ।
ପ୍ରଭୁଙ୍କ ଶ୍ରୀମୁଖେ ଦୃଷ୍ଟିଦେଇ ବେନି ସତୀ
ସୁମଧୁରେ ମୃଦୁ ମୃଦୁ ଭାବେ ହସୁଛନ୍ତି ।
ସକଳ ସୌନ୍ଦର୍ଯ୍ୟ ତାଙ୍କ ଅଙ୍ଗରେ ବସତି
କମଳାକ୍ଷୀ କମଳ ବଦନୀ କଳାବତୀ ।

ଜଗତର ପିତା ମାତା ସେହୁ ଦେବରାଜ
ତାଙ୍କୁ ନିଜ ନେତ୍ରେ ଦେଖିଛୁ ହେ ମହାରାଜ ।
କରୁଣା କରନ୍ତି ତାଙ୍କରେ ଯେ କରେ ଦର୍ଶନ
ସାକ୍ଷାତ ଏ ହେତୁ ଜ୍ଞାନ ହୋଇଲା ରାଜନ ।
ତାହାଙ୍କ ପଛ ଦେଶରେ ଅନନ୍ତ ବିହରେ
ଫଣାବୃନ୍ଦ ଛତ୍ରକରି ଧରିଅଛି ଶିରେ ।
ପ୍ରଭୁଙ୍କ ଆଗେ ଦେଖିଲି ଚକ୍ର ସୁଦର୍ଶନ
ଦେହ ଧରି କରଯୋଡ଼ି ଅଛି ବିଦ୍ୟମାନ ।
ସୁଦର୍ଶନ ପଛରେ ଗରୁଡ଼ ପକ୍ଷୀପତି
କରଯୋଡ଼ି ଠିଆହୋଇ କରୁଅଛି ସ୍ତୁତି ।
ଏହିରୂପେ ଅଦ୍ଭୁତ ସକଳ ରୂପ ଦେଖି
ଆନନ୍ଦ ସମୁଦ୍ରେ ବୁଡ଼ିଗଲା ମୋର ଆଖି ।
ରଜ୍ଜୁ ବାନ୍ଧ ଯେହ୍ନେ କେହି ଟାଣେ ଘନ ଘନ
ତେସନେ ସେହି ସ୍ଥାନକୁ ଧାଏଁ ମୋର ମନ ।
ବହୁଜନ୍ମ ଫଳ ଯଦି ଫଳେ ଏକ କାଳେ
ସେହି ଫଳେ ମାଧବଙ୍କ ଦରଶନ ମିଳେ ।
ବେଦପାଠ ଯଜ୍ଞ ବ୍ରତ ଦାନ ତୀର୍ଥସ୍ନାନେ
ଯେ ରୂପକୁ ଦର୍ଶନ ନ ପାନ୍ତି ମର୍ତ୍ତ୍ୟଜନେ ।
ପୁରୁଷୋତ୍ତମ ନାଁ ବିଷ୍ଣୁ ମୂର୍ତ୍ତି ନୀଳମଣି
ସୁ-ନିର୍ମଳ ନୀଳ ଅମ୍ବରକୁ ଅଙ୍ଗ ଜିଣି ।
ଯେ ରୂପକୁ ସଦା ଧ୍ୟାନ କରେ ଯେଉଁ ଜନ
ପାପରୁ ମୁକୁଳି ପାଏ ଶ୍ରୀପୁରୁଷୋତ୍ତମ ।
ଅଷ୍ଟାଦଶ ବିଦ୍ୟା ନିରମାଣ ଫଳ ମିଳେ
ବିଷ୍ଣୁ ଦର୍ଶନର ଶତଭାଗ ଫଳ-ଫଳେ ।
କାମନା ଅଧିକ ଫଳ ମିଳେ ସେହି ସ୍ଥାନେ
ସେହି ଦାତା ସତ୍ୟବାଦୀ ଦେଖନ୍ତି ଯେମାନେ ।
ସର୍ବଯଜ୍ଞ ଶ୍ରେଷ୍ଠ ସେହି ଶ୍ରେଷ୍ଠ ସର୍ବ ଗୁଣେ
ଯେଉଁ ମାଧବଙ୍କ ରୂପ ଦେଖିଲି ନୟନେ ।
ମାଧବ ସେବକ ଯେବା ଅଛନ୍ତି ସେ ଦେଶେ
ସେମାନଙ୍କ ଠାରୁ ତତ୍ତ୍ୱ ଶୁଣିଲି ବିଶେଷେ ।
ଯେଉଁ ରୂପ ଦେଖିଲି ତା କଲି ନିବେଦନ
ଏଥିକି ହେ ନୃପ କର ଯାହା ହୁଏ ମନ ।
ଏମନ୍ତେ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗେ ବିଦ୍ୟାପତି
ଜଣାଇଲା ଶ୍ରୀମାଧବ ଦର୍ଶନ ଭାରତୀ ।
ଶ୍ରୀବିଷ୍ଣୁଭକ୍ତ ନୃପତି ଶୁଣି ସେ କଥନ
ଭାବ ପ୍ରେମନୀରେ କରେ ନୟନ ଥନ ଥନ ।

ଧନ୍ୟ ସେହି ସୂର୍ଯ୍ୟବଂଶୀ ଇନ୍ଦ୍ରଦ୍ୟୁମ୍ନ ଭୂପ
ସ୍ଥାପିବେ ଯେହୁ ଚତୁର୍ଦ୍ଧାମୂର୍ତ୍ତି ବିଷ୍ଣୁ ରୂପ ।
ଧନ୍ୟ ସେହି ବିଦ୍ୟାପତି ନାମେ ଯେ ବ୍ରାହ୍ମଣ
ଚର୍ମ୍ମନେତ୍ରେ କଲା ଯେହୁ ମାଧବ ଦର୍ଶନ ।
ସେ ବିଷ୍ଣୁ ଭକ୍ତଙ୍କ ପାଦରେଣୁକୁ ମୋ ଆଶା
ବୈଷ୍ଣବ ଦାସର ନାହିଁ ଅନ୍ୟ କେ ଭରସା ।

—ଃ✻ଃ—

## ବିଦ୍ୟାପତି ମୁଖୁ କ୍ଷେତ୍ରତତ୍ତ୍ୱ ଶୁଣି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଉକ୍ତି

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିଗଣ
ବିଦ୍ୟାପତି ମୁଖୁଁ ତତ୍ତ୍ୱ ଶୁଣନ୍ତେ ରାଜନ ।
ପରମ ହରଷେ କହିଲେ ସେ ନରରାୟ
ଏତେ ଦିନେ ଶୁଭ ଭାଗ୍ୟ ହୋଇଲା ଉଦୟ ।
ଏତେଦିନେ ସକଳ କଳୁଷ ହେଲା ନାଶ
ଯୋଗ୍ୟ ହୋଇଲି ଶ୍ରୀକ୍ଷେତ୍ରେ କରିବାକୁ ବାସ ।
ଅନେକ ଜନ୍ମର ମୋର ପାତକ ସମୂହ
ଏ ମାଳା ପରଶେ ଏକାବେଳେ ହେଲା କ୍ଷୟ ।
ଏବେ ରାଜ୍ୟସହି କ୍ଷେତ୍ରେ କରିଣ ପ୍ରୟାଣ
ନିବାସ କରିବି ଗଡ଼ କରିଣ ନିର୍ମାଣ ।
କ୍ଷେତ୍ରବାସୀ ହୋଇ ଅଶ୍ୱମେଧ ଯଜ୍ଞ କରି
ନିତ୍ୟ ନାନା ଉପଚାରେ ପୂଜିବି ଶ୍ରୀହରି ।
ପରମ ତାପିତ ମୋତେ ଦେଖି ନାରାୟଣ
ବଚନ ପୀୟୂଷ ମୋରେ କରିବେ ସିଞ୍ଚନ ।
ନିଶ୍ଚୟ କହୁଛି ମୋର ଏକଥା ପ୍ରମାଣ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ କରିବି ଗମନ ।
ଏହିରୂପେ ବାରମ୍ବାର କହିଇ ରାଜନ
ସେହି ସମୟେ ନାରଦ କଲେ ଆଗମନ ।
ବୀଣାଯନ୍ତ୍ର ବାଇ କୃଷ୍ଣଗୁଣ ଗାଇ ଗାଇ
ରାଜସଭାରେ ମିଳିଲେ ହସି ହସି ହୋଇ ।
ଅଷ୍ଟସାତ୍ତ୍ୱିକ ଭାବରେ ହୋଇଛନ୍ତି ଭୋଳ
ହରିବୋଲି ନେତ୍ରୁ ବହିଯାଏ ଅଶ୍ରୁଜଳ ।
ବୈଷ୍ଣବ ଚୂଡ଼ାମଣି ଯେ ବ୍ରହ୍ମାଙ୍କ ନନ୍ଦନ
ସୂର୍ଯ୍ୟପରି ତାଙ୍କ ତେଜ ଉଜ୍ଜ୍ୱଳ ବରନ ।
ଦେଖି ସଭାସହି ରାଜା ସମ୍ଭ୍ରମେ ଉଠିଲା
ପାଦ୍ୟ ଅର୍ଘ୍ୟଦେଇ ଆସନରେ ବସାଇଲା ।
ଅଷ୍ଟାଙ୍ଗେ ପ୍ରଣାମ କରି ଯୋଡି ବେନିପାଣି
ମୁନିବରଙ୍କୁ କହିଲେ ବିନୟରେ ବାଣୀ ।
ମୋର ଯଜ୍ଞ ତପ ଦାନ ବ୍ରତ ଅଧ୍ୟୟନ
ସଫଳ ଆଜ ତୁମ୍ଭର ଯେଣୁ ଆଗମନ ।
ନାରଦ ବୋଲନ୍ତି ରାଜା ଜାଣିଲି ମୁଁ ଭଲେ
ଧ୍ୟାନରୁ ବୁଝିଛି ତୁମ୍ଭେ ଯିବ ନୀଳାଚଳେ ।
ବହନ ଯାତ୍ରାନିର୍ଣ୍ଣୟ କରି ନୃପବର
ନୀଳାଚଳେ ଯିବାଦୁହେଁ ହୁଅସି ବାହାର ।
ଏହା ଶୁଣି ରାଜା ଦୈବଜ୍ଞଙ୍କୁ ଡକାଇଲେ
ସେ ଜ୍ୟୋତିଷ କ୍ଷେତ୍ର ଯାତ୍ରା ନିରୂପଣ କଲେ ।
ଜ୍ୟେଷ୍ଠ ଶୁକ୍ଳସପ୍ତମୀରେ ପୁଷ୍ୟା ଶୁକ୍ରବାର
ଦିନ ନିରୂପଣ କଲେ କରିଣ ବିଚାର ।
ଭକ୍ତଭକ୍ତ ମହିମା ଶୁଣିଲା ମୁନି ପାଶେ
ପାଠଗ୍ରନ୍ଥେ ସେ ସକଳ ବର୍ଣ୍ଣିତ ବିଶେଷେ ।
ନାରଦ ସହିତେ ସୌତିଋଷି ଏକାସନେ
ରଜନୀ ବଞ୍ଚିଲେ ହରି କଥା ଆଳାପନେ ।
ଉତ୍କଳଖଣ୍ଡର କଥା ଅତି ସୁମଧୁର
ଶ୍ରବଣେ ମହା ଆନନ୍ଦ ତାପକରେ ଦୂର ।
ଦୁଇଭଲ ପୋଥିକ ମୁଁ କଲିସେ ବର୍ଣ୍ଣନ
ପାଠହେତୁ ଏକ ଏକ ପଦର କାରଣ ।
ଯେଉଁକଥା ଲେଖା ନାହିଁ ଅନ୍ୟାନ୍ୟ ପୁରାଣେ
ଏଥିରେ ତାହା ବର୍ଣ୍ଣନ ହୋଇଛି ବିଧାନେ ।
ଏ ଗ୍ରନ୍ଥ ପାଠେ ଜନ୍ମଇ ଅପୂର୍ବ ଆନନ୍ଦ
ଶ୍ଳୋକଅର୍ଥେ ବିରଚିତ ମନୋହର ପଦ ।
ଧନ୍ୟା ତେଜ ହରିକଥା ଶୁଣ ହେ ସକଳେ
ଯେଉଁକଥା ଶୁଣିଲେ ସଂସାରୁ ତରେ ହେଳେ ।
ବିଷମ ଯମଦଣ୍ଡରୁ ନାହିଁ ପରିତ୍ରାଣ
ପ୍ରାଣିବ ସେ ଭଯ ନାମାମୃତ କର ପାନ ।
ପରମ ଦୟାଳୁ ପ୍ରଭୁ ଦେବ ଜଗନ୍ନାଥ
ଶ୍ରୀନୀଳାଚଳେ ବିହାର ଦେଖିହେ ସାକ୍ଷାତ ।
ଜଗତଙ୍କ ହିତ ଲାଗି ବ୍ରହ୍ମାଙ୍କ ପ୍ରାର୍ଥନେ
ଅବତରି ତାରନ୍ତି କଳିଷ୍ଟ ବିତରଣେ ।
ଯାହାଭୁଞ୍ଜି ଅଗତି ଅଧମ ତରେ ହେଳେ
ସାଧନ ଅପେକ୍ଷା ନାହିଁ ଯେଉଁ ନୀଳାଚଳେ ।

ଏମନ୍ତ ଠାକୁର ଥାଉଁ ଯେ ପାଷାଣ୍ଡଗଣ
ଅବଶ୍ୟମ୍ଭେ ପାଉଛନ୍ତି ଯମର ସଦନ ।
ଯହିଁ ଯାଇ ନାହିଁ ତହିଁ ଗମନ କାରଣ
ତାଙ୍କ କଥା ଶୁଣି ସୁଖେ ପାଇବ ଦର୍ଶନ ।
ମୋରବାକ୍ୟ ବୋଲି ମନେ ଘୃଣା ନ କରିବ
ପୁରାଣ ପ୍ରସିଦ୍ଧ ଏହା ନିଶ୍ଚୟ ଜାଣିବ ।
ଜୈମିନି ବୋଲନ୍ତି ଶୁଣ ଆହେ ମୁନିଗଣ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଯେପରି ଗମନ ।
ପ୍ରଭାତୁ ଉଠି ନୃପତି ଦେଲେକ ଘୋଷଣା
ପ୍ରଜାସହିତେ ଶ୍ରୀକ୍ଷେତ୍ରେ କରିବ ଗମନ ।
ଯେ ପର୍ଯ୍ୟନ୍ତ ପ୍ରାଣଧରି ଥିବ ସର୍ବଜନେ
ସେ ଅବଧି ବାସକରି ରହିବ ସେ ସ୍ଥାନେ ।
ଯାର ଯେଉଁ କଳ୍ପିତ ଅଛଇ ବୃତ୍ତିଗଣ
ସେ ବୃତ୍ତିରେ ସେଠାରେ ରହିବେ ସେହିଜନ
ରାଜାସାଥେ ରାଣୀଗଣ ଅମାତ୍ୟାଦି ନେଇ
ନୀଳାଚଳେ ଯାନ୍ତୁ ସର୍ବେ ସଜବାଜ ହୋଇ ।
ଅଗ୍ନିହୋତ୍ର ଅନଳେ ବଣିକ ଭାଣ୍ଡ ସଙ୍ଗେ
ବହୁପୁର ଦ୍ରବ୍ୟସେନ ବ୍ୟବସାୟୀ ବର୍ଗେ ।
ସର୍ବେମିଳି ନୀଳାଚଳେ କରନ୍ତୁ ଗମନ
ସ୍ୱଚ୍ଛନ୍ଦେ କରନ୍ତୁ ଜଗନ୍ନାଥ ଦରଶନ ।
ମନ୍ତ୍ରିଗଣ ଯେତେ ମଣ୍ଡଳରେ ଯେ ଆବର
ଦୈବଜ୍ଞ ନ୍ୟାୟଜ୍ଞ ଆଦି ଶ୍ରେଷ୍ଠ ବିପ୍ରବର ।
ନୃତ୍ୟଗୀତ ବାଦ୍ୟରେ ପ୍ରବୀଣ ଯେତେଜନ
ଦ୍ରବ୍ୟ ଔଷଧି ଜାଣନ୍ତି ଯେତେ ବୈଦ୍ୟଗଣ ।
ଦୃଷ୍ଟି କର୍ମଜ୍ଞାନୀ ଅଷ୍ଟାଦଶ ବିଦ୍ୟାବାନ
ଉପାଙ୍ଗ ବିଦ୍ୱାନ ସର୍ବେ କରନ୍ତୁ ଗମନ ।
ବେଦ ବେଦାନ୍ତ ପଣ୍ଡିତେ ଯେତେକ ବ୍ରାହ୍ମଣ
ସ୍ୱର୍ଣ୍ଣକାର କର୍ମକାର ସୈରିର ଖଣ୍ଡଗଣ ।
ଶବକର ଗୃହବାସୀ ସ୍ତାବକ ସକଳେ
ଶାସ୍ତ୍ରବେତ୍ତାମାନେ ବାହାରନ୍ତୁ ନୀଳାଚଳେ ।
ଶଲ୍ୟାହାରୀମାନେ ଆଉ ଯେତେ ଦ୍ୟୁତକାରୀ
ନର୍ତ୍ତକୀବେଶ୍ୟାଗଣ ଯେତେ ବ୍ୟଭିଚାରୀ ନାରୀ ।
ବେଶ୍ୟା ଅନୁଗତ ଧର୍ମୀ ଯେ କୃଷକଜନ
ମେଷ ମୃଗ ଖର ଓଷ୍ଟ ଗୋରକ୍ଷକ ଜନ ।
ଶକୁନ୍ତପାଳ ଆଦି ଯେ କପିରକ୍ଷ ନର
ବ୍ୟାଘ୍ର ଭଲ୍ଲୁକ ରକ୍ଷକ ଯେତେକ ପ୍ରକାର ।
ଅହିତୁଣ୍ଡୀ ସାପୁଆ ଶବର କେଳାମାନେ
ଆଉ ଯେତେ ହାଡିପାଣି ଡମ ଆଦି ଜନେ ।
ମୋଚି ଚମାର ରଜକ କଣ୍ଡରା ବାଉରି
ଯେତେ ଆଉ ଜାତି ଛନ୍ତି ରାଜ୍ୟରେ ମୋହରି ।
ସର୍ବେ ମିଳିମିଶି କରି ହରଷିତ ମନେ
ଗମନ କରନ୍ତୁ ନୀଳଗିରି ଦରଶନେ ।
ଏ ମାଳବ ଦେଶେ ଜନ୍ମି ଯେଉଁସବୁ ଜନ
ମୋର ଆଜ୍ଞା ନିରନ୍ତର କରନ୍ତୁ ପାଳନ ।
ନିଜ ନିଜ ବାସ୍ତୁଭାଗ କରି ସର୍ବଜନେ
ମାଳବଦେଶେ ନିବାସୀ ଅଛନ୍ତି ଯେସନେ ।
ସେହିପରି ନିଜ ନିଜ ବାସ୍ତୁଭାଗ ହୋଇ
ନୀଳାଚଳ ବାସେ ଯାନ୍ତୁ ଦରଶନ ପାଇଁ ।

**ଅନ୍ୟେ ଚ ଯେ ମାଳବ ଦେଶଜାତା**
**ଆଜ୍ଞାଂମଦୀୟାଂ ମନୁପାଳୟନ୍ତୁ ।**
**ତେ ଯାନ୍ତୁ ସର୍ବେ ବସତୌ ହି ନୀଳାଚଳେ**
**ଯଥାଂଶଂ କୃତବାସ୍ତୁ ଭାଗାଃ**

ଏହିମତେ ଆଜ୍ଞାଦେଲେ ଇନ୍ଦ୍ରଦ୍ୟୁମ୍ନ ରାଜା
ଶ୍ରୀକ୍ଷେତ୍ର ବାସେ ଚଳନ୍ତୁ ସକଳ ପରଜା ।
ଘୋଷଣା ଶୁଣି ସମସ୍ତ ପରଜାମଣ୍ଡଳୀ
କ୍ଷେତ୍ର ଗମନେ ଉଦ୍‌ଯୋଗୀ ହୋଇ କୁତୁହଳୀ
ସବୁରି ଆନନ୍ଦ ସିନ୍ଧୁ ଉଛୁଳି ପଡ଼ିଲା
ନୀଳାଦ୍ରି ଗମନେ ମନ ସବୁରି ବଳିଲା ।
ଧନ୍ୟ ସେହି ପ୍ରଜାଗଣ ରାଜ ଅନୁଗତ
ମାଧବଙ୍କ ଦରଶନେ ହେଲେ ଏକମତ ।
ନୀଳାଚଳ ଯିବାପାଇଁ ରହିଲେ ଚକାଇ
ବ୍ରାହ୍ମଣଠାରୁ ଅନ୍ତ୍ୟଜ ଜାତି ଯାଏଁ ତହିଁ ।
ଶ୍ରୀକ୍ଷେତ୍ରରେ କରିବା ପାଇଁକି ନିବାସ
ସବୁ ପ୍ରଜାଙ୍କର ଭଲେ ବଳିଲା ମାନସ ।
ପରମ ଭକ୍ତ ଯେ ଇନ୍ଦ୍ରଦ୍ୟୁମ୍ନ ନରସାଇଁ
ନିରନ୍ତର ଚିନ୍ତେ ଏକା ଶ୍ରୀନୀଳାଦ୍ରି ସାଇଁ ।
ସେ ବିଷ୍ଣୁଭକ୍ତ ନୃପର ପାଦଧୂଳି ତୋଳି
ବୈଷ୍ଣବ ଦାସ ଧାନରେ ମଣ୍ଡଇ ମଉଳି ।



## ନୀଳାଚଳ ଗମନ ନିମନ୍ତେ ରାଜାର ଅଭିଷେକ

ଜୈମିନି ଉବାଚ

ପ୍ରଜାଙ୍କୁ ଆଦେଶ ଦେଇ ସୂର୍ଯ୍ୟଙ୍କ ନନ୍ଦନ
ହରଷରେ ହୃଦୟ ଯେ ହୋଇଗଲା ପୂର୍ଣ୍ଣ ।
ନାରଦ ସହିତ ରାଜା ସୁମନ୍ତ୍ରଣା କଲା
ନିରୂପିତ ଦିନେ ଡାକ ଦୈବଜ୍ଞେ କହିଲା ।
ଶୁଣହେ ଦୈବଜ୍ଞ ଏହି ଉତ୍ତମ ସମୟେ
ମାଙ୍ଗଳିକ ଦ୍ରବ୍ୟ ଆଣିବାରେ ଯୁକ୍ତ ହୁଏ ।
ପୁରୋହିତ ମତେ ତୁମ୍ଭେ ଆଣ ଶୀଘ୍ରକରି
ବିଳମ୍ବ ନ ସହେ ଆଜ ବୁଝହେ ବିଚାରି ।
ଆଜ୍ଞାପାଇ ସେ ଦୈବଜ୍ଞ କଲା ଆୟୋଜନ
ଯାତ୍ରାକରିବାରେ ତେବେ ବସିଲା ରାଜନ ।
ସିଂହାସନେ ବସିଲା ଅବନ୍ତୀ ଅଧିକାରୀ
ମଙ୍ଗଳ ଆଚର ବିପ୍ର କରେ ବେଦଧରି ।
ତହୁଁ ସେହି ବସ୍ତୁ ପ୍ରାପ୍ତ ହୋଇଣ ନରପତି
ମନ ମଧ୍ୟରେ ହୋଇଣ ଆନନ୍ଦିତ ଅତି
ଦିବ୍ୟ ସିଂହାସନ ପରେ ବସିଲାକ ଯାଇ
ସେ କାଳର ଯା ଆନନ୍ଦ ତାର ସୀମାନାହିଁ ।
ସେହି ଯେ ନୀଳାଦ୍ରି-ଯାତ୍ରା ଅଭିଷେକ ମତେ
ମଙ୍ଗଳ ଆଚର ଶାସ୍ତ୍ରେ ରହିଅଛି ଯେତେ ।
ସର୍ବ ପ୍ରଥମରେ ତାହା କଲେ ବିପ୍ରମାନେ
ନାନା ଉପହାର ଯୋଗାଇଲେ ପ୍ରଜାଗଣେ ।
ଶ୍ରୀସୂକ୍ତ ଅନଳସୂକ୍ତ ବରୁଣ ସୂକ୍ତରେ
ବାୟୁସୂକ୍ତ ମନ୍ତ୍ରଗଣେ ଉଚ୍ଚାରି ମୁଖରେ ।
ପୃଥକ ପୃଥକ ବିଧେ ସର୍ବତୀର୍ଥ ଜଳେ
ନୃପତିଙ୍କି ଅଭିଷେକ କଲେ କୁତୁହଳେ ।
ସପ୍ତଦ୍ୱୀପ ବେଢ଼ାଇଣ ମସ୍ତକ ଉପରେ
ସ୍ନାନ କରାଇ ସୁସ୍ନାତ କଲେ ବିଧାନରେ ।
ଧୌମ୍ରହୀନ ବହ୍ନିସମ ତେଜ ମନୋହର
ଦ୍ୱାଦଶ ତିଳକେ ବିଭୂଷିତ କଳେବର ।
କଣ୍ଠତଟେ ବିରାଜଇ ତୁଳସୀର ମାଳ
ସାଧୁବେଶ ଧାରୀ ରାଜା ଅତି ଶୋଭାଶାଳୀ ।
ଶୁକ୍ଳ କୌପୀନ ପଟବସ୍ତ୍ର ପିନ୍ଧିଣ ରାଜନ
ଶ୍ରୀହରି ନାମ ସ୍ମରି କରି ଆଚମନ ।
କୁଶ ହସ୍ତରେ ନୃପତି ନାନ୍ଦୀମୁଖ କରି
ରାଜ୍ୟଜୟୀ ହୋମକରେ ମନେ ମୋଦଭରି ।
ଶୁଦ୍ଧଭାବେ ଗଣ ହୋମ କଲା ସୁଯତନେ
ଅଗ୍ନି ଆଦି ଦିଗପାଳେ ତୋଷିଲା ପୂଜନେ ।
ତଦନ୍ତେ ହରଷେ କରି ଜୟ ଶଙ୍ଖସ୍ୱନ
ଅନଳ ଦେବଙ୍କୁ ଭଲେ କଲା ପ୍ରଦକ୍ଷିଣ ।
ସେକାଳେ ଅଗ୍ନି ଦେବତା ହୋଇ ସୁପ୍ରସନ୍ନ
ହେଲେ ସୁଗନ୍ଧାଢ୍ୟ ଶ୍ୱେତବର୍ଣ୍ଣ ଧୂମହୀନ ।
ଦକ୍ଷିଣ ଆବର୍ତ୍ତ ଶିଖାଟେକ ଧନଞ୍ଜୟ
ହୋମକୁଣ୍ଡରେ ଶୋଭିଲେ ସେହୁ ଅତିଶୟ ।
ସାକ୍ଷାତେ ସ୍ୱହସ୍ତେ ଜୟ ଅଭିଳାଷୀ ନୃପେ
ମହା ମଙ୍ଗଳର ଚିହ୍ନ ସମର୍ପିଲେ ଆପେ ।
ତହୁଁ ରାଜା ଜ୍ୟୋତିଃଶାସ୍ତ୍ର ମନ୍ତ୍ର ଅନୁସାରେ
କ୍ରମେ ପୂଜାକଲା ନବଗ୍ରହଙ୍କୁ ସତ୍ୱରେ ।
ଦୈବଜ୍ଞ କହିବା ବିଧିମତେ ନରପତି
ସର୍ବଦେବଦେବୀଗଣେ ପୂଜିଲା ଝଟତି ।
ଆନନ୍ଦ ମନରେ ସାରି ନବଗ୍ରହ ହୋମ
କୁମ୍ଭଜଳ ଅଙ୍ଗେ ସିଞ୍ଚି ନୃପତି ଉତ୍ତମ ।
ପରିଧାନ କଲା ଦିବ୍ୟ ମଙ୍ଗଳ ଭୂଷଣ
ରତନ ମୁକୁଟ ଶିରେ ପଗଡ଼ି ନୂତନ ।
ଶୁଭ୍ର ବସନରେ ସେହି ପାଗ ମନୋହର
ରାଜହଂସ ପକ୍ଷପୁଞ୍ଜ ତହିଁକି ସୁନ୍ଦର ।
ବେନିକର୍ଣ୍ଣରେ ଶୋଭଇ ରତନ କୁଣ୍ଡଳ
ମଦନ ଦର୍ପଣ ଜିଣି ମଣ୍ଡେ ଗଣ୍ଡସ୍ଥଳ ।
ତରଳ ସଂଯୁକ୍ତ ହାର କଣ୍ଠର ଭୂଷଣ
ତୁଳସୀମାଳା ସଙ୍ଗରେ ଦିଶଇ ଘଟଣ ।
ବାହୁଟି ଅଙ୍ଗଦ ରୁଚିରୁ ବଳୟକୁ କରେ
ପିନ୍ଧିଲା ନୃପତିବର ଆନନ୍ଦ ମନରେ ।
ଶ୍ରେଷ୍ଠ ମାଣିକ୍ୟ ମୁଦ୍ରିକା ଅଙ୍ଗୁଳିରେ ଶୋଭେ
ଏମନ୍ତେ ରତ୍ନ ଭୂଷଣ ମଣ୍ଡିହେଲା ଦେହେ ।
କନକ ସୂତ୍ର ବିରାଜେ କଟୀ ତ୍ରିବଳୀରେ
ସୁବର୍ଣ୍ଣ କିଙ୍କିଣୀ ଶୋଭେ ମୁକୁତା ଥୋପରେ ।
ପଦ୍ମରେ ପାଦଭୂଷଣ ରତନ କଟାଉ
ଅତି ଝଲମଲ ହୋଇ ଦିଶେ ଦାଉ ଦାଉ ।
ଚନ୍ଦନେ ଚର୍ଚ୍ଚିତ ଅଙ୍ଗ ଗଳେ ଫୁଲହାର
କ୍ଷୀରୋଦଶ୍ରୀ ପାଟ ଯଥା ଅପୂର୍ବ ସୁନ୍ଦର ।

କଣ୍ଠ ଉପରେ ଶୋଭଇ ସୁବର୍ଣ୍ଣ ଉତ୍ତରୀ
ଅନୁପମ ରାଜବେଶ ଦିଶଇ ମାଧୁରୀ ।
ଲଲାଟେ ଗୋପୀଚନ୍ଦନ ଦିଶେ ଜକଜକ
ପରମ ବୈଷ୍ଣବ ବର ଅବନୀ ନାୟକ ।
ହେମମୟ ଦରପଣ ଧରି ନିଜ କରେ
ଆପଣା ହରଷ ମୁଖ ନିରୀକ୍ଷଣ କରେ ।
ମନେ ମନେ ଅତିଶୟ ଆନନ୍ଦିତ ହୋଇ
ମାଧବଙ୍କୁ ହୃଦମଧ୍ୟେ ସ୍ମରଣ କରଇ ।
ବେନିକର ଯୋଡ଼ି ରାଜା ଆରମ୍ଭିଲା ସ୍ତବ
ଜୟହେ ନୀଳାଦ୍ରିନାଥ ଜୟହେ ମାଧବ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିମାନେ
ଏହି ରୂପେ ଇନ୍ଦ୍ରଦ୍ୟୁମ୍ନ କଉତୁକ ମନେ ।
ପୂର୍ବ ମୁଖେ କରିଣ ମଙ୍ଗଳ ଆରୋପଣ
ଶାସ୍ତ୍ର ମତେ ସବୁ କର୍ମ କରି ସମାପନ ।
କୃଷ୍ଣଙ୍କର ଜୟ କଥା ମନେ ସୁମରିଲା ।
ଯେଉଁପରି ଜୟ କରିଥିଲେ ପଦ୍ମଡ଼ୋଳା ।
ପାରିଜାତ ହରଣ କରିଣ ଜଗନ୍ନାଥ
ଦ୍ୱାରକାକୁ ବାହୁଡ଼ିଲେ ସତ୍ୟଭାମା ସାଥ ।
ସେହି କଥା ହୃଦୟରେ ଚିନ୍ତି ନୃପବର
ନାରଦଙ୍କୁ ପ୍ରଦକ୍ଷିଣ କଲାକ ସତ୍ୱର ।
ସର୍ବ ସୁଲକ୍ଷଣ ବେଳା ଆସି ପହୁଞ୍ଚିଲା
ଯାତ୍ରାକୁ ରାଜା ଦକ୍ଷିଣ ପାଦ ବଢ଼ାଇଲା ।
ସେକାଳେ ବାଜିଲା କେତେ ମଙ୍ଗଳ ବାଜଣା
ମଙ୍ଗଳ ମହୁରୀ ଜୟ କାହାଳୀ ଯେ ବୀଣା ।
ଜୟ ଶଙ୍ଖ ଭେରୀ ତୁରୀ ମୃଦଙ୍ଗ ଝାଞ୍ଜରୀ
ମର୍ଦ୍ଦଳ କଂସାଳ ଗିନି ବାଜେ ସାରି ସାରି ।
ଡମ୍ଫ ନାଗରା ତେଲଙ୍ଗୀ ଯୋଡ଼ୀ ଢମ୍ପ ବାଦ୍ୟ
ଘନଘନ ବାଜି ଉଠେ ମନୋହର ନାଦ ।
ହରିବୋଲ ସହିତରେ ହୁଳ ହୁଳ ଧ୍ୱନି
ଆନନ୍ଦ ହୋଇ ଉଲ୍ଲସି ଉଠଇ ମେଦିନୀ ।
ଏମନ୍ତ ମଙ୍ଗଳ ବେଳା ଦେଖିଣ ରାଜନ
ଭକ୍ତିଭାବେ କରିଦେବ ନୃସିଂହ ଦର୍ଶନ ।
ଦୁର୍ଗା ମାଧବଙ୍କୁ ନମସ୍କାର କରି ତହିଁ
ଜୟ ଭଗବତୀ ଦୁର୍ଗେ ବୋଲି ନରସାଇଁ ।
ଦେବୀଙ୍କ ପ୍ରସାଦ ବସ୍ତ୍ର ମସ୍ତକେ ଘେନିଲା
ରଥ ନିକଟକୁ କଉତୁକେ ଚଳିଗଲା ।
ସେକାଳେ ନଗରବାସୀ ସଜ ବାଜ ହୋଇ
ରାଜ ଆଜ୍ଞା ଶିରେ ବହି ଅଇଲେକ ଧାଇଁ ।
ତହୁଁ ଶୁଭକ୍ଷଣେ ରଥେ ଚଢ଼ିଲା ରାଜନ
ଚଉଦିଗେ ବେଢ଼ିଛନ୍ତି ଅନ୍ୟ ରାଜାଗଣ ।
ଲକ୍ଷ ଲକ୍ଷ ରଥରେ ଶୋଭନ୍ତି ସବୁ ରାଜା
ମଧ୍ୟେ ଭାନୁ ସମ ଇନ୍ଦ୍ରଦ୍ୟୁମ୍ନ ମହାତେଜା ।
ଅନ୍ତଃପୁର ରାଣୀମାନେ ବସି ଚଉଦୋଳେ
ରକ୍ଷକେ ବେଷ୍ଟିତ ହୋଇ ଯାନ୍ତି ନୀଳାଚଳେ ।
ରାଜାସଙ୍ଗେ ଇନ୍ଦ୍ରଦ୍ୟୁମ୍ନ ରଥେ ଗତି କରେ
ନିଜଗୁଣେ ସେହୁ ସର୍ବଜନଙ୍କୁ ନିସ୍ତାରେ ।
ବୈଷ୍ଣବ ମହିମା ମୁଖେ କେ ପାରିବ କହି
ଉଦ୍ଧାର ଉପାୟ ବିଷ୍ଣୁ ଭକ୍ତିବିନା ନାହିଁ ।
ନିଜ କୁଳକୁ ବୈଷ୍ଣବ କରଇ ପବନ
ଗର୍ଭେ ଧରିଥିବା ମାତା ହୁଅଇ କୃତାର୍ଥ ।
ବସୁମତୀ ଭାଗ୍ୟବତୀ ବୋଲାଏ ନିଶ୍ଚୟ
ସ୍ୱର୍ଗରେ ନୃତ୍ୟ କରନ୍ତି ଯେ ପିତୃ ସମୂହ ।
ଯେବଣ କୁଳେ ବୈଷ୍ଣବ ହୁଅଇ ଜନମ
ସପ୍ତପୁରୁଷ ପର୍ଯ୍ୟନ୍ତ ନ ଦଣ୍ଡଇ ଯମ ।
ବୈଷ୍ଣବ ମହିମା ଦେବତାଙ୍କୁ ଅଗୋଚର
ଯୁଗେ ଯୁଗେ ପୂଜ୍ୟପାତ୍ର ବୈଷ୍ଣବ ଠାକୁର ।
ବୈଷ୍ଣବ ରୂପେ ଯେ ବିଷ୍ଣୁ କରନ୍ତି ବିହାର
ଯେ ବୈଷ୍ଣବ ସେହି ବିଷ୍ଣୁ ବୁଝ ସାରୋଦ୍ଧାର ।
ପରମ ବୈଷ୍ଣବ ଇନ୍ଦ୍ରଦ୍ୟୁମ୍ନ ମହାରାଜା
ବୈଷ୍ଣବ ବେଶଧାରୀ ତା ସକଳ ପରଜା ।
ସେ ଯେ ବୈଷ୍ଣବ ପ୍ରବର ଅତ୍ୟନ୍ତ ଆନନ୍ଦେ
ଶ୍ରୀକ୍ଷେତ୍ରକୁ ଯାତ୍ରା କରେ ଘେନି ପ୍ରଜାବୃନ୍ଦେ ।
ଦିବ୍ୟ ରଥେ ବସି ରାଜା ଚଳେ ନୀଳାଚଳେ
ହରି ହରି ବୋଲି ଯାନ୍ତି ପରଜା ସକଳେ ।
ଅବନ୍ତୀକି ପାର ହୋଇ ସେ ସୂର୍ଯ୍ୟ ତନୟ
ପୂର୍ବ ମୁଖେ ଚଳେ ରଥ ଫୁଲାଇ ହୃଦୟ ।
ସେ ରଥ ପଛରେ ଅନ୍ୟ ନୃପଙ୍କର ରଥ
ଧାଡ଼ି ଧାଡ଼ି ହୋଇ ଚଳେ ଶୋଭା ଯେ ଅତ୍ୟନ୍ତ ।
ହାତୀଦୋଳାମାନଙ୍କେ ବସି ପୁରନାରୀଗଣ
ମହା ଆନନ୍ଦ ମନରେ କରନ୍ତି ଗମନ ।

ଉଦୟ ପୁରକୁ ଛାଡ଼ି ମାଳବ ମିଳିଲେ
ସେହି ରାତି ବଞ୍ଚି ତହୁଁ ପ୍ରଭାତେ ଚଳିଲେ ।
ପୂର୍ବାହ୍ନେ ପୁଷ୍କର ତୀର୍ଥେ ପ୍ରବେଶି ବନ୍ଦନ
ସ୍ନାନ ଦାନ କଲେ ହୋଇ ହରଷିତ ମନ ।
ସେଠାରୁ ଯାଇ ମିଳିଲେ ଶ୍ରୀଜୟ ନଗରେ
ସେ ନଗର ଦେଖି ରାଜା ପ୍ରଶଂସା ଆଚରେ ।
ତହୁଁ ରାତି ବଞ୍ଚି ପ୍ରାତେ କଲେକ ଗମନ
ପୂର୍ବ ମୁଖେ ମହା ସୁଖେ ଚଳନ୍ତି ରାଜନ ।
ରାଜଗଡ଼ କୁମର ଦେଶକୁ ହୋଇ ପାର
ଅଇଲେ ଭରତ ଗଡ଼େ ସୂର୍ଯ୍ୟଙ୍କ କୁମର ।
ଭରତଙ୍କ ସ୍ଥାନ ଦେଖି ଅତି ମନୋହର
ରଜନୀ ବଞ୍ଚିଲେ ତହିଁ ମାଳବ ଈଶ୍ୱର ।
ପ୍ରଭାତେ ଉଠିଣ ସର୍ବେ ବିମାନ ଆରୋହି
ପୂର୍ବାହ୍ନେ ମଥୁରାପୁରେ ପ୍ରବେଶିଲେ ଯାଇ ।
ମଧୁବନ ଦେଖିଣ ନାରଦ ମୁନିବର
ରାଜାକୁ କହନ୍ତି ହୋଇ ଆନନ୍ଦ ଅପାର ।
ହେ ରାଜନ ମୋର ଶିଷ୍ୟ ଧ୍ରୁବ ଏହି ବନେ
ପାଇଲା ହରିଙ୍କ ପଦ ତପ ଆଚରଣେ ।
ସଂକ୍ଷେପେ ଧ୍ରୁବ ଚରିତ କହିଣ ନାରଦ
ଇନ୍ଦ୍ରଦ୍ୟୁମ୍ନେ କରାଇଲେ ଭାବେ ଗଦ ଗଦ ।
ତହୁଁ ଯମୁନା ଜଳରେ ସର୍ବେ ସ୍ନାନ ସାରି
ଆନନ୍ଦେ ଦେଖିଲେ ବୃନ୍ଦାବନର ମାଧୁରୀ ।
ବୃନ୍ଦାବନ ଦେଖି ସୁଖେ ସେ ଅବନ୍ତୀପତି
ହରଷ ମନେ ସେଠାରେ ବଞ୍ଚିଲେ ସେ ରାତି ।
ପ୍ରଭାତେ ବୃନ୍ଦାବନକୁ ପ୍ରଣାମ କରିଣ
ପ୍ରେମାନନ୍ଦେ ପୂର୍ବ ମୁଖେ କରନ୍ତି ଗମନ ।
ସେହିଠାରୁ ଶୃଙ୍ଗବେର ଗଲେ ପଥବାହି
ଚିତ୍ରକୂଟ ଗିରି ପାଶେ ପହଞ୍ଚିଲେ ଯାଇ ।
ତହୁଁ ସୀତାରାମ ମୂର୍ତ୍ତି କରି ଦରଶନ
ନାନାମତେ ସ୍ତବ କରେ ସୂର୍ଯ୍ୟଙ୍କ ନନ୍ଦନ ।
ତହୁଁ ରାତି ରହି ପ୍ରାତେ ଚାଲେ ଗଙ୍ଗାତୀରେ
ପ୍ରୟାଗତୀର୍ଥେ ମିଳିଲେ ଦୁଇଦିନ ପରେ ।
ମାଧବଙ୍କୁ ଦେଖି ତହୁଁ ଚଳିଲେ ତୁରିତେ
ଗଙ୍ଗାପାରେ କାଶୀଧାମେ ମିଳିଲେ ସମସ୍ତେ ।
ବିଶ୍ୱେଶ୍ୱରଙ୍କୁ ଦର୍ଶନ କରି ନରପତି
ନମସ୍କାର କଲେ ହୋଇ ଆନନ୍ଦିତ ଅତି ।

ପ୍ରଭାତରୁ ଉଠି ରାଜା ନାରଦଙ୍କ ସାଥେ
ପ୍ରଜାଙ୍କ ସହିତେ ଗଲେ ନୀଳାଚଳ ପଥେ ।
ସରସ୍ୱତୀ ସରଯୂ ଜାହ୍ନବୀ ଜଳ ଧାର
ପାରହୋଇ ପୂର୍ବ ମୁଖେ ଚଳିଲେ ସତ୍ୱର ।
ଗଙ୍ଗା ତୀରେ ତୀରେ ସର୍ବେ କରନ୍ତି ଗମନ
ଗୟାଠାରେ କଲେ ଗଦାଧରଙ୍କୁ ଦର୍ଶନ ।
ତିନି ଦିନେ ଗଙ୍ଗା ପାର ହୋଇ ମୋଦମନେ
ରାଜମହଲେ ପ୍ରବେଶ ହେଲେ ଦୁଇ ଦିନେ ।
ତହୁଁ ଦକ୍ଷିଣ ମୁଖରେ କଲେ ସେ ଗମନ
ଦିଦିନେ ମିଳିଲେ ବୈଦ୍ୟନାଥ ଶିବସ୍ଥାନ ।
ସେହିଠାରୁ ଦାକ୍ଷିଣାତ୍ୟେ ବେଗ ହୋଇ ଗଲେ
ଚର୍ଚ୍ଚିକା ସ୍ଥାନରେ ତିନି ଦିବସେ ମିଳିଲେ ।
ବନମଧ୍ୟେ ସେହି ଦେବୀ କରିଛନ୍ତି ବିଜେ
ମହା ଯୋଗେଶ୍ୱରୀ ଗଳେ ମୁଣ୍ଡ ମାଳା ସାଜେ ।
କିଛି ଦୂର ତହୁଁ ଗଲେ ଦରଶନ ସାରି
ପୁଣ୍ୟତୋୟା ବୈତରଣୀ ନଦୀ ହେଲେ ପାରି ।
ବିରଜା ଦେବୀଙ୍କି ସୁଖେ କଲେ ଦରଶନ
ସେ ଦେବୀଙ୍କର ମହିମା ଅତି ଅକଥନ ।
ନାରଦ ବୋଲନ୍ତି ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କି
ଶୁଣହେ ରାଜନ ଏବେ ମୋର ଭାରତୀକି ।
ଜନେ କହନ୍ତି ଉତ୍କଳ ଦେଶ ଏହିଠାରୁ
ଦେଖ ଦିଶୁଅଛି ନେତ୍ରେ କେମନ୍ତ ସୁନ୍ଦରୁ ।
ଏହି ଯେ ବିରଜା କ୍ଷେତ୍ର ମହାପୁଣ୍ୟ ସ୍ଥାନ
ଏ ଦେବୀଙ୍କି ଭକ୍ତିଭରେ କର ଦରଶନ ।
ରଥରୁ ଉତ୍ତୁରି ସ୍ତବ କର ଏହିଠାରେ
ନୀଳାଚଳେ ଯାନ୍ତି ଏହି ଦେବୀଙ୍କ କୃପାରେ ।
ବିରଜା ନାମରେ ଏ ଯେ ଦେବୀ ମାହେଶ୍ୱରୀ
ଏହାଙ୍କ ପ୍ରସାଦେ ନେତ୍ରେ ଦେଖିବ ଶ୍ରୀହରି ।
ନାରଦଙ୍କ ଉପଦେଶେ ଗୋପତି ନନ୍ଦନ
ରଥରୁ ଓହ୍ଲାଇ କରେ ଦେବୀଙ୍କି ଦର୍ଶନ ।
କାନ୍ତରେ ଝଟକୁଳନ୍ତି ଶଙ୍କର-ଘରଣୀ
ପ୍ରଣାମ ଆଚରି ସ୍ତୁତି କରେ ନୃପମଣି ।
ନମସ୍ତେ ବିରଜା ଦେବୀ ଜଗତ ଜନନୀ
ନମସ୍ତେ ମା ତ୍ରିଦଶ ଈଶ୍ୱରୀ ସନାତନୀ ।
ନମସ୍ତେ ସିଂହବାହିନୀ ଉତ୍କଳ ବାସିନୀ
ନମସ୍ତେ ଅମ୍ବିକେ ସର୍ବ ଆପଦ ନାଶିନୀ ।

ନମସ୍ତେ ବିରଜା ଦେବୀ ଜୟ ଭଗବତୀ
ନମସ୍ତେ ବିରଜା ଦେବୀ ମାତ ମହାସତୀ ।
ନମସ୍ତେ ବିରଜା ଦେବୀ ନମୋ ଅନ୍ନପୂର୍ଣ୍ଣା
ନମସ୍ତେ ବିରଜା ଦେବୀ ଅଭୟା ଅପର୍ଣ୍ଣା ।
ନମସ୍ତେ ବିରଜା ଦେବୀ ସଙ୍କଟ ତାରଣୀ
ନମସ୍ତେ ବିରଜା ଦେବୀ ଦୁଃଖ ନିବାରଣୀ ।
ନମସ୍ତେ ବିରଜା ଦେବୀ ଦୁର୍ଗତି ନାଶିନୀ
ନମସ୍ତେ ବିରଜା ଦେବୀ ମଧୁର ହାସିନୀ ।
ନମସ୍ତେ ବିରଜା ଦେବୀ ସିନ୍ଦୂର ମଣ୍ଡିନୀ
ନମସ୍ତେ ବିରଜା ଦେବୀ ସନ୍ତାପ ଖଣ୍ଡିନୀ ।
ନମସ୍ତେ ବିରଜା ଦେବୀ ଦାରିଦ୍ର୍ୟ ଭଞ୍ଜିନୀ
ନମସ୍ତେ ବିରଜା ଦେବୀ ଗରବ ଗଞ୍ଜିନୀ ।
ନମସ୍ତେ ବିରଜା ଦେବୀ ନିତ୍ୟ ନିରଞ୍ଜନୀ
ନମସ୍ତେ ବିରଜା ଦେବୀ ଭକତ ରଞ୍ଜିନୀ ।
ନମସ୍ତେ ବିରଜା ଦେବୀ ଅପୂର୍ବା ଶୋଭିନୀ
ନମସ୍ତେ ବିରଜା ଦେବୀ ତ୍ରିପୁର ମୋହିନୀ ।
ନମସ୍ତେ ବିରଜା ଦେବୀ ସର୍ବ ସିଦ୍ଧିଦାତ୍ରୀ
ନମସ୍ତେ ବିରଜା ଦେବୀ ଶୁଦ୍ଧ ହେମଗାତ୍ରୀ ।
ନମସ୍ତେ ବିରଜା ଦେବୀ ସଦାଶିବ ଜାୟା
ନମସ୍ତେ ବିରଜା ଦେବୀ ମାତ ମହାମାୟା ।
ନମସ୍ତେ ବିରଜା ଦେବୀ ପ୍ରସନ୍ନ ବଦନୀ
ନମସ୍ତେ ବିରଜା ଦେବୀ କମଳ ନୟନୀ ।
ନମସ୍ତେ ବିରଜା ଦେବୀ ମୋକ୍ଷ ପ୍ରଦାୟିନୀ
ନମସ୍ତେ ବିରଜା ଦେବୀ ସୁଖ ବିଧାୟିନୀ ।
ନମସ୍ତେ ବିରଜା ଦେବୀ ସତ୍ୟ ସନାତନୀ
ନମସ୍ତେ ବିରଜା ଦେବୀ ପତିତପାବନୀ ।
ନମସ୍ତେ ବିରଜା ଦେବୀ କ୍ଷେତ୍ର ସାମନ୍ତାଣୀ
ନମସ୍ତେ ବିରଜା ଦେବୀ ବନ ବିହାରିଣୀ ।
ନମସ୍ତେ ବିରଜା ଦେବୀ ଅମର ବନ୍ଦିନୀ
ନମସ୍ତେ ବିରଜା ଦେବୀ ଗିରୀନ୍ଦ୍ର ନନ୍ଦିନୀ ।
ନମସ୍ତେ ବିରଜା ଦେବୀ ମହା ଯୋଗେଶ୍ୱରୀ
ନମସ୍ତେ ବିରଜା ଦେବୀ ପରମ ଈଶ୍ୱରୀ ।
ନମସ୍ତେ ବିରଜା ଦେବୀ ମହିଷ ମର୍ଦ୍ଦିନୀ
ନମସ୍ତେ ବିରଜା ଦେବୀ ଆନନ୍ଦ ବର୍ଦ୍ଧିନୀ ।
ନମସ୍ତେ ବିରଜା ଦେବୀ ଅଶୁଭ ଧ୍ୱଂସିନୀ
ନମସ୍ତେ ବିରଜା ଦେବୀ କମଳ ଆସନୀ ।
ନମସ୍ତେ ବିରଜା ଦେବୀ ଅଭୟ ବରଦା
ନମସ୍ତେ ବିରଜା ଦେବୀ ସର୍ବ ସିଦ୍ଧିପ୍ରଦା ।
ନମସ୍ତେ ବିରଜା ଦେବୀ କମଳେ ବିମଳେ
ନମସ୍ତେ ବିରଜା ଦେବୀ ମହା ଶାନ୍ତଶୀଳେ ।
ନମସ୍ତେ ବିରଜା ଦେବୀ ଅରକ୍ଷ ରକ୍ଷଣୀ
ନମସ୍ତେ ବିରଜା ଦେବୀ ସର୍ବସୁଲକ୍ଷଣୀ ।
ନମସ୍ତେ ବିରଜା ଦେବୀ ଶୁଭ ପ୍ରଦାୟିନୀ
ନମସ୍ତେ ବିରଜା ଦେବୀ ଦନୁଜ ଦଳନୀ ।
ନମସ୍ତେ ବିରଜା ଦେବୀ ମାତ ଦଶଭୁଜା
ନମସ୍ତେ ବିରଜା ଦେବୀ ହିମାଦ୍ରି ତନୁଜା ।
ନମସ୍ତେ ବିରଜା ଦେବୀ ହରମନୋରମା
ନମସ୍ତେ ବିରଜା ଦେବୀ ପୂର୍ଣ୍ଣମାସୀ ଉମା ।
ନମସ୍ତେ ବିରଜା ଦେବୀ ସତୀ ତ୍ରିଲୋଚନୀ
ନମସ୍ତେ ବିରଜା ଦେବୀ ପାପ ବିମୋଚନୀ ।
ନମସ୍ତେ ବିରଜା ଦେବୀ ଦୁର୍ଗେ କାଳରାତ୍ରି
ନମସ୍ତେ ବିରଜା ଦେବୀ ମାତହୈମବତୀ ।
ନମସ୍ତେ ବିରଜା ଦେବୀ ମାନ ଉଦ୍ଧାରଣୀ
ନମସ୍ତେ ବିରଜା ଦେବୀ ବିପଦ ବାରଣୀ ।
ନମସ୍ତେ ବିରଜା ଦେବୀ ମହାଭଇରବୀ
ନମସ୍ତେ ବିରଜା ଦେବୀ ପରମ ବୈଷ୍ଣବୀ ।
ନମସ୍ତେ ବିରଜା ଦେବୀ କର୍ପୂର ହାସିନୀ
ନମସ୍ତେ ବିରଜା ଦେବୀ ପଦ୍ମ ସୁବାସିନୀ ।
ନମସ୍ତେ ବିରଜା ଦେବୀ ବିମୁକ୍ତ କେଶିନୀ
ନମସ୍ତେ ବିରଜା ଦେବୀ ସୁରମ୍ୟ ବେଶିନୀ ।
ନମସ୍ତେ ବିରଜା ଦେବୀ ମାତ ସିଦ୍ଧେଶ୍ୱରୀ
ନମସ୍ତେ ବିରଜା ଦେବୀ ସୁରଙ୍ଗ ଅମ୍ବରୀ ।
ନମସ୍ତେ ବିରଜା ଦେବୀ ଗଣେଶଜନନୀ
ନମସ୍ତେ ବିରଜା ଦେବୀ ଶଶାଙ୍କ ଆନନୀ ।
ନମସ୍ତେ ବିରଜା ଦେବୀ ଅଭୟା ଶଙ୍କରୀ
ନମସ୍ତେ ବିରଜା ଦେବୀ ସର୍ବ ଶୁଭଙ୍କରୀ ।
ନମସ୍ତେ ବିରଜା ଦେବୀ ମଙ୍ଗଳ ଚଣ୍ଡିକେ
ନମସ୍ତେ ବିରଜା ଦେବୀ ଦକ୍ଷିଣା କାଳିକେ ।
ନମସ୍ତେ ବିରଜା ଦେବୀ ମା ସିଦ୍ଧସାରଳା
ନମସ୍ତେ ବିରଜା ଦେବୀ ତୁ ସର୍ବମଙ୍ଗଳା ।
ନମସ୍ତେ ବିରଜା ଦେବୀ ଚଣ୍ଡମୁଣ୍ଡ ହନ୍ତ୍ରୀ
ନମସ୍ତେ ବିରଜା ଦେବୀ ମା ସହାରକର୍ତ୍ତ୍ରୀ ।

ନମସ୍ତେ ବିରଜା ଦେବୀ କରୁଣା-ସାଗରୀ
ନମସ୍ତେ ବିରଜା ଦେବୀ ବିଷ୍ଣୁ ଶକ୍ତି ଗୌରୀ ।
ନମସ୍ତେ ବିରଜା ଦେବୀ ମହିମା ପ୍ରସିଦ୍ଧା
ନମସ୍ତେ ବିରଜା ଦେବୀ ଦଶମହାବିଦ୍ୟା ।
ନମସ୍ତେ ବିରଜା ଦେବୀ ସର୍ବରୂପା ସତୀ
ନମସ୍ତେ ବିରଜା ଦେବୀ ମୃଡ଼ାଣୀ ପାର୍ବତୀ ।
ନମସ୍ତେ ବିରଜା ଦେବୀ ଶିବାଣୀ ଭବାଣୀ
ନମସ୍ତେ ବିରଜା ଦେବୀ ଅମ୍ବିକା ସର୍ବାଣୀ ।
ନମସ୍ତେ ବିରଜା ଦେବୀ ଚଣ୍ଡ ଶୂଳହସ୍ତା
ନମସ୍ତେ ବିରଜା ଦେବୀ ସର୍ବତ୍ର ପୂଜିତା ।
ନମୋ ନମଃ ଗୋ ଜନନୀ ବ୍ରହ୍ମ ସନାତନୀ
ସର୍ବ ଆପଦ ଖଣ୍ଡନୀ ଭୁବନ ମୋହିନୀ ।
ତୁହି ଗୋ ଜନନୀ ଆଦିଶକ୍ତି ସର୍ବେଶ୍ୱରୀ
ତୁହି ସାବିତ୍ରୀ ଗାୟତ୍ରୀ ନାମ ଥାଉ ଧରି ।
ତୁହି ଲକ୍ଷ୍ମୀରୂପା ତୁହି ଦେବୀ ବୀଣାପାଣି
ତୁହି ମା ଇନ୍ଦ୍ରଭୁବନେ ବୋଲାଉ ଇନ୍ଦ୍ରାଣୀ ।
ତୁହି ମାତ ସ୍ୱାହା ସ୍ୱଧା କୀର୍ତ୍ତି ଧୃତି ପୁଷ୍ଟି
ତୁହି ମାତ ଶ୍ରଦ୍ଧା ସତ୍ୟବତୀ ମୂର୍ତ୍ତି ତୁଷ୍ଟି ।
ତୁହି ମା ଶୀତଳା ଦେବୀ ତ୍ରିତାପ ହାରିଣୀ
ତୁହି ମା ବ୍ୟାଧିନାଶିନୀ ସୌଭାଗ୍ୟ ଦାୟିନୀ ।
ତୁହି ମାତ ନାରାୟଣୀ ତୁହି କାତ୍ୟାୟନୀ
ଧନ ଜନ ଦାତ୍ରୀ ହରିନ ମ ପରାୟଣୀ ।
ପରମ ପବିତ୍ରମୟୀ ମାଗୋ ଜଗଦମ୍ବେ
ଜୟ ମା ବାସନ୍ତୀ ଦେବୀ ଅମ୍ବାଳିକା ଅମ୍ବେ ।
ବିଦ୍ୟା ବୁଦ୍ଧି ପ୍ରଦାୟିନୀ ଇଷ୍ଟସାମନ୍ତାଣୀ
ପାପବିମୋଚନୀ ଯମ ଭୟ ନିବାରଣୀ ।
ସର୍ବଦେବୀ ସ୍ୱରୂପା ତୁ ମା ସର୍ବମଙ୍ଗଳେ
ଅସାଧ୍ୟ ସାଧନ ହୁଏ ତୋ ମହିମା ବଳେ ।
ଯେବା ଯେଉଁଭାବେ ତୋତେ କରେ ଆରାଧନା
ସେହିଭାବେ ପୂର୍ଣ୍ଣକରୁ ତା ମନକାମନା ।
ଧନ୍ୟ ତୋ ମହିମା ଭଗବତୀ ବିରଜାଈ
ଉତ୍କଳେ ମହିମାବାନା ଅଛୁ ଯା ଟେକୋଇ ।
ମହା ଯୋଗିନୀ ଈଶ୍ୱରୀ ଆଗୋ ମହାମାୟୀ
ମୁଁ ଛାର ଅବା ତୋ ଗୁଣ କସ ବର୍ଣ୍ଣିବଇଁ ।
ସ୍ୱଭାବେ ତ୍ରିଗୁଣମୟୀ ଧନ୍ୟ ଖେଳ ତୋର
ତୋହର ଆଶ୍ରିତ ଭାବେ ଧାତା ହରିହର ।
ସତ୍ତ୍ୱ ରଜ ତମ ଗୁଣୀ ତ୍ରିଦେବ ନିରତେ
କଳ୍ପନା କରନ୍ତି ତୋର ଯୋଗୁଁ ଅନ୍ତର୍ଗତେ ।
ସୃଜନ୍ତି ଚତୁରାନନ ପାଳନ୍ତି ଶ୍ରୀହରି
ସଂହାର କରନ୍ତି ତୋର ଯୋଗେ ଶୂଳଧାରୀ ।
ପରମ ଈଶ୍ୱରୀ ମାତ ଦୟାକର ମୋରେ
କରଯୋଡ଼ି ଜଣାଉଛି ତୋର ଶ୍ରୀଗ୍ରମୁଚରେ ।
ତୋ ବିନା ଭବେ ଆନନ୍ଦ ନୁହଇ ଉଦୟ
ଜଗତ କାରଣ ମାତା ତୁ ଅଟୁ ନିଶ୍ଚୟ ।
ସର୍ବକାର୍ଯ୍ୟ ସିଦ୍ଧି ପୁଣି ସକଳ ମଙ୍ଗଳ
ତାହାସବୁ ତୋ ଚରଣ ଆରାଧନା ଫଳ ।
ତୁହି ଚରାଚରେ ପତି ବିଷ୍ଣୁଙ୍କ ଶକତି
ତୋରଯୋଗୁଁ ସୃଷ୍ଟି ଆଦି କରନ୍ତି ଶ୍ରୀପତି ।
ଏଣୁ ଏହି ବର କରୁଅଛି ମୁଁ ପ୍ରାର୍ଥନ
ନୀଳାଚଳେ ଯେମନ୍ତେ କରେ ଶ୍ରୀହରି ଦର୍ଶନ ।
ଏହିମତେ ବହୁସ୍ତୁତି ପ୍ରଣାମ ଆଚରି
ପୁଣି ରଥେ ବସି ଚଳିଗଲେ ଦଣ୍ଡଧାରୀ ।
ସୂର୍ଯ୍ୟ ତେଜସମ ରଥେ ଅବନ୍ତୀର ପତି
ବେଗରେ ଚଳଇ ରଥ ଯେମନ୍ତେ ବାୟୁଗତି ।
ବ୍ରାହ୍ମଣୀ ଆଦି ଯେ ବହୁ ନଦୀ ବନ ଗିରି
ଲଙ୍ଘି ଅଳ୍ପକ୍ଷଣରେ ରଥ ଚଳେ ଧ୍ୱନିକରି ।
ହରି ହରି ବୋଲି ଡାକ ପଡ଼ଇ ପଥରେ
ପ୍ରବେଶିଲେ ଯାଇ ଚିତ୍ରୋତ୍ପଳା ନଦୀତୀରେ ।
ମହାନଦୀ ଚିତ୍ରୋତ୍ପଳା ଦେଖି ନରପତି
ରଥ ରଖାଇଣ ତହିଁ ଶୋଭା ବିଲୋକନ୍ତି ।
ସେ ନଦୀତୀରେ ଶୋଭଇ ବିରଳ କାନନ
ଧାତୁମୟ ସକଳ ପର୍ବତ ସୁଶୋଭନ ।
କେତେ ଜାତି ବୃକ୍ଷ ତହିଁ କେତେ ଜାତି ଲତା
କେତେ ଜାତି ପକ୍ଷୀ ସ୍ୱନ କରୁଛନ୍ତି ତଥା ।
ସ୍ଥାନେ ସ୍ଥାନେ କୁସୁମ ଉଦ୍ୟାନ ମନୋରମ
ବିକଶିତ ନାନାପୁଷ୍ପ ତହିଁ ଅନୁପମ ।
ଅଶୋକ ପଲାଶ ଚମ୍ପା ନାଗେଶ୍ୱର
କଞ୍ଚନ ଚମ୍ପକ କୁରୁଣ୍ଟକ କରବୀର ।
ବନମଲ୍ଲିକା ମାଳତୀ ମାଧବୀ ଟଗର
ରଙ୍ଗଣୀ ପୁନ୍ନାଗ ଜବା ପାଟଳୀ ମନ୍ଦାର ।
ନାଆଳ ସୁଗନ୍ଧରାଜ କଦମ୍ବ ଫିରିକ
କେତକୀ ବକୁଳ ଆଦି ଫୁଟିଛି ଅନେକ ।

ଫଳ ବୃକ୍ଷମାନ ଦିଶେ ଅତି ମନୋହର
ଆମ୍ର ନାରଙ୍ଗ ମହୁଲ ଜାମ୍ବୁ ଯେ ଯମ୍ବୀର ।
ବଣକୋଳି ନରକୋଳି କ୍ଷୀରକୋଳି ଗଛ
ଲେମ୍ବୁ କମଳା କାଞ୍ଚିଆ ବେଲ ଯେ ବଇଁଞ୍ଚ ।
ବଡ଼ିଅଳ ଆମଳକୀ ହରଡ଼ା ବାହାଡ଼ା
ଫଳଭରରେ ବୃକ୍ଷମାନ ହୋଇଅଛି ଛିଡ଼ା ।
ତାଳ ତମାଳ ହନ୍ତାଳ ଗୁବାକର ସାଳ
ପଣସ ଅଶନ ଦେବଦାରୁ ନାରିକେଳ ।
ପିଆଶାଳ ଖଦିର ଚନ୍ଦନ କୁରୁବେଲ
କୁରୁମ କେନ୍ଦୂ କପିଥ ଡାମଣ ଶ୍ରୀମଳ ।
ଶିଙ୍ଗା ସାହାଡ଼ା ନିମ୍ବ କୁମ୍ଭୀ ପାଳଧୂଆ
କୁରୁବକ ଚମ୍ପମଲ୍ଲୀ କେତକୀ ଯେ କଆ ।
ସାଗୁଆନ ଧଅ ବୃକ୍ଷମାନ ପନ୍ତ ପନ୍ତ
କଶି ନେମ୍ବର ଚନ୍ଦନ ତରୁମାନ ତଥି ।
ବାଉଁଶ ବେତଗଛ ଯେ ସଂଖ୍ୟାନାହିଁ ତାର
ମହାନଦୀ ତୀରେ ବୃକ୍ଷଲତା ଏ ପ୍ରକାର ।
ଫୁଲ ସୁଗନ୍ଧରେ ମତ୍ତ ହୋଇଣ ଭ୍ରମରେ
ଝଙ୍କାର ନିସ୍ୱନ କରୁଛନ୍ତି ନିରନ୍ତରେ ।
କୋକିଳ ପଞ୍ଚମତାନେ ଗାଏ ସୁମଧୁର
ଶୁକ ଶାରିକା ଖଞ୍ଜନ ସ୍ୱର ମନୋହର ।
ହଳଦୀବସନ୍ତ ବଣି କଜ୍ଜଳପାତିଆ
କୁମ୍ଭାଟୁଆ କପୋତ ଯେ ଭଦଭଦଳିଆ ।
ମୟୂର ମୟୂରୀମାନେ କରୁଛନ୍ତି ନାଟ
ମଧୁର ସ୍ୱରେ ରାବନ୍ତି ଯେ ବନ କୁକ୍‌କୁଟ ।
ଏମନ୍ତେ ଅନେକ ପକ୍ଷୀଛନ୍ତି ସେହି ବନେ
ନଦୀ ଜଳରେ କ୍ରୀଡ଼ନ୍ତି ହଂସ ହଂସୀମାନେ ।
ପାଣିକୁଆ ମାଛରଙ୍କା ବକ ଶଙ୍ଖଚିଲ
ଡିଡରୀ ଚଢ଼ାଇ ତହିଁ ଛନ୍ତି ପଲ ପଲ ।
ଡାହୁକ ଚକୋର ପକ୍ଷୀ ଗୃଧ୍ରକ ନିକର
ନଦୀତୀରେ ଚରୁଛନ୍ତି କେତେ ଜଳଚର ।
ଛଞ୍ଚାଣ ବାଜ ବଇର କୁରର କୁରରୀ
ଶୂନ୍ୟ ମାର୍ଗରେ ଯେ ଉଡୁଛନ୍ତି ସାରି ସାରି ।
ନଦୀତୀର ବନେ ପଶୁମାନେ ଅଗଣନ ·
ବରାହ ମୃଗ କଣ୍ଟାସ ଭଲ୍ଲୁକ ହରିଣ ।
ଶମ୍ବର କୁରଙ୍ଗ ଝିଙ୍କ ଶଶକ ଶାର୍ଦ୍ଦୂଳ
ବିଚରଣ କରୁଛନ୍ତି ହୋଇ ପଲ ପଲ ।

ଗଣ୍ଡୁକ ଘୋଟକ ବନହସ୍ତୀ ମହାବଳ
ଗଧିଆ କଲରାପତ୍ରୀ ବ୍ୟାଘ୍ର ଯେ ଶୃଗାଳ ।
ଏମନ୍ତେ ଅନେକ ବନ ପଶୁ ପକ୍ଷୀଗଣ
ମହାନଦୀତୀରେ କ୍ରୀଡ଼ନ୍ତି ଅନୁକ୍ଷଣ ।
କାନନର ଶୋଭା ଦେଖି ରାଜା ହରଷିତ
ସେ ନଦୀ ତୀରେ ରହିଲେ ପ୍ରଜାଙ୍କ ସହିତ ।
ଯଥା ଯୋଗ୍ୟ ସ୍ଥାନେ ବାସ ଦେଲେ ନୃପଗଣେ
ଭକ୍ଷ୍ୟ ଭୋଜ୍ୟ ଆସନ ପାଇଲେ ସର୍ବ ଜନେ ।
ନାରଦଙ୍କ ସଙ୍ଗେ ରାଜା ଅନ୍ତଃପୁରେ ଗଲେ
ସୁଧା ରସ ଭୋଗ ଦୁହେଁ ଆନନ୍ଦେ ଭୁଞ୍ଜିଲେ ।
ସୂର୍ଯ୍ୟ ଅସ୍ତ ହୋନ୍ତେ ଚନ୍ଦ୍ର ଉଦୟ ହୋଇଲା
ବିଧୁର କିରଣେ ବନଶୋଭା ପ୍ରକାଶିଲା ।
ସଭାରେ ବସିଲେ ରାଜା ରତ୍ନ ଆସନେ
ସମ୍ମୁଖେ ନାରଦ ଚଉଦିଗେ ନୃପଗଣେ ।
ସୁରୂପା ଗଣିକା ସର୍ବେ ଉନ୍ମତ୍ତ ଯୌବନେ
ମଦନେ କରନ୍ତି ମୂର୍ଚ୍ଛା ନୟନର ବାଣେ ।
ତାଳମାନ ଅଭିନୟେ ନାଚନ୍ତି ସମ୍ମୁଖେ
ଭାଟମାନେ ସ୍ତୁତିବାଦ କରନ୍ତି ଯେ ସୁଖେ
ନୃପତିର କୀରତି ନିର୍ମଳ ସୁଧା ଧାର
କବିମାନେ ବର୍ଣ୍ଣନ କରନ୍ତି ଅନିବାର ।
ପଦଛନ୍ଦେ ନୃପ ଗୁଣ କରି ସେ ଗ୍ରନ୍ଥନ
ଗାୟକମାନେ ଆନନ୍ଦେ ଆରମ୍ଭନ୍ତି ଗାନ ।
ଏହିମତେ କୌତୁକେ ଅଛନ୍ତି ନରପତି
ସେକାଳେ ଦୁଆରୀ କହେ କରିଣ ପ୍ରଣତି ।
ଅଇଲେ ଉତ୍କଳପତି ତବ ଦରଶନ
ଆଜ୍ଞା ଦେଲେ ରାଜା ତାଙ୍କୁ ଆଣ ଏହି ସ୍ଥାନେ ।
ଆଜ୍ଞାପାଇ ଦ୍ୱାରୀ ଆଣେ ଉତ୍କଳ ଈଶ୍ୱରେ
ସେ ନୃପତି ଇନ୍ଦ୍ରଦ୍ୟୁମ୍ନେ ନମସ୍କାର କରେ ।
ଉତ୍କଳ ରାଜାଙ୍କୁ ଦେଖି ମାଳବ ରାଜନ
ପରମ ଆନନ୍ଦେ ତହିଁ କଲେ ଆଲିଙ୍ଗନ ।
ଆପଣା ଆସନେ ସ୍ନେହେ ବସାଇ ସତ୍ୱରେ
ମାଧବଙ୍କର ବୃତ୍ତାନ୍ତ ପୁଚ୍ଛିଲେ ସାଦରେ ।
ଉତ୍କଳ ନୃପତି କହେ ମଧୁର ବଚନ
ଅଳ୍ପ ଦିନେ ଘୋର ବାତ ବହିଲା ଏ ସ୍ଥାନେ ।
ଶୁଣିଲ ମାଧବ ଏବେ ହେଲେ ଅନ୍ତର୍ଦ୍ଧାନ
ମନୁଷ୍ୟ ଦୁର୍ଗମ ଅଟେ ମାଧବଙ୍କ ସ୍ଥାନ ।

ସେଠାକୁ ଯିବାକୁ ନାହିଁ ମନୁଷ୍ୟ ଶକତି
ଲୋକ ମୁଖୁଁ ଅନ୍ତର୍ଦ୍ଧାନ ଶୁଣିଲ ସମ୍ପ୍ରତି ।
ଇନ୍ଦ୍ରଦ୍ୟୁମ୍ନ ଏହା ଶୁଣି ହୋଇଲେ କାତର
ସାନ୍ତ୍ୱନା କରି କହନ୍ତି ତାଙ୍କୁ ମୁନିବର ।
ନ ଭାଳ ହେ ମହାରାଜା ସ୍ଥିର କରି ମତି
ଅବଶ୍ୟ ଦେଖିବ ତୁମ୍ଭେ ମାଧବ ମୂରତି ।
ଏମନ୍ତେ ମୁନି ସାନ୍ତ୍ୱନା କଲେ ନୃପବରେ
ଇନ୍ଦ୍ରଦ୍ୟୁମ୍ନଙ୍କର ବକ୍ଷ ତିତନ୍ତି ଲୋତକରେ ।
ଶ୍ରୀହରି ଗୁଣ ସୁମରି ମାଳବ ଈଶ୍ୱର
ଧୈର୍ଯ୍ୟ ଧରି ପୋଛିଲେ ସେ ନୟନର ନୀର ।
ନାରଦଙ୍କର ପ୍ରବୋଧ ବଚନକୁ ପାଳି
ସୁସ୍ଥିର ହୋଇ ରହିଲେ ବନ୍ଦନ ସମ୍ଭାଳି ।
ଶ୍ରୀନୀଳମାଧବ ମୂର୍ତ୍ତି ଦରଶନ ଆଶେ
ଧ୍ୟାନ ମଗ୍ନ ହେଲେ ରାଜା ପରମ ବିଶ୍ୱାସେ ।
ଜାଗରଣେ ତହିଁ ସେହି ରଜନୀ ବଞ୍ଚିଲେ
ବୈଷ୍ଣବ ଦାସ ସେ ନୃପ ଚରଣ ମଞ୍ଜିଲେ ।

—ଃ✻ଃ—

## ଇନ୍ଦ୍ରଦ୍ୟୁମ୍ନଙ୍କର ଏକାମ୍ର ବନେ ଉପସ୍ଥିତ ଓ ନାରଦଙ୍କ ମୁଖେ ହର ପାର୍ବତୀ କାହାଣୀ ବର୍ଣ୍ଣନ

ଜୈମିନି ଉବାଚ

ଜୈମିନି କହନ୍ତି ଶୁଣ ଆହେ ମୁନିଗଣ
ପ୍ରଭାତୁ ଉଠି ନୃପତି ସାରି ନିତ୍ୟକର୍ମ ।
ମାଧବଙ୍କୁ ହୃଦୟରେ ଚିନ୍ତି ଭକ୍ତିଭରେ
ମହାନଦୀ ତୀରଠାରୁ ଚଳିଲେ ସତ୍ୱରେ ।
ଉତ୍କଳଦେଶ ନୃପତି ଯାଏ ସଙ୍ଗେ ସଙ୍ଗେ
ହରିକଥା ଆଳାପନ୍ତି ଭକ୍ତିର ପ୍ରସଙ୍ଗେ ।
ଆଉ ରାଜାମାନେ ଯେତେ ପ୍ରଜାଙ୍କ ସହିତେ
ତାହାଙ୍କ ପଛରେ ଯାନ୍ତି ମନ ହରଷିତେ ।
ମହାଭକ୍ତ ବିଷ୍ଣୁଙ୍କର ସେ ଅବନ୍ତୀ ରାୟ
ଦକ୍ଷିଣ ମୁଖେ ଚଳଇ ଉତ୍କଣ୍ଠା ହୃଦୟ ।
ଗନ୍ଧବତୀ ନାମେ ନଦୀ ହୋଇଗଲେ ପାରି
ପ୍ରବେଶ ହେଲେ ଏକାମ୍ର କାନନ ମଧିରି ।
ସେଠାରେ ଭୁବନେଶ୍ୱର କୋଟି ଲିଙ୍ଗପତି
ପାର୍ବତୀଙ୍କ ସାଥେ ସଦା ବିହାର କରନ୍ତି ।
ତାହାଙ୍କ ପର୍ବାହ୍ନ ପୂଜା ସମୟରେ ଜାଣ
ନାନା ପ୍ରକାରି ବାଜଇ ବାଦ୍ୟ ଅଗଣନ ।
କେ କହି ପାରିବ ସେହି ପୂଜାର ବିଧାନ
ମହାଉପଚାରେ ନିରେ କରନ୍ତି ଅର୍ଚ୍ଚନ ।
ଘଣ୍ଟା ମର୍ଦ୍ଦଳ କଂସାଳ ଝଞ୍ଜାଳର ସ୍ୱନ
ଖଣ୍ଡେନ୍ଦୁ ଶୁଣି ପାରିଲେ ସେ ନୃପରାଣ ।
ନାରଦଙ୍କୁ ପଚାରନ୍ତି କରିଣ ବିନୟ
କହିବା ହେଉ ହେ ମୁନି ବ୍ରହ୍ମାଙ୍କ ତନୟ ।
ନୀଳାଚଳ କ୍ଷେତ୍ରବର ଅଛଇ କି ଏହି
ବିବିଧ ବାଦ୍ୟ ବାଜଣା କର୍ଣ୍ଣକୁ ଶୁଭଇ ।
ନାରଦ ବୋଲନ୍ତି ତହୁଁ ହସି ଧୀରେ ଧୀରେ
ସେ ସ୍ଥାନ ନୁହଇ ଏହୁ ଜାଣ ବିହିତରେ ।
ସ୍ୱର୍ଣ୍ଣାଚଳ ନାମ ଗୋଟି ଅଛଇ ଏହାର
ଏକାମ୍ର କାନନ ବୋଲି ଖ୍ୟାତ ଚରାଚର ।
ଅତି ପବିତ୍ର ସ୍ଥାନ ଏ ଶିବଙ୍କ ଆଳୟ
ପାର୍ବତୀଙ୍କ ସଙ୍ଗେ ହର ଏଠାରେ ବିଜୟ ।
ଭୀତମନେ ଶରଣାର୍ଥୀ ହୋଇ ମହେଶ୍ୱର
ଏହି ସ୍ଥାନେ ରହିଛନ୍ତି ହେ ଅବନ୍ତୀଶ୍ୱର ।
ରାଜା ବୋଲଇ ବିଚିତ୍ର କଥା ତପୋଧନ
ଆପଣଙ୍କ ମୁଖୁଁ ମୁହିଁ କଲଇଁ ଶ୍ରବଣ ।
ତ୍ରିପୁରାସୁରକୁ ଯେହୁ ବାଣକେ ନାଶିଲେ
ଅଗ୍ନି ନେତ୍ରେ ଯେହୁ କନ୍ଦର୍ପକୁ ଜାଳିଦେଲେ ।
ଯାହାଙ୍କ ପଦ ଆଶ୍ରୟ କରି ଅନୁକ୍ଷଣେ
ମହା ବିପଦୁ ତରନ୍ତି ଭବ-ଭୀତ ଜନେ ।
ଯାହାଙ୍କ ମହିମା ଦେବଗଣେ ଅଗୋଚର
ଯେଉଁ ପ୍ରଭୁ ଜଗତକୁ କରନ୍ତି ସଂହାର ।
ସେ ପୁଣି ଭୟରେ ଭୀତ ହେଲେ କି କାରଣେ
ସଂଶୟ ଫେଡ଼ି କହନ୍ତୁ ମୋ ଆଗେ ଆପଣେ ।
ବିସ୍ତାରକରି ହେ ମୁନି କରନ୍ତୁ ପ୍ରକାଶ
ତବ ମୁଖୁ ଶୁଣି ତତ୍ତ୍ୱ ଜାଣିବି ଅବଶ୍ୟ ।
ଅନୁଗ୍ରହ ବହି ମୋରେ କହ ଅବିଳମ୍ବେ
ଦୀନ କରୁଛୁ ତବ ଚରଣ ପଲ୍ଲବେ ।
ନାରଦ ବୋଲନ୍ତି ଶୁଣ ହେ ମାଳବ ପତି
ପୂର୍ବେ ଯଜ୍ଞ କଲେ ଯେବେ ଦକ୍ଷ ପ୍ରଜାପତି ।
ସେହି ଯଜ୍ଞେ ଶିବ ନିନ୍ଦା ଶୁଣନ୍ତେ ଭବାନୀ
ସହି ନ ପାରିଲେ ସତୀ ପତି ନିନ୍ଦାବାଣୀ ।

କୋପ ଅନଳରେ ଝାସ ଦେଇ ସେହିକ୍ଷଣ
ପରମ ବୈଷ୍ଣବୀ ଦେବୀ ତେଜିଲେ ଜୀବନ ।
ଗୌରୀ ଦଗ୍ଧ ହେବା ଶୁଣି ପ୍ରଭୁ ପଞ୍ଚାନନ
ଅତି କୋପଭରେ ହେଲେ ପ୍ରଜ୍ୱଳିତ ମନ ।
ଯଜ୍ଞଧ୍ୱଂସ କରିବାରେ ପାଞ୍ଚି ତ୍ରିଲୋଚନ
ବୀରଭଦ୍ରକୁ ପେଷିଲେ ଦକ୍ଷର ସଦନ ।
ଯଜ୍ଞନାଶି ଦକ୍ଷମୁଣ୍ଡ ଛିଣ୍ଡାଇଣ ନଖେ
ଜଣାଇଲେ ବୀରଭଦ୍ର ଆସି ଶିବ ପାଖେ
ତହୁଁ ମହାଦେବ ସେହି ଯଜ୍ଞସ୍ଥାନେ ଗଲେ
ଦକ୍ଷ କନ୍ଧେ ଛେଳିମୁଣ୍ଡ ଯୋଖି ପ୍ରାଣଦେଲେ ।
ନର ଦେହେ ଛେଳି ମୁଣ୍ଡ କେସନ ଦିଶିଲା
ଶିବନିନ୍ଦା ଫଳେ ଏହି ବିପରୀତ ହେଲା ।
ତଦନ୍ତରେ ଶିବ ସେହି ସତୀ ଦେହ ଘେନି
ଶୋକଭରେ କଲେ ସାରା ବ୍ରହ୍ମାଣ୍ଡ ଭ୍ରମଣି ।
ଆପଣେ ଶଙ୍କର ବ୍ରହ୍ମଚର୍ଯ୍ୟ ଆଚରିଲେ
ହିମଗିରି ଗୃହେ ସତୀ ପୁଣି ଜନମିଲେ ।
ଦିନକୁ ଦିନ ବଢ଼ିଲେ ସେ ହର ମୋହିନୀ
ଶିଶୁକାଳୁ ହେଲେ ଶିବ ପୂଜା ପରାୟଣୀ ।
ହରଙ୍କ ନିମନ୍ତେ ଘୋର ତପସ୍ୟା ସେ କଲେ
ବିପ୍ରରୂପେ ସଦାଶିବ ତାଙ୍କୁ ବିଡ଼ମ୍ବିଲେ ।
ଶିବନିନ୍ଦା କରିଣ ବୁଝିଲେ ସତୀ ମନ
ଶୁଦ୍ଧ ମନ ଜାଣି ତହୁଁ ପ୍ରଭୁ ତ୍ରିଲୋଚନ ।
ଆପଣା ମୂରତି ଧରି ପରିଚୟ ଦେଲେ
ଦରଶନ କରି ସତୀ ଆନନ୍ଦ ଲଭିଲେ ।
ବେନିକର ଯୋଡ଼ି ଭକ୍ତି ଭାବେ ହୈମବତୀ
ନିଜ ପ୍ରାଣପତି ଆଗେ କଲେ ବହୁ ସ୍ତୁତି ।
ତୋଷ ହୋଇ ସଦାଶିବ ଦେଲେଯେ ଆଶ୍ୱାସ
ଏବେ ଚାଲିଯାଅ ଦେବୀ ପିତାଙ୍କର ବାସ । ·
ସମୟେ ମୁଁ ତୁମ୍ଭଙ୍କୁ ଗୋ ହୋଇବଇଁ ବିଭା
ଭାଳେଣି ନକର ମନେ ପରାଣବଲ୍ଲଭା ।
ଏତେ ବୋଲି ଅନ୍ତର୍ଦ୍ଧାନ ହେଲେ ଶୂଳପାଣି
ହିମାଳୟେ ଚାଲିଗଲେ ସୁଖେ ଠାକୁରାଣୀ ।
କିଛିଦିନ ଅନ୍ତେ ପ୍ରଭୁ ଦେବ ମହେଶ୍ୱର
ମୋତେ ପଠାଇଲେ ଗିରିରାଜ ସମୀପର ।
ମଧ୍ୟସ୍ଥ ହୋଇ ମୁଁ ହିମାଳୟ ପାଶେ ଗଲି
ଶିବ ଗୁଣ କହି ତାଙ୍କ ମନ ମନାଇଲି ।
ସର୍ବ ଶୁଭେ ହେଲା ହର ପାର୍ବତୀ ବିବାହ
ପୁଷ୍ପବୃଷ୍ଟି କଲେ ଶୂନ୍ୟେ ଅମର ସମୂହ ।
ହର ପାର୍ବତୀଙ୍କ ରୂପ ଅତି ଅନୁପମ
ରଜତ ସୁବର୍ଣ୍ଣ କାନ୍ତି ଝଟକେ ଉତ୍ତମ ।
ଠିକେ ଶିବଗୌରୀ ବିଭାକଥା କହିଲଇଁ
ଏଥିଅନ୍ତେ ଆନ କଥା ଶୁଣ ନରସାଇଁ ।
ଶ୍ୱଶୁର ଗୃହରୁ ବାହୁଡ଼ିଣ ପଞ୍ଚାନନ
ପାର୍ବତୀଙ୍କି ସଙ୍ଗେ ଘେନି କଲେକ ଗମନ ।
ପ୍ରୟାଗକୁ ପାରହୋଇ ଆନନ୍ଦିତ ମନେ
ପ୍ରବେଶ ହୋଇଲେ ଯାଇ ବାରାଣସୀ ସ୍ଥାନେ ।
ଗଙ୍ଗାର ପଶ୍ଚିମତଟେ ଶୋଭେ ସେହି ପୁରୀ
ବିଶ୍ୱକର୍ମା ନିର୍ମାଣିଛି ଅତି ଯତ୍ନ କରି ।
ଅସଂଖ୍ୟ ଯେ ଅଟ୍ଟାଳିକା ବହୁ ଉପବନ
କେତେ ଦେବାଳୟ ନାନାତୀର୍ଥ ନଦୀଗଣ ।
ପଞ୍ଚକୋଶ ଆୟତନ ସେହି କ୍ଷେତ୍ରବର
ଗଙ୍ଗାର ତରଙ୍ଗ ପାପନାଶେ ନିରନ୍ତର ।
ତାର ମଧ୍ୟସ୍ଥଳେ ଶୋଭେ କନକ ମନ୍ଦିର
କନକର ସ୍ତମ୍ଭ ବେଢ଼ା କନକ ପ୍ରାଚୀର ।
ସେହି ମନ୍ଦିରେ ମହେଶ ପାର୍ବତୀଙ୍କ ସଙ୍ଗେ
କ୍ରୀଡ଼ା କରନ୍ତି ହରଷେ କଉତୁକ ରଙ୍ଗେ ।
ସେ ପୁରୀକି ଶିବ କେବେ ଛାଡ଼ି ନ ପାରନ୍ତି
ଅବିମୁକ୍ତ ନାମ ତେଣୁ ତାହାକୁ କହନ୍ତି ।
ସେ ପୁରୀ ସର୍ବପ୍ରାଣୀଙ୍କି କରେ ମୁକ୍ତିଦାନ
ତାହାକୁ ସେବନ୍ତି ସଦା ଭବଭୀତ ଜନ ।
ପତିଙ୍କଠାରୁ ବହୁତ ଅଳଙ୍କାର ପାଇ
ଉଲ୍ଲାସମନେ ଗଉରୀ ରହିଲେକ ତହିଁ ।
ନିରତେ ଶିବଙ୍କ ତୁଲେ କରନ୍ତି ବିହାର
ଏହିରୂପେ କାଶୀରେ ରହିଲେ ଉମା ହର ।
କଉତୁକେ ତହିଁ ବିହରନ୍ତି ଦିଗବାସ
ନିତି ନବ ନବ ଲୀଳା କରନ୍ତି ପ୍ରକାଶ ।
ବହୁଯୁଗ ଅତୀତ ହୋଇଲା ଏହିମତେ
କୋଟି ଲିଙ୍ଗ ଶିବଅଙ୍ଗୁ ଜନ୍ମିଲେ ଅଦ୍ଭୁତେ ।
ସେଠାରେ ସ୍ଥାପିଣ ଶିବ ଆନନ୍ଦ ମନରେ
ଇଚ୍ଛାସୁଖେ ଚାଲିଗଲେ କୈଳାସ ଶିଖରେ ।
ବହୁରାଜା ହେଲେ ସେହି ବାରାଣସୀ ପୁରେ
କାଶୀ ନାମେ ରାଜା ହେଲା ଦ୍ୱାପର ଯୁଗରେ ।

ଶିବଙ୍କୁ ସେ ଭକ୍ତିଭରେ କରେ ଆରାଧନା
ଅତି ଚମତ୍କାର ଅଟଇ ତାହାର ସାଧନା ।
ଏଥିନିମନ୍ତେ ତାର ଚରିତ କରିବି ପ୍ରକାଶ
ନାରଦଙ୍କ ଭକ୍ତ ଭଣେ ବଇଷ୍ଣବ ଦାସ ।

—×—

## ହରପଦେ ହରି ଶରଣାର୍ଥୀ ହେବା କାରଣ

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିଗଣ
ହରପଦେ ହରି ହୋଇବାର ଯେ ଶରଣ ।
ସୂକ୍ଷ୍ମେ ସରଳ ଭାବରେ କହୁଅଛୁ ମୁହିଁ
ଏକାମ୍ରକାନନବାସୀ ଶିବ ଯହିଁପାଇଁ ।
କାଶୀଧାମରୁ ଯେ ଶିବ ପାର୍ବତୀଙ୍କୁ ଘେନି
କୈଳାସକୁ ଚଳିଗଲେ ହରିଗୁଣ ଗୁଣି ।
ତହିଁ ନାନା ଲୀଳାକଲେ ଦେବ ମହେଶ୍ୱର
ଅର୍ଦ୍ଧାଙ୍ଗିନୀ ପାର୍ବତୀଙ୍କୁ ଘେନି ଅଙ୍କପର ।
ଏଣେ କାଶୀ ନରପତି ବାରାଣସୀ କ୍ଷେତ୍ରେ
ଶିବଲିଙ୍ଗ ଆରାଧନା କରୁଥାଇ ନିତ୍ୟେ ।
କୃଷ୍ଣଙ୍କୁ ଜିଣିବାପାଇଁ ସେ ଦାମ୍ଭିକ ନୃପ
ଶଙ୍କରଙ୍କୁ ମନାଇଲା କରି ଉଗ୍ର ତପ ।
ତାର ତପସ୍ୟାରେ ଶିବ ସନ୍ତୋଷ ହୋଇଲେ
ବାଞ୍ଛା ଅନୁସାରେ ତାକୁ ବର ଯାଚିଦେଲେ ।
ହସି ହସି ଆଜ୍ଞାକଲେ ପ୍ରଭୁ ତ୍ରିଲୋଚନ
କୃଷ୍ଣଙ୍କୁ ସଂଗ୍ରାମେ ତୁହି ଜିଣିବୁ ରାଜନ ।
ଅନ୍ୟଥା ନୋହିବ ଏହା ବୁଝିଘେନ ମନେ
ମୁହିଁ ସଂଗ୍ରାମକୁ ଯିବି ତୋହର କାରଣେ ।
ବରଦେଇ ମହାଦେବ ଅନ୍ତର୍ଦ୍ଧାନ ହେଲେ
କାଶୀରାଜା ଆନନ୍ଦରେ ନିଜପୁରେ ଚଳେ ।
ଉନ୍ମତ୍ତ ହୋଇଣ କହେ ଗର୍ବରେ ବଚନ
ମୁହିଁ ବାସୁଦେବ ନ ଜାଣେ ବା କେଉଁଜନ ।
କୃଷ୍ଣଙ୍କୁ କହନ୍ତି ବାସୁଦେବ ମୂଢ଼ଜନେ
ମୁହିଁ ବାସୁଦେବ ନ ବୁଝନ୍ତି ଯା ସେମାନେ ।
ଏତେବୋଲି ଶଙ୍ଖ ଚକ୍ର ହସ୍ତରେ ଧଇଲା
ସୁବର୍ଣ୍ଣକିରୀଟ ଶିରେ ବକ୍ଷେ ମଣିମାଳା ।
ପୀତବାସ ପିନ୍ଧି ଦୁଷ୍ଟ ବସିଲା ସଭାରେ
କୃଷ୍ଣଙ୍କ ନିକଟେ ଦୂତ ବରଗିଲା ଖରେ ।
ଦୂତକୁ ବୋଇଲା ଶୁଣ ଶୁଣ ଆରେ ଚର
ଏହିକଥା କୃଷ୍ଣଆଗେ କରିବୁ ଗୋଚର ।
ବାସୁଦେବ ଅଟନ୍ତି କାଶୀର ଅଧିକାରୀ
କ ସାହସେ ବାସୁଦେବ ବୋଲାଉଛନ୍ତି ହରି ।
ଏମନ୍ତେ କହିବୁ ସେ କୃଷ୍ଣର ସନ୍ନିଧାନେ
ମୋର ଆଜ୍ଞା ପାଳୁ ସେହୁ ଉଚିତ ବିଧାନେ ।
ଶକ୍ତିଥିଲେ ଆସି ଯୁଦ୍ଧ କରୁ ମୋର ସାଥେ
ତୀକ୍ଷ୍ଣଧାର ଚକ୍ରଧର ଅଛୁ ଏ ମୋ ହାତେ ।
ଦୂତଯାଇ କହେ କୃଷ୍ଣେ ସବୁ ସମାଚାର
ଶୁଣି ସଭାଜନେ ସର୍ବେ ହସିଲେ ସତ୍ୱର ।
ହସି ପକାଇଲେ କୃଷ୍ଣ ଦୂତର ବଚନେ
ମନ ବଳାଇଲେ କାଶୀରାଜାର ନିଧନେ ।
ଭାବି ଭାବି ମାନସରେ ଆପଣେ ଶ୍ରୀହରି
ସୁଦର୍ଶନଚକ୍ରକୁ ପେଶିଲେ ବେଗକରି ।
ଅତି ଘୋରତରେ ସେହି ଚକ୍ର ସୁଦର୍ଶନ
ସହସ୍ର ଆଦିତ୍ୟ ତେଜ ଭୀଷଣ ଗର୍ଜ୍ଜନ ।
କୃଷ୍ଣଙ୍କ ମାୟାରେ ବଳ ଭଲମତେ ଜାଣେ
କାଶୀରାଜା ଶିରକୁ ଛେଦିଲା ତତକ୍ଷଣେ ।
ସବୁ ସେନା ସହିତରେ ବାରାଣସୀ ପୁରୀ
ଦହି ପକାଇଲା ଚକ୍ର ମହାକୋପ କରି ।
ତହୁଁ ବିପରୀତ କର୍ମ ଦେଖି ପଶୁପତି
ବୃଷପୃଷ୍ଠେ ଚଢ଼ି ପ୍ରମଥଙ୍କୁ କରି ସାଥୀ ।
କାଶୀଠାରେ ଆସିଣ ହୋଇଲେ ଉପସ୍ଥିତ
ସୁଦର୍ଶନକୁ ଦେଖନ୍ତେ ହୋଇଲେ କୋପିତ ।
ପାଶୁପତ ଅସ୍ତ୍ରକୁ ଛାଡ଼ିଲେ ମହେଶ୍ୱର
ଚକ୍ରପାଶେ ଯିବାକୁ ସାହସ ନୁହେଁ ତାର ।
ପାଶୁପତ ପ୍ରମଥଗଣଙ୍କୁ ଚକ୍ର ଗ୍ରହିଁ
କୁଲାଡ଼ ଚକ୍ର ସମାନ ଚୌଦିଗେ ବୁଲଇ ।
ଶିବଙ୍କ ଭକ୍ତିରେ ବର ଦେଇଥିଲେ ହରି
ମୋତେ ହିଂସାକଲେ ଅସ୍ତ୍ର ହେବ ତେଜଧାରୀ ।
ମୋତେ ହିଂସିବାକୁ ଯଦି ପାଞ୍ଚିବ ମନରେ
ତେଜହୀନ ହେବ ଅସ୍ତ୍ର କହିଲି ଭୁମ୍ଭରେ ।
ଏକଥାକୁ ଭୋଳାନାଥ ହେଜି ନ ପାରିଲେ
କୃଷ୍ଣେ ହିଂସାକରି ସେହି ଅସ୍ତ୍ରକୁ ପେଷିଲେ ।
ପାଶୁପତ ବ୍ୟର୍ଥ ଦେଖି ଶଙ୍କର ଚାହିଁକା
ବାରାଣସୀ ଦର୍ଗ୍ଧେ ମନେ ଉପୁଜିଲା ଦୁଃଖ ।

ତହୁଁ ବେଗେ ମହାଦେବ କଲେକ ସ୍ତବନ
ଜୟ ଜୟ ଜଗନ୍ନାଥ ତ୍ରିଲୋକ ପାଳନ ।
ଜୟ ଜୟ ମହାବାହୁ ଶରଣ ରକ୍ଷଣ
ଜୟ ଜୟ ଭକତ ବତ୍ସଳ ଜନାର୍ଦ୍ଦନ ।
ଜୟ ଜୟ ଦୀନବନ୍ଧୁ ପତିତପାବନ
ଜୟ ଜୟ ଦୁଃଖହାରୀ ବିପଦ ଭଞ୍ଜନ ।
ଅହଂକାରେ ନ ଜାଣିଲି ମହିମା ତୁମ୍ଭର
ସେବକ ଜାଣି ମୋ ଦୋଷ ଏବେ କ୍ଷମାକର ।
ଆହେ ପ୍ରଭୁ ଚକ୍ରପାଣି ଦେବ ଦୟାନିଧି
ଶରଣ ପଶିଲେ ପାଦେ ରଖ ନିଜ ସିଦ୍ଧି ।
ନମୋ ନାରାୟଣ ପରମାତ୍ମା ଭଗବାନ
ସଚ୍ଚିତ ଆନନ୍ଦମୟ ଜଗତ ମୋହନ ।
ମୋତେ ତମୋଗୁଣେ ସୃଷ୍ଟି କରିଛ ଆପଣେ
ତୁମ୍ଭ ପ୍ରଭାବ ମୁଁ ଅବା ଜାଣିବି କେସନେ ।
ଏଣୁ ଅପରାଧ କ୍ଷମାକର ହେ ମୋହର
ଶରଣ ପେଲିଲି ତ୍ରାଣ କର ଏହି ଥର ।
ଏହିରୂପେ ବହୁତ ଯେ ସ୍ତବ କଲେ ଭୋଳା
ଚକ୍ରରୂପ ଗୁଞ୍ଜି ଦେଖାଦେଲେ ଚକ୍ରଡ଼ୋଳା ।
ପ୍ରସନ୍ନ ବଦନ ଚନ୍ଦ୍ର ଅତି ଅନୁପମ
ନୟନ କମଳ ଭୂରୁ କାମ-ଶରାସନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚୁରିକରେ
ଲକ୍ଷ୍ମୀ ସଙ୍ଗେ ବସିଛନ୍ତି ଗରୁଡ଼ ଉପରେ ।
ଗଳେ ଦୋଳେ ବନମାଳା ନାନା ରତ୍ନମାଳ
ମସ୍ତକେ ମୁକୁଟ ଶୋଭେ ଶ୍ରବଣେ କୁଣ୍ଡଳ ।
କେୟୂର ବଳୟ ଆଦି ନାନା ଆଭରଣ
ପ୍ରତି ଅଙ୍ଗେ ଝଲମଲ ଝଟକେ ଭୂଷଣ ।
ନବୀନ ନୀରଦଶ୍ୟାମ ରୂପ ମନୋହର
ନେତ୍ର ଆନନ୍ଦ ଦାୟକ ଭୁବନ ସୁନ୍ଦର ।
ବାମପାଶେ କମଳା ଦକ୍ଷିଣେ ସରସ୍ୱତୀ
ଗରୁଡ଼ପରେ ଅପୂର୍ବ ଶୋଭା ପାଉଛନ୍ତି ।
ଏହିରୂପେ ଆସି ହରି ଶିବଙ୍କର ପାଶେ
କ୍ରୋଧପରି ତାହାଙ୍କୁ କୁହନ୍ତି ମୃଦୁହାସେ ।
ଶ୍ରୀହରି ବୋଲନ୍ତି ଶୁଣ ଆହେ ତ୍ରିଲୋଚନ
ଏତେହିନେ ଦୁର୍ବୁଦ୍ଧି ତୁମ୍ଭର କି କାରଣ ।
ନୃପତି କାଟର ଲାଗି ଯୁଝ ମୋର ସାଥେ
ଏ କୁତ୍ସିତ କର୍ମ ନ କରିବ କଦାଚିତେ ।

ଏତେବୋଲି ସୁପ୍ରସନ୍ନ ହୋଇ ଯଦୁରାୟ
ଶୁଭଦୃଷ୍ଟିରେ ଚାହିଁକି କଲେ ପୂର୍ବପ୍ରାୟ ।
ଶିବଙ୍କୁ ବୋଇଲେ ତୁମ୍ଭେ ଆଜ୍ଞାପାଳ ମୋର
ଶ୍ରୀପୁରୁଷୋତ୍ତମକ୍ଷେତ୍ରେ ଯାଇ ବାସକର ।
ଏକାମ୍ରକାନନେ ରହ ମୋହର ବଚନେ
ଏକରୂପେ ଉମାସଙ୍ଗେ ରହ ଏହି ସ୍ଥାନେ ।
ସେଠାରେ ଭୁବନେଶ୍ୱର କୋଟି ଲିଙ୍ଗେଶ୍ୱର
ଏହିନାମେ ତୁମ୍ଭଙ୍କୁ ପୂଜିବେ ଦେବ ନର ।
ମୋହର ଆଦେଶେ ତହିଁ ଯାଇ ପ୍ରଜାପତି
ଅଭିଷେକ କରିବେ ହେ କୋଟିଲିଙ୍ଗ ପତି ।
ଲିଙ୍ଗରାଜ ନାମ ତୁମ୍ଭ ହୋଇବ ବିଖ୍ୟାତ
ବାରମାସେ ତୁମ୍ଭର ହୋଇବ ତେର ଯାତ ।
ନୀଳାଚଳେ ରହିବି ମୁଁ ଦାରୁରୂପ ଧରି
ବାଇଶ ପାବଚ୍ଛତଳେ ଆସନ ତୁମ୍ଭରି ।
ଏତେବୋଲି ଜଗତମୋହନ ଭଗବାନ
ଦେଖୁ ଦେଖୁ ସେହିକ୍ଷଣି ହେଲେ ଅନ୍ତର୍ଦ୍ଧାନ ।
ଶ୍ରୀହରିଙ୍କ ଆଜ୍ଞାପାଳି ଦେବ ପଶୁପତି
ଏହି ଏକାମ୍ରକାନନେ ବାସ କରନ୍ତି ।
ଶ୍ରୀଅନନ୍ତ ବାସୁଦେବ ନାମେ ଅଛନ୍ତି ହରି
ହରିହର ଏକ ଆତ୍ମା ଜାଣ ଦଣ୍ଡଧାରୀ ।
ଏମନ୍ତେ କହିଲି ରାଜା ପୂର୍ବର କାହାଣୀ
ଏହିହେତୁ ଏଠାରେ ଅଛନ୍ତି ଶୂଳପାଣି ।
ତହୁଁ ହରଷରେ ଇନ୍ଦ୍ରଦ୍ୟୁମ୍ନ ନରରାୟ
ହରି-ଚଉରା ଦର୍ଶନେ କଲେକ ବିଜୟ ।
ବିନ୍ଦୁହ୍ରଦେ ସ୍ନାନ ସାରି ଅତି ଆନନ୍ଦରେ
ଅନନ୍ତ ବାସୁଦେବଙ୍କୁ ଦେଖି ତାର ତୀରେ ।
ବହୁଦାନ ପୁଣ୍ୟକରି ଅବନ୍ତୀ ଈଶ୍ୱର
ଶ୍ରୀଲିଙ୍ଗରାଜ ଦର୍ଶନେ ହେଲେ ଆଗୁଁସାର ।
ହରଙ୍କୁ ଦର୍ଶନକରି ହେଲେ ବିମୋହିତ
ବୀଣାରେ ଗାଇଲେ ମୁନି ତାହାଙ୍କ ଚରିତ ।
ପ୍ରସନ୍ନ ହୋଇଣ ଶିବ ଦେଲେ ଦରଶନ
ଶିବଙ୍କୁ ସାକ୍ଷାତେ ଦେଖି ଆନନ୍ଦ ରାଜନ ।
ଭୂମିରେ ପଡ଼ି ପ୍ରଣମି ବହୁସ୍ତବ କଲେ
ଆଶ୍ୱାସ କରିଣ ଶିବ ରାଜାଙ୍କୁ କହିଲେ ।
ବାଞ୍ଛା ପୂର୍ଣ୍ଣ ହେବ ତବ ମୋହର ପ୍ରସାଦେ
ନାରଦ ସହାୟେ ସିଦ୍ଧ ହେବ ଅପ୍ରମାଦେ ।

ଏତେ କହି ଅନ୍ତର୍ଦ୍ଧାନ ହେଲେ ଉମାକାନ୍ତ
ତହୁଁ ବେଗେ ଚଳେ ରାଜା ହୋଇ ହରଷିତ
ଯହିଁ ବିନ୍ଦୁସର ତୀରେ ମୁନି ପୂଜେ ହର
ସେଠାକୁ ବିଜୟ କଲେ ପ୍ରଭୁ ମହେଶ୍ୱର ।
ସମ୍ମୁଖେ ଶିବଙ୍କୁ ଦେଖି ବ୍ରହ୍ମାଙ୍କ କୁମର
ସାଷ୍ଟାଙ୍ଗେ ନମିଲେ ତହିଁ ହୋଇ ଥର ଥର ।
ଶିବ ବୋଇଲେ ଶୁଣମି ହେ ନାରଦ ଯତି
ଯେପରି ଆଦେଶ କଲେ ଦେବ ପ୍ରଜାପତି ।
ସହସ୍ରେକ ଯଜ୍ଞ ଆଗେ କରାଇ ରାଜାରେ
ସେହିପରି କାର୍ଯ୍ୟସବୁ କରି ତାହାପରେ ।
ଏବେ ଯେ ମାଧବ ହୋଇଛନ୍ତି ଅନ୍ତର୍ଦ୍ଧାନ
ଏଣୁ ରାଜା ସହ ତୁମ୍ଭେ କରିଣ ଗମନ ।
ଶଙ୍ଖାକାର କ୍ଷେତ୍ର ଅଗ୍ରେ ନୀଳକଣ୍ଠ ନାମେ
ମୁହିଁ ଅଛି ଯଜ୍ଞସ୍ଥଳ ନିର୍ମାଣ ସେ ସ୍ଥାନେ ।
ନୃସିଂହ ସ୍ଥାପନ ଆଗେ କରି ସେହିଠାରେ
ଯଜ୍ଞ କରୁ ନରପତି ମୋ ବିଦ୍ୟମାନରେ ।
ତେବେ ସହସ୍ରେକ ଅଶ୍ୱମେଧ ଅନ୍ତେ ଆପେ
ଅଦ୍ଭୁତ ବ୍ରହ୍ମଦାରୁ ଦେଖାଇବେ ନୃପେ ।
ସବୁରି ଗୁରୁ ସେ ପ୍ରଭୁ ପୁରୁଷ ଉତ୍ତମ
ବିଶ୍ୱକର୍ମା ଶ୍ରୀମୂର୍ତ୍ତି କରିବ ନିର୍ମାଣ ।
ବୃଦ୍ଧ ବର୍ଦ୍ଧକୀ ରୂପରେ ଗଢ଼ିବ ନିରୋଳେ
କେହି ଚିହ୍ନି ନ ପାରିବେ ତାକୁ ଚର୍ମଡୋଳେ ।
ପ୍ରତିଷ୍ଠା କରିବେ ବ୍ରହ୍ମା ନିଜେ ଆସିକରି
ଏହିସବୁ କଥା କହିଲଟି ମୁଁ ବିସ୍ତରି ।
ଏହାଶୁଣି ସନ୍ତୋଷ ନାରଦ ତପୋଧନ
ପ୍ରଣାମ କରି ଶିବଙ୍କୁ କଲେ ନିବେଦନ ।
କରଯୋଡ଼ି କହିଲେ ହେ ଜଗତର ଗୁରୁ
ଆପଣେ ଜଗତନାଥ ହେବେ ବ୍ରହ୍ମତରୁ ।
ଯେପରି ଆଦେଶ କଲ ତାହାଙ୍କ ପ୍ରକାଶେ
ତେହ୍ନେ ପିତା ମୋତେ କହିଥିଲେ ଯେ ବିଶେଷେ ।
ତୁମ୍ଭେ ଆଉ ବ୍ରହ୍ମା ବିଷ୍ଣୁ ଏକଇ ସ୍ୱରୂପ
ନୃପତିର ଭାଗ୍ୟସୀମା ନୁହଇ ଅଳପ ।
ଏକାବେଳେ ହୋଇଲା ତିନିଙ୍କ ଅନୁଗ୍ରହ
ଅନ୍ୟକେ ବୁଝିବା ପାଇଁ ଏହା ଯେ ସନ୍ଦେହ ।
ଏଣୁ ବିଷ୍ଣୁଙ୍କ ମହିମା ଅଟେ ଅନ୍ତହୀନ
ତାଙ୍କ ମାୟା ବୁଝିବାକୁ କେ ହେବ ସକ୍ଷମ ।

ବେଦ ଅନୁସାରେ ଚିରକାଳ ମୁନିଗଣ
ବିଷ୍ଣୁ ପଦ ପାଇବାକୁ କରନ୍ତି ଯତନ ।
ତଥାପି ବିଷ୍ଣୁଙ୍କ ପ୍ରୀତି ଯେଉଁ ଭକ୍ତିରସେ
ତାଙ୍କ ମାୟାରୁ ସେ ଜାଣି ନ ପାରନ୍ତି ଲେଶେ ।
ଭକ୍ତିବିନେ ବେଦ ପାଠେ ନ ମିଳନ୍ତି ହରି
ଚଣ୍ଡାଳ ଅଧମ ତାଙ୍କୁ ଲଭେ ଭକ୍ତି କରି ।
ବିଷ୍ଣୁଙ୍କ ଚରଣେ ଭକ୍ତି କରେ ଯେଉଁଜନ
ଅନାୟାସେ କାଟଇ ସେ ସଂସାର-ବନ୍ଧନ ।
ବିଷ୍ଣୁଙ୍କୁ ସର୍ବସ୍ୱ ମଣେ ଯେଉଁ ଭକ୍ତମାନ
ତାର ଆବଶ୍ୟକ ନାହିଁ ବେଦର ବିଧାନ ।
ବିଷ୍ଣୁ ଆଶ୍ରିତ ପ୍ରାଣୀର ଅଙ୍ଗ ସୁପବିତ୍ର
ବେଦ ନିୟମ ତା ପକ୍ଷେ ବିଡ଼ମ୍ବନ ମାତ୍ର ।
ସବୁ ଅବସ୍ଥାରେ ଯେବା ବିଷ୍ଣୁଙ୍କୁ ସୁମରେ
ଶୁଚିମନ୍ତ ଅଟଇ ସେ ଅନ୍ତର ବାହାରେ ।
ଜାଣୁ ନ ଜାଣୁ ମହିମା ଯେହୁ ଭଜେ ହରି
ଇନ୍ଦ୍ରାଦି ଦେବେ ନୁହନ୍ତି ତାକୁ ସମସରି ।
ସର୍ବଦା ଯେହୁ କଣ୍ଠରେ ଧରେ ହରିନାମ
ଅଚିରେ ପୂର୍ଣ୍ଣ ହୁଏ ତା ସର୍ବ ମନସ୍କାମ ।
ବ୍ରଜେ ଗୋପୀଗଣ କୃଷ୍ଣ କାନ୍ତ ଭାବେ ଭଜି
ପାଇଲେ ତାହାଙ୍କୁ ବେଦ ଶାସ୍ତ୍ରକୁ ନ ବୁଝି ।
ଶିଶୁପାଳ ପାଇଲା କରିଣ ଶତ୍ରୁ ଭାବ
ବାଣ ବିନ୍ଧ ବ୍ୟାଧ ସେ ଚରଣ କଲା ଲାଭ ।
କୁବୁଜା ପାଇଲା ବସ୍ତ୍ର କରି ଆକର୍ଷଣ
ଗୋପୀଙ୍କ ସଙ୍ଗୁ ଲଭିଲେ ଦ୍ୱିଜ ପତ୍ନୀଗଣ ।
କେବଳ ଭାବ ଭକ୍ତିରେ ବଶ ଜନାର୍ଦ୍ଦନ
ଧ୍ୟାନକରି ନ ପାଇଲେ ସୁରଋଷିଗଣ ।
ଅସ୍ପୃଶ୍ୟ ଚଣ୍ଡାଳ ପାଏ ହେଲେ ଭକ୍ତମାନ
ଅଭକ୍ତ ବେଦଜ୍ଞ ନ ଜାଣଇ ସେ ସନ୍ଧାନ ।
ବିଦ୍ୟା କୁଳ ଧନମଦେ ହରି ନ ମିଳନ୍ତି
ପାଇବା ଉପାୟ ମାତ୍ର କହିଲେଟି ଭକତି ।
ସର୍ବ ଅବତାରୀ କୃଷ୍ଣ ଶ୍ରୀଗୋଲୋକପତି
ଭକତି କଲା ପ୍ରାଣୀକି ଦିଅନ୍ତି ସୁଗତି ।
ଭକ୍ତିହୀନ ଜନ କେବେ ହରିଙ୍କି ନ ପାଏ
ଧର୍ମୀ ମାନୀ ହେଲେ ପଛେ ସେହୁ ପଶୁ ପ୍ରାୟେ ।
ନାରଦ ପୁଚ୍ଛନ୍ତି ପୁଣି ହରଙ୍କ ଚରଣେ
ସର୍ବ ଅବତାର ମୂଳ ଯେହୁ ତ୍ରିଭୁବନେ ।

ସେହି ମହାନନ୍ଦ୍ୟସ୍ଥଳ ନିବାସୀ ଶ୍ରୀହରି
ଭକ୍ତ-ରକ୍ଷା ଲାଗି ଭୋଳା ଗର୍ଭ ପଦୁଙ୍କର ।
ଆପଣ ପରମଭକ୍ତ ଅଟନ୍ତି ତାଙ୍କର
ଭକ୍ତବଳେ ଏକ ଆତ୍ମା ବୋଲନ୍ତି ନିକର ।
କହିବା ହେଉ ସେ ନିଜ ଆହେ ପଶୁପତି
ନୀଳାଚଳେ ହେବେ ଆସି ଚତୁର୍ଦ୍ଧା ମୂରତି ।
ଏ ବଚନ ଶୁଣି କହନ୍ତି ସେ ଶୂଳପାଣି
ସଂଶୟ ନକର ମନେ ଏଥିକ ହେ ମୁନି ।
ନିଶ୍ଚୟ ସେହି ତୈଲୋକ୍ୟ ବୃନ୍ଦାବନ ଶଶୀ
ଉଦୟ ହୋଇବେ କ୍ଷେତ୍ର ନୀଳାଚଳେ ଆସି ।
ଭକ୍ତବିନେ ତାଙ୍କୁ ନ ପାଇବେ ପ୍ରାଣୀ ସ୍ଥିର
ଅଭକ୍ତଙ୍କୁ ତାଙ୍କ ଭାବ ନୋହିବ ଗୋଚର ।
ଦାରୁବ୍ରହ୍ମ ମୂରତି ହୋଇବେ ଭକ୍ତପାଇଁ
ଚତୁର୍ଦ୍ଧା ରୂପରେ ଦେଖା ଦେବେ ଲକ୍ଷ୍ମୀସାଇଁ ।
ନୀଳାଚଳେ ବୋଲାଇବେ ମୌନ ଅବତାର
ସବୁଙ୍କି ଉଚ୍ଛିଷ୍ଟ ଦାନେ କରିବେ ନିସ୍ତାର ।
ଏଣୁ ତୁମ୍ଭେ ରାଜାସହ କର ହେ ଗମନ
ପାଇବ ପରମାନନ୍ଦ ଜାଣ ତପୋଧନ ।
ଏହିରୂପେ ନାରଦେ କହିଲେ ଶୂଳପାଣି
ଶୁଣି ପରମ ଆନନ୍ଦେ ପ୍ରଣମିଲେ ମୁନି ।
ତହୁଁ ଅନ୍ତର୍ଦ୍ଧାନ ହେଲେ ଶମ୍ଭୁ ତ୍ରିଲୋଚନ
ଇନ୍ଦ୍ରଦ୍ୟୁମ୍ନ ନିକଟେ ଚଳିଲେ ତପୋଧନ ।
ଜୈମିନି କହନ୍ତି ଶୌନକାଦି ମୁନିପାଶେ
ସକଳେ ଶୁଣନ୍ତି ବସି ପରମ ବିଶ୍ୱାସେ ।
ଆହେ ଭକ୍ତମନ୍ତ ନରେ ମୁଁ ତୁମ୍ଭ କିଙ୍କର
ଶ୍ରୀଜଗନ୍ନାଥ ମହିମା ଶୁଣି ଭବୁଁ ତର ।
କରଯୋଡ଼ି ଜଣାଉଛି ହେ ବୈଷ୍ଣବବୃନ୍ଦେ
ମୋର ପ୍ରତି ଅନୁଗ୍ରହ ଆଉ ସଦାନନ୍ଦେ ।
ଚକାଡ଼ୋଳା ଜଗବନ୍ଧୁ ପତିତପାବନ
ବୈଷ୍ଣବ ଦାସ କରଇ ହରିତେ ଭବନ ।

—*×*—

## ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ କପୋତେଶ୍ୱରେ ବିଶ୍ରାମ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିଗଣ
ଏଥୁଅନ୍ତେ କହିବଇଁ ଅପୂର୍ବ ଘଟଣ ।
ଇନ୍ଦ୍ରଦ୍ୟୁମ୍ନ ନରପତି ନାରଦଙ୍କ ସାଥେ
ଚଳିଲେ ଦକ୍ଷିଣ ମୁଖେ ଆରୋହିଣ ରଥେ ।
ପଛେ ପଛେ ଯାନ୍ତି ଅନ୍ୟ ରାଜାମାନେ ସର୍ବେ
ହରିବୋଲ ହୁଳହୁଳି ଧ୍ୱନି ଠାବେ ଠାବେ ।
ହାନ୍ଦୋଳାମାନଙ୍କେ ଅନ୍ତଃପୁର ନାରୀମାନେ
ଆନନ୍ଦମନେ ଚଳନ୍ତି ନୃପତି ଗହଣେ ।
ଏକାମ୍ର କାନନ ଠାରୁ ଦୁଇଦିନ ପରେ
ପ୍ରବେଶ ହୋଇଲେ ରାଜା ସେ କପୋତେଶ୍ୱରେ ।
ଦୀର୍ଘ ପ୍ରସ୍ଥେ ପରସର ଅଟେ ସେହିସ୍ଥାନ
କେତେ ବୃକ୍ଷ ସରୋବର ବିଚିତ୍ର ଉଦ୍ୟାନ ।
ତାଳ ନାରିକେଳ ଗୁଆ ଖର୍ଜୁର ପନସ
ଧାଡ଼ି ଧାଡ଼ି ଆମ୍ବତୋଟା ରହିଛି ବିଶେଷ ।
ସମୁଦ୍ର କିନାରେ ପୂର୍ବ ଦିଗରେ ତାହାର
ବିଲ୍ୱେଶ୍ୱର ନାମେ ବିରାଜନ୍ତି ଦେବହର ।
ସେ କପୋତେଶ୍ୱର ସ୍ଥାନ ଦେଖି ନୃପବର
ମହାଆନନ୍ଦ ହୋଇଲେ ମାନସେ ତାଙ୍କର ।
କେତେକଥା ହୋନ୍ତି ସୁଖେ ନାରଦଙ୍କ ସାଥେ
ହରିନାମେ ଉଚ୍ଛୁଳଇ ସେ ସ୍ଥାନ ଯୁକତେ ।
ମନ୍ତ୍ରୀ ଆସି ଜଣାଇଲା ଉତ୍କଳ ରାଜାର
ଏହିସ୍ଥାନେ ସେନାଙ୍କୁ ରଖାନ୍ତୁ ନୃପବର ।
ଶୁଣି ତାହାଙ୍କୁ ପ୍ରଶଂସା କରିଣ ରାଜନ
ଯଥାଯୋଗ୍ୟ ସ୍ଥାନେ ରଖାଇଲେ ସେନାଗଣ ।
କପୋତେଶ୍ୱର ଶିବଙ୍କୁ ପୂଜ ନରସାଇଁ
ବହୁଧନ ବିପ୍ରଙ୍କୁ ସେଠାରେ ଦାନ ଦେଇ ।
ତହୁଁ ବିଲ୍ୱେଶ୍ୱର ସ୍ଥାନେ ଚଳିଲେ ବହନ
ଭକ୍ତିଭରେ ଶିବଲିଙ୍ଗ କଲେ ଦରଶନ ।
କରଯୋଡ଼ି ସ୍ତୁତି କଲେ ବିବିଧ ବିଧାନେ
ତାହାଙ୍କୁ ପୂଜା କରିଣ ଆନନ୍ଦିତ ମନେ ।
ରଥେ ବସି ସେଠାରୁ ଚଳିଲେ ବେଗ ହୋଇ
ମୁଖେ ଶ୍ରୀହରିଙ୍କ ଲୀଳାଗୁଣ ଗାଇ ଗାଇ ।
ହରି ପ୍ରେମାନନ୍ଦେ ରାଜା କରନ୍ତି ଗମନ
ନୀଳଗିରି ନିକଟରେ ମିଳିଲେ ବହନ ।

### ଋଷିରୁବାଚ

ଜୈମିନିଙ୍କି ପୃଚ୍ଛା କଲେ ସର୍ବ ମୁନିଗଣ
ସଂଶୟ ଫେଡ଼ି କହିବା ହେଉ ତପୋଧନ ।

ଶୁଣିବାକୁ ସମସ୍ତଙ୍କ ମନ ଅଛି ବଳି
କିରୂପେ ହୋଇଲା ସେ କପୋତେଶ୍ୱର ସ୍ଥଳୀ ।
କେବଣ ବାବା କପୋତ କେ ବାବା ଈଶ୍ୱର
ଏକଥା ବିସ୍ତାରି କହ ଆହେ ଋଷିବର ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଅପୂର୍ବ କଥନ
ପୂର୍ବେ ସେହି ସ୍ଥାନ ଥିଲା ଅତିହିଁ ଦୁର୍ଗମ ।
କୁଶ କଣ୍ଟକ ବଣରେ କେ ଯାଇ ନ ପାରେ
ପିଶାଚ ନିବାସ ଭୂମି ଅତି ଭୟଙ୍କରେ ।
ଏକଦିନ ମହାଦେବ ଚିନ୍ତିଲେ ମନରେ
ବିଷ୍ଣୁ ସମ ପୂଜ୍ୟ ହେବି ଭୁବନ ମଧ୍ୟରେ ।
ଏଥିକି ଉପାୟ ମାନି ଶ୍ରୀବିଷ୍ଣୁ ଭକତି
ଏତେ ଭାବି ତପ ଆରମ୍ଭିଲେ ଉମାପତି ।
ସେହି କୁଶସ୍ଥଳୀ ନୀଳଗିରି ସନ୍ନିଧାନେ
ମହାତପ କଲେ ସଦାଶିବ ବିଷ୍ଣୁ ଧ୍ୟାନେ ।
ପବନ ଆହାର କରି ତପେ ମହେଶ୍ୱର
ହୋଇଗଲେ କ୍ଷୀଣ ତନୁ କପୋତ ଆକାର ।
ତାଙ୍କ ତପସ୍ୟାରେ ତୋଷ ହେଲେ ରମାକାନ୍ତ ।
ଆପଣେ ବିଜୟ କଲେ ପ୍ରଭୁ ଜଗନ୍ନାଥ ।
ଶିବଙ୍କୁ ବୋଇଲେ ତପ ମୁଞ୍ଚ ତ୍ରିଲୋଚନ
ତୁମ୍ଭ କଠୋର ତପେ ମୁଁ ହୋଇଲି ପ୍ରସନ୍ନ ।
ଏମନ୍ତ ବୋଲି ଐଶ୍ୱର୍ଯ୍ୟ ଦେଲେ ମହେଶ୍ୱରେ
ମାନ୍ୟ ପୂଜାଦରେ ହେଲେ ବିଷ୍ଣୁ ସମାନରେ ।
ସେହି କୁଶ ସ୍ଥଳୀ ତାଙ୍କ ତପର ପ୍ରଭାବେ
ବୃନ୍ଦାବନ ସମ ହେଲା ଦେଖୁ ଦେଖୁ ଭବେ ।
ସ୍ଥାନେ ସ୍ଥାନେ ଶୋଭା ପାଏ ଦିବ୍ୟ ସରୋବର
ନଦ ନଦୀ ଉପବନ ହୋଇଲା ବିସ୍ତାର ।
ଅମୃତ ସମାନ ସ୍ୱାଦୁ ସୁ-ନିର୍ମ୍ମଳ ଜଳ
ସରୋବର ତୀରେ ନାନା ପକ୍ଷୀ କୋଳାହଳ ।
ନାନାଜାତି ବୃକ୍ଷଲତା ପରମ ଶୋଭିତ
ସର୍ବ ଋତୁ କୁସୁମ ତହିଁରେ ଫୁଟେ ନିତ୍ୟ ।
ଅଶୋକ ବକୁଳ ଜାଈ ଯୁଈ ନାଗେଶ୍ୱର
ପୁନ୍ନାଗ ଚମ୍ପକ ଜବା ମଲ୍ଲିକା ଟଗର ।
ପାରିଜାତ ଦ୍ରୁସିଅନା ପଳାଶ କାଞ୍ଚନ
ପାଟଳ ଗଙ୍ଗଶିଉଳୀ ଯେ ସ୍ଥଳ ନଳିନ ।
କୁନ୍ଦ କରବୀର ଶ୍ୱେତମନ୍ଦାର ମାଳତୀ
ମାଧବୀ ନଆଳୀ ଆଦି ବୃକ୍ଷ ଲତା ପନ୍ତି ।
ମଧୁପାନ ମଦେ ମତ୍ତ ଝଙ୍କାରନ୍ତି ଅଳି
ଶୁକ ସାରୀ ମୟୂର ମୟୂରୀଙ୍କର କେଳି ।
କୁହୁ କୁହୁ ସ୍ୱନରେ ରାବନ୍ତି ପିକଗଣ
ସକଳ ସୁଖ ଦାୟକ ଅଟଇ ସେ ସ୍ଥାନ ।
ପାଞ୍ଚ ବାଣ ସାଙ୍କରି ମଦନ ବସନ୍ତ ବନେ
ନିରନ୍ତର ବିହରଇ ହରଷିତ ମନେ ।
ଏହିରୂପେ ସେହି ସ୍ଥାନ ଦିଶଇ ଶୋଭନ
ଦେଖି ପରମ ଆନନ୍ଦ ହେଲେ ତ୍ରିଲୋଚନ ।
ତହିଁ କୃଷ୍ଣ ହସି ହସି କହିଲେ ଏସନେ
ତପେ କପୋତର ସମ ହୋଇଲ ଆପଣେ ।
ଏଠାରେ ହୋଇବ ନାମ ଶ୍ରୀକପୋତେଶ୍ୱର
ପାର୍ବତୀଙ୍କ ସଙ୍ଗେ ସୁଖେ କର ହେ ବିହାର ।
ଏମନ୍ତ କହି ଶ୍ରୀହରି ହେଲେ ଅନ୍ତର୍ଦ୍ଧାନ
ଏଣୁ ତହିଁ ଶିବଙ୍କ କପୋତେଶ୍ୱର ନାମ ।
କପୋତେଶ୍ୱରଙ୍କୁ ପୂଜା କରେ ଯେଉଁ ଜନ
ପାପରୁ ମୁକୁଳି ପାଏ ଶ୍ରୀପୁରୁଷୋତ୍ତମ ।
କପୋତେଶ୍ୱର ଶିବଙ୍କ ମହିମା ଅପାର
କାମନା କରନ୍ତି ପୂର୍ଣ୍ଣ ଭକ୍ତମାନଙ୍କର ।
ଏମନ୍ତେ ଜୈମିନି ଋଷି ଅତି ଅନୁରାଗେ
ବଖାଣି ବସିଲେ ମୁନିମାନଙ୍କର ଆଗେ ।
ଶୁଣି ଶୌନକ ସହିତେ ସର୍ବ ମୁନିବୃନ୍ଦ
ଅନୁଭବ କଲେ ମନେ ଅପୂର୍ବ ଆନନ୍ଦ ।
ଶ୍ରୀନୀଳାଦ୍ରିନାଥ ଜଗନ୍ନାଥଙ୍କ ଚରଣ
ସ୍ମରଣ କରି ଲେଖଇ ମାନି ଏ ପୁରାଣ ।
ଆହେ ବିଷ୍ଣୁଭକ୍ତମାନେ ଉତ୍କଳ ନିବାସୀ
ଏ ପୁରାଣ-ସୁଧା-ସିନ୍ଧୁ-ନୀରେ ଯାଅ ଭାସି ।
ଲୀଳାଖଣ୍ଡ ବିବରଣ ଅପୂର୍ବ ମାଧୁରୀ
ଆଜନ୍ମର ପାପ ତାପ ଦିଏ ଚୂନା କରି ।
ନୀଳାଚଳଚନ୍ଦ୍ର ଏକା ମୋହର ଭରସା
ତାଙ୍କର କୃପାରୁ ଲେଖେ ଏ ପୁରାଣ ଭାଷା ।
ବ୍ୟାସଙ୍କ ରଚିତ ମୂଳ ଗ୍ରନ୍ଥରୁ ପ୍ରକାଶ
ଭଣଇ ହରିବୋଲଆ ବଇଷ୍ଣବ ଦାସ ।

—X—

## ବଲ୍ଲେଶ୍ୱର ମାହାତ୍ମ୍ୟ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ହୋଇ ଆନନ୍ଦିତ ମନ
ଏଥିଅନ୍ତେ ସାବଧାନେ ଶୁଣ ମୁନିଗଣ ।
କହିବଇଁ ବଲ୍ଲେଶ୍ୱର ଶିବଙ୍କ ମହିମା
ଅତି ଅକଥନ ଯାହା ଅଛି ମହାତ୍ମା ।
ପୂର୍ବେ ଯେ ପାତାଳବାସୀ ଦୁଷ୍ଟ ଦୈତ୍ୟଗଣେ
ମହୀଭେଦ କରି ପୀଡ଼ନ୍ତି ସେ ସର୍ବଜନେ ।
ନାନା ଉପଦ୍ରବ କରନ୍ତି ଯେ ପୃଥିବୀରେ
ମନୁଷ୍ୟମାନଙ୍କୁ ଧରି ଖାଆନ୍ତି ପାମରେ ।
ଧରା ଭାର ହରିବାକୁ ଶ୍ରୀପୁରୁଷୋତ୍ତମ
ଦେବକୀ ଉଦରରେ ପ୍ରଭୁ ଲଭିଲେ ଜନମ ।
ଅବନୀରୁ ଦୁଷ୍ଟଗଣେ କରିଣ ନିପାତ
ତହୁଁ ପ୍ରଭୁ ଯାଦବ ପାଣ୍ଡବଙ୍କର ସାଥ ।
ନୀଳାଚଳେ ଆସି ସବୁ ସେନାଙ୍କ ସହିତ
ତୀର୍ଥରାଜ ଜଳେ ସ୍ନାନ କଲେ ଲକ୍ଷ୍ମୀକାନ୍ତ ।
ଦୂରରୁ ପ୍ରଣାମ କରି ଶ୍ରୀନୀଳମାଧବେ
ଦୈତ୍ୟେଶ୍ୱରେ ଆସି ଉପସ୍ଥିତ ହେଲେ ସର୍ବେ ।
ସଙ୍କୀର୍ଣ୍ଣ ସେ ଗର୍ତ୍ତ ତହିଁ ପ୍ରବେଶି ନୁହଇ
ଦେଖି ସର୍ବ ସେନା ଭୟ କଲେ ଯିବାପାଇଁ ।
ସ୍ୱୟଂ ନରଲୀଳା କରନ୍ତି ଯେ ଭଗବାନ
ଏଣୁ ସେହି ଗର୍ତ୍ତେ ନ ପଶିବେ ଜନାର୍ଦ୍ଦନ ।
ମାୟାରେ ମୋହନ୍ତି ପ୍ରଭୁ ସମସ୍ତଙ୍କ ମନ
ଶିବପୂଜା ସର୍ବେ କରିବାକୁ ପ୍ରକାଶନ ।
ବିଲ୍ୱଫଳ ଦେଇ ଶିବେ କରି ଆବାହନ
ପୂଜାକରି ସ୍ତବ କଲେ କମଳଲୋଚନ ।
ନମୋ ନମଃ ତ୍ରିଗୁଣ ଅତୀତ ମହେଶ୍ୱର
ନମୋ ନମଃ ତ୍ରିଲୋଚନ ଦେବ ଦିଗମ୍ବର ।
ନମୋ ନମଃ ଶୂଳପାଣି ଶ୍ମଶାନ ବିହାରୀ
ନମୋ ନମଃ ଉମାପତି ପ୍ରଭୁ ତ୍ରିପୁରାରି ।
ନମୋ ନମଃ ସଦାଶିବ ବ୍ୟାଘ୍ରାମ୍ବରଧାରୀ
ନମୋ ନମଃ ଗଙ୍ଗାଧର ସଂହାରଣକାରୀ ।
ନମୋ ନମଃ ଧବଳାଙ୍ଗ ଅପୂର୍ବ ମୂରତି
ନମୋ ନମଃ ଯୋଗାରୂଢ଼ ଦେବ ପଶୁ ପତି ।
ନମୋ ନମଃ ବିରୂପାକ୍ଷ କୈଳାସ ନିବାସୀ
ନମୋ ନମଃ ଚନ୍ଦ୍ରଚୂଡ଼ ହେ କରୁଣାରାଶି ।
ନମୋ ନମଃ ଲିଙ୍ଗରୂପୀ ପନ୍ନଗ ଭୂଷଣ
ନମୋ ନମଃ ମହାତପୀ ପାର୍ବତୀରମଣ ।
ନମୋ ନମଃ ନୀଳକଣ୍ଠ ଜଗତର ଗୁରୁ
ନମୋ ନମଃ ବୃଷଧ୍ୱଜ ବାଞ୍ଛା କଳ୍ପତରୁ ।
ନମୋ ନମଃ କୃତ୍ତିବାସ ପିନାକ ଧାରଣ
ନମୋ ନମଃ ମହାରୁଦ୍ର ପ୍ରଳୟ କାରଣ ।
ନମୋ ନମଃ ପ୍ରଭୁ ଜଟାମୁକୁଟ ମଣ୍ଡନ
ନମୋ ନମଃ ଦୁଃଖୀ ଦୁଃଖ ସନ୍ତାପ ଖଣ୍ଡନ ।
ନମୋ ନମଃ ବ୍ୟୋମକେଶ ଅଭୟ ବରଦ
ନମୋ ନମଃ ଭୋଳାନାଥ ପ୍ରଭୁ ସଦାନନ୍ଦ ।
ଚାରି ବେଦମୟ ତୁମ୍ଭେ ତ୍ରିକାଳର ପାର
ତିନିକାଳ ତତ୍ତ୍ୱଜ୍ଞ ହେ ଘେନ ନମସ୍କାର ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଯେ ତୁମ୍ଭର ତିନି ନେତ୍ର ।
ବିପ୍ରଙ୍କର ହିତକାରୀ ଭସ୍ମବୋଳା ଗାତ୍ର ।
ତୁମ୍ଭେ ଶ୍ରେଷ୍ଠ ଆତ୍ମା ଅଷ୍ଟ ଐଶ୍ୱର୍ଯ୍ୟ ନିଧାନ
ତୁମ୍ଭେ ଅଷ୍ଟ ମୂର୍ତ୍ତିଧାରୀ ତୁମ୍ଭଙ୍କୁ ପ୍ରଣାମ ।
ତୁମ୍ଭର ଯେ ରୂପ ଦେବ ଅଟେ ମାୟା ପାର
ଅବ୍ୟୟ ସେ ରୂପ ନାଶ କରେ ଅନ୍ଧକାର ।
ଅଜ୍ଞାନମାନେ ତୁମ୍ଭଙ୍କୁ ଜାଣି ନ ପାରନ୍ତି
ଭୂତପତି ବୋଲି ମୂଢ଼େ ଭଙ୍ଗୀ କରୁଥାନ୍ତି ।
ମାୟାର ଯେ ବଶୀଭୂତ ହୋଇ ଖଳ ଜନେ
ତୁମ୍ଭର ମହିମା ବୁଝି ନ ପାରନ୍ତି ଧ୍ୟାନେ ।
ନିର୍ମାୟା ପୁରୁଷ ତୁମ୍ଭେ ବୈଷ୍ଣବ ଅଗ୍ରଣୀ
ନମସ୍କାର ଘେନ ପ୍ରଭୁ ହେ ଖଟ୍ୱାଙ୍ଗପାଣି ।
ଆପଣା ସ୍ୱରୂପ ମହେଶ୍ୱରେ ଏ ପ୍ରକାର
ଆପେ ସ୍ତବ କଲେ କୃଷ୍ଣ ଜଗତଠାକୁର ।
ତାହାଙ୍କ ପ୍ରସାଦେ ତହୁଁ ଦେଖି ଦୈତ୍ୟଦ୍ୱାର
ଅନାୟାସେ ସେହି ଦ୍ୱାରେ ପାତାଳେ ଯିବାର ।
ବୁଝିପାରି ଅନ୍ତର୍ଯ୍ୟାମୀ ଆପଣା ଅନ୍ତରେ
ଆପଣା ସୈନ୍ୟମାନଙ୍କୁ ଘେନି ସଙ୍ଗତରେ ।
ସେହି ପଥେ ପଶିଗଲେ ପାତାଳ ନଗର
ସକଳ ଦୁଷ୍ଟ ଦୈତ୍ୟଙ୍କୁ କରିଣ ସଂହାର ।
ଶିବଙ୍କ ପାଶେ ବାହୁଡ଼ି ଆଇଲେ ଶ୍ରୀଧର
ଜୟ ସଦାଶିବ ବୋଲି କଲେ ନମସ୍କାର ।

ପୁନରପି କଲେ ବଲ୍ଲେଶ୍ୱରଙ୍କୁ ଅର୍ଚ୍ଚନ
ସେହି ଦୈତ୍ୟଦ୍ୱାରରେ କଲେ ସେ ଲିଙ୍ଗ ସ୍ଥାପନ ।
ବୋଇଲେ ବଲ୍ଲେଶ୍ୱରଙ୍କୁ ଦୈତ୍ୟ ନିସୂଦନ
ଦ୍ୱାରରୋଧି ଏ ମନ୍ଦିରେ ରହି ତ୍ରିଲୋଚନ ।
ତୁମ୍ଭ ବିନା ବଳିଷ୍ଠ କେ ଦୈତ୍ୟ ବିନାଶନେ
ଭୟେ ଆଉ ଆସି ନ ପାରିବେ ଦୁଷ୍ଟଗଣେ ।
ପାତାଳେ ସବୁ ଦୈତ୍ୟଙ୍କୁ କରିଛି ମୁଁ ନାଶ
ଏବେ ମେଲାଣି ଯେମନ୍ତ ଆହେ ବଗବାସ ।
ଏମନ୍ତେ ବଲ୍ଲେଶ୍ୱରଙ୍କୁ କରିଣ ସ୍ଥାପନ
ଦ୍ୱାରକାକୁ ଚଳିଗଲେ ଦେବକୀ ନନ୍ଦନ ।
ବଳିପଣେ କୃଷ୍ଣ କରିବାରୁ ଆରାଧନ
ବଲ୍ଲେଶ୍ୱର ନାମେ ଖ୍ୟାତ ପ୍ରଭୁ ତ୍ରିଲୋଚନ ।
ବଲ୍ଲେଶ୍ୱର ଜାଣ ହେ ଶ୍ରୀକ୍ଷେତ୍ର ପୂର୍ବ ସୀମା
ଅପାର ଅନନ୍ତ ସେହି ଶିବଙ୍କ ମହିମା ।
ବଲ୍ଲେଶ୍ୱର ଲିଙ୍ଗ ସେହୁ ଦରଶନ କରେ
ସର୍ବ କାମନା ତା ପୂର୍ଣ୍ଣ ବିପଦୁ ସେ ତରେ ।
କପ୍ଟେଶ୍ୱର ବଲ୍ଲେଶ୍ୱର ମହିମା କଥନ
ସଂକ୍ଷେପେ କହିଲି ସର୍ବେ କଲଟି ଶ୍ରବଣ ।
ଏମନ୍ତେ କହନ୍ତେ ବ୍ୟାସ ଶିଷ୍ୟ ସେ ଜୈମିନି
ପୁଣି ପଚାରିଲେ ଶ୍ରଦ୍ଧା ବହି ସର୍ବମୁନି ।

ମୁନ୍ୟୁବାଚ

ଶୌନକ ମୁନି ପୁଛନ୍ତି ହୋଇ ହସ ହସ
ହେ ସର୍ବଜ୍ଞ ଶାସ୍ତ୍ରବେତ୍ତା ବ୍ୟାସଙ୍କର ଶିଷ୍ୟ ।
ସୃଷ୍ଟିଖଣ୍ଡ ଲୀଳାଖଣ୍ଡ କଥା ସୁଧା ଧାର
ଯାହା ଯାହା ବଖାଣିଲ କରି ସାରୋଦ୍ଧାର ।
ଶ୍ରବଣ କରି ସକଳ ନୈମିଷ ବାସୀ
ଧନ୍ୟ ଧନ୍ୟ ବୋଲି ହେଉଅଛୁଁ ପରଶଂସି ।
ଯାହାକି ଉତ୍କଳଖଣ୍ଡ କଥା ପ୍ରକାଶିଲ
ହୃଦୟ ମାନସ ତାପ ସକଳ ନାଶିଲ ।
ଏକମାତ୍ର ବାସନା ଯେ ରହିଲା ମନରେ
ସଭିଁଙ୍କ ଯେ ଅନୁରାଗ ବଢ଼େ ଶୁଣିବାରେ ।
କି ରୂପେ ଗୋଲକପତି ଶ୍ରୀରାଧାରମଣ
ଅବତରି କଲେ ଧରା ଭାରକୁ ହରଣ ।
କିରୂପେ ଦୁଷ୍ଟ ଅସୁରମାନଙ୍କୁ ନାଶିଲେ
ଅବନୀ ମଣ୍ଡଳେ କେଉଁ କେଉଁ କୀର୍ତ୍ତି କଲେ ।

ଜନ୍ମଠାରୁ ଅନ୍ତର୍ଦ୍ଧାନ ହେବା ଯାଏଁ ହରି
ଯେତେ ଯାହା କଲେ କହ ତା ସଂକ୍ଷେପି କରି ।
ମୁନିମାନଙ୍କର ସମାଜର ଭାବ ଦେଖି
ଆପଣେ ଜୈମିନି ଋଷି ହୋଇ ମନେ ସୁଖୀ
କହି ଆରମ୍ଭିଲେ କୃଷ୍ଣଲୀଳା କଥାମୃତ
ଶୁକ ପରୀକ୍ଷିତେ ଯାହା କହିଥିଲେ ବ୍ୟକ୍ତ ।
ସୂକ୍ଷ୍ମ ସରଳ ଭାବରେ ସେହି ଲୀଳା କଥା
ବଖାଣନ୍ତି ସେ ଜୈମିନି ନୂଆଇଁଣ ମଥା ।
ସେହି ଶ୍ରୀଜୈମିନି ମହାଋଷିଙ୍କ ସହିତେ
ନୈମିଷ କାନନବାସୀ ମୁନିମାନେ ଯେତେ ।
ସମସ୍ତଙ୍କ ପାଦଧୂଳି ମାଗୁଁଛିଁ ତୋଳି
ମୁଁ ଅଧମ ଅନୁକ୍ଷଣ ଶିରେ ଥୁଏ ବୋଳି ।
ଆହେ ସୁଧୀର ସୁଶାନ୍ତ ଉଦାର ସୁମତି
ଚତୁର ସମ୍ପ୍ରଦାୟର ବିଷ୍ଣୁ ଭକ୍ତ ତତି ।
ହେ ଭାବୁକ ସୁରସିକ ଶ୍ରୋତା ବକ୍ତାଗଣ
ଆନନ୍ଦ ସାଗରେ ମଜ୍ଜ ଶୁଣି ଏ ପୁରାଣ ।
ଏତିକି ମାତ୍ର ମୋହର ଅନୁରୋଧ ଅଳି
କଣ୍ଠହାର କର କୃଷ୍ଣ ନାମ ରତ୍ନାବଳୀ ।
ପିତା ମାତା ଭାଇ ବନ୍ଧୁ କେ ନୋହେ କାହାର
ଜୀବନର ସଖା ଏକା ନୀଳାଦ୍ରି ବିହାରୀ ।
ଏ ସଂସାରେ ସର୍ବେ ଯିନା ସମ୍ପଦର ସାଥି
ଜୀବଗଲା ବେଳେ ଏକା ଗୋବିନ୍ଦ ସାରଥି ।
ଏଣୁ ମନେ ଚେତି ଭଜ ଶ୍ରୀଚରଣଦ୍ୱନ୍ଦ୍ୱ ଭୋଳା
ଭକତ ଭାବରେ ଯେଉଁ ପ୍ରଭୁ ସଦା ଭୋଳା ।
ସେହି ଶ୍ରୀହରିଙ୍କ ବିନେ ଗତି ନାହିଁ ଆଉ
ଭବୁଁ ନିସ୍ତରିବା ପାଇଁ ଶରଣ ମହାବାହୁ ।
ସଦଗୁରୁ ରୂପେ ଯେ ଦଅନ୍ତି ଦିବ୍ୟଜ୍ଞାନ
ତାଙ୍କ ବିନା ରକ୍ଷାକର୍ତ୍ତା ନାହିଁ କେହି ଆନ ।
ଜଗତବନ୍ଧୁ ସେ ହରି ନାମେ ରଖ ଆଶ
ଦନ୍ତେ ତୃଣଧରି କହେ ବଇଷ୍ଣବ ଦାସ ।

—X—

## ସଂକ୍ଷେପେ କୃଷ୍ଣଲୀଳା ବର୍ଣ୍ଣନ

ଜୈମିନି ଉବାଚ

ଏଥୁ ଅନନ୍ତରେ ଯେ ଜୈମିନି ଋଷିବର
କହନ୍ତି ସଂକ୍ଷେପେ କୃଷ୍ଣଲୀଳା କଥାସାର ।

ଶୁଣ ମୁନିବୃନ୍ଦ ଏବେ ମନ କର୍ଣ୍ଣ ଦେଇ
ଧରା ଭାର ଉଶ୍ୱାସିବା ଅର୍ଥେ ଭାବଗ୍ରାହୀ ।
ମଥୁରାପୁରରେ କଂସ ବନ୍ଦିଶାଳେ ସ୍ୱଇଚ୍ଛାରେ
ଜନମିଲେ ଭାଗ୍ୟବତୀ ଦେବକୀ ଉଦରେ ।
ଗୋପେ ନନ୍ଦଘରେ ବଢ଼ି ଜଗତ ମୋହନ
ଲୀଳାଛଳେ କଲେ ଦୁଷ୍ଟ ଅସୁର ନିଧନ ।
ବାଲ୍ୟଲୀଳା ଖେଳାମାନ କଲେ ଚମତ୍କାର
ଗୋପୀଙ୍କ ମନେ ଜନ୍ମାଇ ସାତ୍ତ୍ୱିକ ବିକାର ।
ପୁତନା ସହିତେ ବତ୍ସା ବକା ଅଘା ମାରି
ଗୋଚାରଣେ ଗୋପ ଶିଶୁ ସଙ୍ଗରେ ବିହରି ।
ଯମଳାର୍ଜ୍ଜୁନ ଭଞ୍ଜନ କାଳୀୟ ଦମନ
ବ୍ରହ୍ମାଗର୍ବ ଗଞ୍ଜି କଲେ ଅନଳ ଭକ୍ଷଣ ।
ଗୋପୀଙ୍କ ବସ୍ତ୍ର ହରଣ ଯଜ୍ଞାନ୍ନ ଭୋଜନ
ଗୋବର୍ଦ୍ଧନ ଗିରି ଟେକି ଗୋକୁଳ ରକ୍ଷଣ ।
ବରୁଣପୁରୁ ନନ୍ଦଙ୍କୁ ଆଣିଲେ ଉଦ୍ଧରି
ବୃନ୍ଦାବନେ ଭିଆଇଲେ ମହା ରାସକେଳି ।
କେଶି ଦୈତ୍ୟକୁ ନାଶିଲେ ଚିହେଲେ ନନ୍ଦକାହ୍ନ
ଅକ୍ରୂରଙ୍କ ରଥେ କଲେ ମଥୁରା ଗମନ ।
ଅଷ୍ଟମଲ୍ଲ ସହିତରେ କଂସକୁ ବଧିଲେ
ଜରାସନ୍ଧ ଦର୍ପ ଦଳି ମହୀ ଉଶ୍ୱାସିଲେ ।
ଦ୍ୱାରକା ଗମନେ ତହିଁ କଲେ ନାନା ଲୀଳା
ରୁକ୍ମିଣୀ ବିବାହ ଆଦି ସେ ବିଚିତ୍ର ଖେଳା ।
ବ୍ରଜେ ବଂଶୀଧାରୀ ଦ୍ୱାରିକାରେ ଚକ୍ରପାଣି
ବିହରିଲେ ସଙ୍ଗେ ଘେନି ଅଷ୍ଟ ପାଟରାଣୀ ।
ଏମନ୍ତେ ବିହରି ଦ୍ୱାରକାରେ ଭଗବାନ
ନିତି ନବ ନବ ଲୀଳା କରନ୍ତି ଭିଆଣ ।
ଅବଶେଷେ ଯଦୁ ବଂଶ ସମୂଳରେ ଧ୍ୱଂସି
ବୈକୁଣ୍ଠପୁରକୁ ବିଜେ କଲେ ବ୍ରହ୍ମରାଶି ।
ଜୈମିନି ଋଷି ଏମନ୍ତେ କୃଷ୍ଣଲୀଳା ଗୁଣ
ମୁନି ମଣ୍ଡଳୀ ମଧ୍ୟରେ କଲେକ ବଖାଣ ।
ସେହି ମହାତ୍ମାଙ୍କର ଦାସ ଅନୁଦାସ
ଭଣଇ ହରିବୋଲିଆ ବଇଷ୍ଣବ ଦାସ ।



## ଲୀଳାଖଣ୍ଡର ଉପସଂହାର

### ଜୈମିନି ଉବାଚ

ଜୈମିନି ଋଷି କହନ୍ତି ପରମ ହରଷେ
ସଂକ୍ଷେପେ କହିଲି କୃଷ୍ଣଲୀଳା ତବ ପାଶେ ।
ଅଗାଧ ଅପାର ସିନ୍ଧୁ ଯେଉଁ ଲୀଳା କଥା
ସୂଚି ପାଇ କଣା ମାତ୍ର କହିଲଇଁ ଯଥା ।
ଏହି ଲୀଳା କଥା ଜାଗେ ଯାହାର ଅନ୍ତରେ
ଆନନ୍ଦ ଜଳଧି ମଧ୍ୟେ ସେ ସଦା ସନ୍ତରେ ।
ଧର୍ମ୍ମ ଅର୍ଥ କାମ ମୋକ୍ଷ ବାଞ୍ଛା ସେ ନ କରେ
ନିରବଧି ଭାସେ ଲୀଳା ରସ-ତରଙ୍ଗରେ ।
କୃଷ୍ଣଲୀଳା ଚରିତ ଶୁଣଇ ଯେଉଁ ଜନ
ପ୍ରେମମୟ ହୋଇ ପାଏ ସେ କୃଷ୍ଣ ଚରଣ ।
ଏମନ୍ତେ ଜୈମିନି ମୁନି ମଣ୍ଡଳୀରେ ଭଣି
ଆନନ୍ଦ ହୋଇଲେ ଶୁଣି ଶୌନକାଦି ମୁନି ।
ମୋର ନିବେଦନ ଶୁଣ ସର୍ବ ଭକ୍ତଜନେ
ଦମ୍ଭ ଅଭିମାନ ଛାଡ଼ି ନ ରଖି କେ ମନେ ।
ସଂସାର ସିନ୍ଧୁ ତରିବା ପାଇଁ ଯେବେ ମନ
ନୀଳାଚଳେ ବାସ କରି ଭଜ ନାରାୟଣ ।
କ୍ଷଣ ଭଙ୍ଗୁର ଏ ଦେହ ମାଟିଘଟ ପରି
ଅକସ୍ମାତେ ଜୀବ ଛାଡ଼ି ଯିବଟି ବାହାରି ।
ଏଣୁ ନିବେଦନ କରୁଅଛି ମୁଁ ପାଗଳା
ଶ୍ରୀପୁରୁଷୋତ୍ତମେ ରହି ଶନ୍ତ ଚକାଡ଼ୋଳା
ସେହି ଦ୍ୱାରକାରନାଥ ଦାରୁ ଦେହ ଧରି
ପ୍ରକାଶ କରନ୍ତି ଲୀଳା ମଣ୍ଡନ ଆଚରି ।
ଯାହାଙ୍କ ମହିମା ସୁରାସୁରେ ଆଗୋଚର
ଭକ୍ତ ଭାବନାକୁ ସେତ ନୁହନ୍ତି ଦୂର ।
ଶୁଦ୍ଧ ଭକ୍ତିଭାବେ ତାଙ୍କୁ ବିକଲେ ମସ୍ତକ
ଚତୁର୍ବର୍ଗ ଦାସୀ ହୋନ୍ତି ସେ ଭାବକୁ ରଙ୍କ ।
ବଳୀୟାରଭୁଜ ଛାୟା ତଳେ ଦ୍ୟନ୍ତି ସ୍ଥାନ
ଭୁକ୍ତି ମୁକ୍ତି ପଦ ବଳେ କରନ୍ତି ପ୍ରଦାନ ।
ଏଣୁ ମାନସରୁ ଛାଡ଼ି ଅନ୍ୟ ଅଭିଳାଷ
ଜଗନ୍ନାଥ ପାଦ ପଦ୍ମେ ରଖିହେ ବିଶ୍ୱାସ ।
ଲୀଳାଖଣ୍ଡ ବିବରଣ ଏଥି ହେଲା ଶେଷ
ଚକାଡୋଳା ଶନ୍ତ ଭଣେ ବଇଷ୍ଣବ ଦାସ ।

( ଇତି ଲୀଳା ଖଣ୍ଡ ସମ୍ପୂର୍ଣ୍ଣ )

—:*:—

# ଜଗନ୍ନାଥ ପୁରାଣ

## ❋ ଶ୍ରୀକ୍ଷେତ୍ର ଖଣ୍ଡ ❋

### ବନ୍ଦନା

ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ଭଗବାନ
ଜୟ ଜୟ ନିତ୍ୟାନନ୍ଦ ପଦ୍ମାଙ୍କ ନନ୍ଦନ ।
ଜୟ ଜୟ ଶ୍ରୀଅଦ୍ୱୈତ ଆଚାର୍ଯ୍ୟ ଠାକୁର
ଜୟ ଜୟ ଆହ୍ଲାଦିନୀ ଶକ୍ତି ଗଦାଧର ।
ଜୟ ଜୟ ଭକ୍ତଶ୍ରେଷ୍ଠ ଶ୍ରୀବାସ ପଣ୍ଡିତ
ଜୟ ଜୟ ସାଧୁବୃନ୍ଦ ଗୌରପଦାଶ୍ରିତ ।
ଜୟ ଜୟ ଚତୁର ସମ୍ପ୍ରଦା ଶ୍ରୀବୈଷ୍ଣବେ
ଜୟ ଜୟ ଭାବୁକ ପ୍ରେମିକ ଭକ୍ତସର୍ବେ ।
ଜୟ ଜୟ ନବଦ୍ୱୀପ ବୃନ୍ଦାବନ ବାସୀ
ଜୟ ଜୟ ଭକ୍ତେ ପୁରୁଷୋତ୍ତମ ନିବାସୀ ।
ଜୟ ଜୟ ନୈମିଷକାନନ ମୁନିଗଣ
ଜୟ ଜୟ ପୁରାଣ ପାଠକ ତପୋଧନ ।
ଜୟ ଜୟ ଗୁପ୍ତଧାମ ସର୍ବତୀର୍ଥଗଣ
ଜୟ ଜୟ ସର୍ବ ଦେବଦେବୀ ଶ୍ରୀଚରଣ ।
ଜୟ ଜୟ ବିଘ୍ନ ବିନାଶନ ଗଣପତି
ଜୟ ଜୟ ମାହେଶ୍ୱରୀ ଦୁର୍ଗା ଭଗବତୀ ।
ଜୟ ଜୟ ଦେବ ଦେବ ତ୍ରିଲୋଚନ ହର
ଜୟ ଜୟ ବିଶ୍ୱଗୁରୁ ପ୍ରଭୁ ବିଶ୍ୱମ୍ଭର ।
ଜୟ ଜୟ ଅଖିଳ ବ୍ରହ୍ମାଣ୍ଡନାଥ ହରି
ଜୟ ଜୟ ବେଦପତି ବ୍ରହ୍ମା କୁଶଧାରୀ ।
ଜୟ ଜୟ ଦେବର୍ଷି ନାରଦ ତପୋଧନ
ଜୟ ଜୟ ଶୁକ ସନକାଦି ଋଷିଗଣ ।
ଜୟ ଜୟ ବିଷ୍ଣୁପ୍ରିୟା ଲକ୍ଷ୍ମୀ ସରସ୍ୱତୀ
ଜୟ ଜୟ ବିମଳାଇ ମାତ ଭଗବତୀ ।
ଜୟ ଜୟ ରତ୍ନସ୍ତମ୍ଭେ ବିନତା ନନ୍ଦନ
ଜୟ ଜୟ ନାଟ୍ୟଶାଳା ଶ୍ରୀଜଗମୋହନ ।
ଜୟ ଜୟ ଯଜ୍ଞବେଦୀ ମୁକତି ମଣ୍ଡପ
ଜୟ ଜୟ ବିଷ୍ଣୁଭକ୍ତ ବ୍ରାହ୍ମଣ କଳାପ ।

ଜୟ ଜୟ ବେଢ଼ାସ୍ଥଳୀ ମହାମନୋହର
ଜୟ ଜୟ କୋଇଲି ବୈକୁଣ୍ଠ ଶୋଭାସାର ।
ଜୟ ଜୟ ଚତୁର୍ଦ୍ୱାର ଦ୍ୱାରପାଳଗଣ
ଜୟ ଜୟ ଚକଡ଼ା ଅରୁଣସ୍ତମ୍ଭ ସ୍ଥାନ ।
ଜୟ ଜୟ ଶ୍ରୀନିର୍ମାଲ୍ୟ ଖଳା ମୁକ୍ତିସ୍ଥାନ
ଜୟ ଜୟ ଶ୍ରୀଭୋଗ ମଣ୍ଡପ ସୁଶୋଭନ ।
ଜୟ ଜୟ ସ୍ନାନବେଦୀ ଅପୂର୍ବ ସୁନ୍ଦର
ଜୟ ଜୟ ଶ୍ରୀମହାପ୍ରସାଦ ହାଟସାର ।
ଜୟ ଜୟ ଦିବ୍ୟସ୍ଥଳୀ ଆନନ୍ଦ ବଜାର
ଜୟ ଜୟ ବାଇଶ ସୋପାନ ସୁରୁଚିର ।
ଜୟ ଜୟ ଦେବଦେବୀ ବେଢ଼ା ଚଉକତି
ଜୟ ଜୟ ଚହାଁଣି ମଣ୍ଡପ ଶ୍ରୀଜଗତି ।
ଜୟ ଜୟ ମହାଲକ୍ଷ୍ମୀ ଦେବୀ ପାକଶାଳ
ଜୟ ଜୟ ଚନ୍ଦନ ଅର୍ଗଳ ସୁମଙ୍ଗଳ ।
ଜୟ ଜୟ ଶ୍ରୀଗମ୍ଭୀରା ରତ୍ନସିଂହାସନ
ଜୟ ଜୟ ଶ୍ରୀ ଚକାବଇଠି ମନୋରମ ।
ଜୟ ଜୟ ଦାରୁବ୍ରହ୍ମ ଚତୁର୍ଦ୍ଧା ମୂରତି
ଜୟ ଜୟ ଧୂପ ଅବକାଶ ସେବା ନୀତି ।
ଜୟ ଜୟ ସକଳ ସେବକ ପ୍ରଭୁଙ୍କର
ଜୟ ଜୟ ମହାଭକ୍ତଗଣଙ୍କ ପୟର ।
ଜୟ ଜୟ ସିଂହଦ୍ୱାର ପତିତପାବନ
ଜୟ ଜୟ ମେଘନାଦ ପ୍ରାଚୀର ଶୋଭନ ।
ଜୟ ଜୟ ଦୋଳବେଦୀ ମହାବେଦୀ ସ୍ଥାନ
ଜୟ ଜୟ ବଡ଼ଦାଣ୍ଡ ଗୁଣ୍ଡିଚା ଭବନ ।
ଜୟ ଜୟ ଚକ୍ରତୀର୍ଥ ଜୟ ମହାବୀର
ଜୟ ଜୟ ସ୍ୱର୍ଗଦ୍ୱାର ମହୋଦଧି ତୀର ।
ଜୟ ଜୟ ସର୍ବସାଧୁସନ୍ଥଙ୍କ ଆସ୍ଥାନ
ଜୟ ଜୟ ଶ୍ରୀଗୌର ଗମ୍ଭୀରା ଦିବ୍ୟସ୍ଥାନ ।

ଜୟ ଜୟ କଳ୍ପବଟ ଶ୍ରୀବାଳମୁକୁନ୍ଦ
ଜୟ ଜୟ ଶ୍ରୀବେଣୀକୃଷ୍ଣ ପାଦପଦ୍ମ ।
ଜୟ ଜୟ ଶ୍ରୀବରାହ ବାମନ ନୃସିଂହ
ଜୟ ଜୟ ନୀଳକଣ୍ଠ ଲୋକନାଥ ସମ୍ଭ ।
ଜୟ ଜୟ ଶ୍ରୀକ୍ଷେତ୍ର ନିବାସୀ ସର୍ବଜନ
ବନ୍ଦନା କରୁଛି ସର୍ବ ସାଧୁଙ୍କ ଚରଣ ।
ଶ୍ରୀକ୍ଷେତ୍ର ଖଣ୍ଡ ଲେଖନେ ବଳାଇଛି ମତି
ସାଧକ ବୈଷ୍ଣବଗଣ ଦିଅ ହେ ଶକତି ।
ସର୍ବେ ଅନୁଗ୍ରହ କରି ଦିଅ ପାଦଧୂଳି
ହରିବୋଲିଆ ବୈଷ୍ଣବ ଦାସ କରେ ଅଳି ।

—×—

## ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଶ୍ରୀକ୍ଷେତ୍ରେ ପ୍ରବେଶ ଓ କାର୍ଯ୍ୟାବଳୀ

ଶୌନକ ଉବାଚ

ଜୈମିନି ମହାଋଷିଙ୍କି ପରମ ସାଦରେ
ଶୌନକ ମୁନି ପୁଚ୍ଛିଲେ ଏଥି ଅନନ୍ତରେ ।
ଆହେ ବ୍ୟାସଙ୍କର ଶିଷ୍ୟ ପୁରାଣ ବକତା
କହିଲତ ଠିକେ ଠିକେ ଲୀଳାଖଣ୍ଡ କଥା ।
ଇନ୍ଦ୍ରଦ୍ୟୁମ୍ନ ମହାରାଜା ନାରଦଙ୍କ ସଙ୍ଗେ
ବିଲେଶ୍ୱରଙ୍କ ସ୍ଥାନରୁ ଗଲେ କେଉଁଦିଗେ ।
ଶ୍ରୀନୀଳାଚଳେ ପ୍ରବେଶି ମାଳବ ରାଜନ
ପ୍ରଥମେ ଆରମ୍ଭକଲେ କେଉଁ କାର୍ଯ୍ୟମାନ ।
ସଂପ୍ରତି ଆମ୍ଭମାନଙ୍କୁ କହ ଋଷିମଣି
କୃତାର୍ଥ ହୋଇବୁ ସର୍ବେ ତୁମ୍ଭ ମୁଖୁଁ ଶୁଣି ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଆହେ ସର୍ବ ମୁନିଗଣ
ଲୀଳାଖଣ୍ଡ କଥା ଭଲେ କଲତ ଶ୍ରବଣ ।
ଏବେ ସାବଧାନେ ଶୁଣ ଆଶ୍ଚର୍ଯ୍ୟ କାହାଣୀ
ନାରଦ ସହିତ ରଥେ ଯାନ୍ତି ନୃପମଣି ।
ପୁରୋହିତଙ୍କ କନିଷ୍ଠ ଭ୍ରାତ ବିଦ୍ୟାପତି
ସେହୁ ମଧ ନୃପତିଙ୍କ ସଙ୍ଗେ ଯାଉଛନ୍ତି ।
ଚଳାଇ ଆଣିଲେ ରଥ ନୀଳକଣ୍ଠେଶ୍ୱରେ
ସେହି ଲିଙ୍ଗ ରହିଛନ୍ତି ଶ୍ରୀକ୍ଷେତ୍ର ପୂର୍ବଦ୍ୱାରେ ।
ପଥେଯାନ୍ତେ ଅମଙ୍ଗଳ ଦେଖିଲେ ରାଜନ
ବାମଚକ୍ଷୁ ବାମଭୁଜ କରଇ ନର୍ତ୍ତନ ।

ପୁନଃ ପୁନଃ ଏହିପରି ଘଟଇ ଅମଙ୍ଗଳ
ତାହା ଦେଖି ନୃପତି ହୋଇଲେ ଅତ୍ୟନ୍ତ ବିକଳ ।
ନାରଦଙ୍କୁ ପଚାରିଲେ ବିନୟେ ରାଜନ
କମ୍ପା ମୁଁ ଦେଖୁଛି ଏ ଅଶୁଭ ଚିହ୍ନମାନ ।
ବାମନେତ୍ର ନାଚେ ମୋର ବାମବାହୁ ସ୍ଫୁରେ
ଏହାର କାରଣ ମୁନି କହନ୍ତୁ ହେ ମୋତେ ।
ରାଜଚକ୍ରବର୍ତ୍ତୀ ମୁହିଁ ଭାରତ ମଣ୍ଡଳେ
ତାର ବିପଟିତ କରୁ ନାହିଁ ଅକୁଶଳେ ।
ମଙ୍ଗଳ ଏ ଯାତ୍ରା ବିଷ୍ଣୁ ଦର୍ଶନ କାରଣ
ତେବେ ଅମଙ୍ଗଳ ଚିହ୍ନ ଘଟେ କି କାରଣ ।
କିବା ଦୁଃଖ ହେବ ମୁନି କହ ସୁନିଶ୍ଚିତ
ତ୍ରିକାଳ କଥା ସବୁ ତୁମ୍ଭଙ୍କୁ ବିଦିତ ।
ଇନ୍ଦ୍ରଦ୍ୟୁମ୍ନ ବାଣୀଶୁଣି ତହୁଁ ତପୋଧନ
ସାନ୍ତ୍ୱନା ଦେଇ କହିଲେ ବ୍ରହ୍ମାଙ୍କ ନନ୍ଦନ ।
ଶୁଣ ରାଜନ ବିଷାଦ ନ ଭାବ ଅନ୍ତର
ଅଳ୍ପ ବିଘ୍ନ ତବ ଶୁଭ ହୋଇବ ବିସ୍ତର ।
ଭାଗ୍ୟବନ୍ତ ଯେଉଁଜନ ଅଛନ୍ତି ସଂସାରେ
ଶୁଭ ପୁଣି ମିଳେ ତାଙ୍କୁ ବିଘ୍ନର ଉତ୍ତରେ ।
ସତ୍ୟ ତୁମ୍ଭେ ରାଜଚକ୍ରବର୍ତ୍ତୀ ନୁହେ ଆନ
ସତ୍ୟ ଏହି ବିଷ୍ଣୁକ୍ଷେତ୍ରେ ଅଇଲ ରାଜନ ।
ମାତ୍ର ଯେଉଁହେତୁ ଯାତ୍ରାକଲ ହେ ଆପଣେ
ସେହି ପ୍ରଭୁ ଅନ୍ତର୍ଦ୍ଧାନ ଏଥି ବର୍ତ୍ତମାନେ ।
ଯେଉଁଦିନ ଦର୍ଶନ କଲେ ଏ ବିଦ୍ୟାପତି
ତାହା ପରଦିନ ଅନ୍ତର୍ଦ୍ଧାନ ରମାପତି ।
ଆବୃତ ହୋଇ ବାଲୁକା ବସ୍ତୁରେ ଶ୍ରୀହରି
ପାତାଳକୁ ଗଲେ ମର୍ତ୍ତ୍ୟଲୋକ ପରିହରି ।
ନାରଦଙ୍କ ମୁଖୁଁ ଶୁଣି ଦାରୁଣ ଉତ୍ତର
ଅତିଶୟ ବ୍ୟଥିତ ହୋଇଲେ ନୃପବର ।
ସେ କଥାକୁ କୋଟି ବଜ୍ରାଘାତ ପ୍ରାୟ ମଣି
ଅଚେତନ ହୋଇ ତଳ ପଡ଼ିଲେ ଧରଣୀ ।
ଅତଉଚ୍ଚ ରଥପରୁ ପଡ଼ିଲେ ରାଜନ
ପ୍ରାଣହତ ହେଲା କି ଦେଖନ୍ତି ସର୍ବଜନ ।
ହାହାକାରେ ଡାକନ୍ତି ସେ ପାତ୍ରମିତ୍ରଗଣ
ପୁରୋହିତ ଆଦି ସର୍ବେ କରନ୍ତି ରୋଦନ ।
ଅନ୍ୟ ଦିକେ କାନ୍ଦନ୍ତି ସବୁ ପ୍ରଜାଗଣ
କାହିଁଗଲ ନରନାଥ ଆମ୍ଭଙ୍କୁ ତେଜିଣ ।

ରାଣୀମାନେ ସେ କାନ୍ଦନ୍ତି କରି ହାହାକାର
ଆର୍ତ୍ତନାଦ କରି କାନ୍ଦେ ରାଜାର କୁମାର ।
କର୍ପୂର ବାସିତ ସୁଶୀତଳ ଜଳଘେନି
ଘନଘନ ମୁଖେ ସିଞ୍ଚି ବଳପନ୍ତି ମ୍ନାଣି ।
କର୍ପୂର ଅଗୁରୁ ମିଶା ଶୀତଳ ଚନ୍ଦନ
ରାଜାଙ୍କର ସର୍ବାଙ୍ଗରେ କରନ୍ତି ଲେପନ ।
କେହି କେହି ଚାମର ଆଲଟ ପଙ୍ଖାଧରି
ରାଜାଙ୍କ ବିଞ୍ଚିଲାଗନ୍ତି ନେତେ ଅଶ୍ରୁଭରି ।
ତା ଦେଖି ନାରଦ ମୁନି ବିସ୍ମୟ ଅପାର
ସ୍ଥିରହୋଇ ଯୋଗରେ ବସିଲେ ଧାଡ଼ିକାର ।
ରାଜାଙ୍କ ଭବିଷ୍ୟ ଶୁଭ ଜାଣି ତପୋଧନ
ଯୋଗଧାରଣା କରି ସେ ରଖିଲେ ଜୀବନ ।
ସର୍ବେ ବହୁ ଯତ୍ନ କରୁ କରୁ ସେ ଏମନ୍ତ
ବହୁକ୍ଷଣେ ଚେତନ ପାଇଲେ ନରନାଥ ।
ଉଠି ନାରଦଙ୍କ ପାଦେ ପଡ଼ିଣ ବହନ
କାନ୍ଦି କାନ୍ଦି ଗଦଗଦେ କହନ୍ତି ବଚନ ।
କେଉଁ ମହାପାପ ମୁହିଁ କଲି ଜନ୍ମାନ୍ତରେ
ସେ ଫଳେ ଏ ଦୁଃଖ ଆସି ଫଳିଲା ମୋହରେ ।
ଏ ଜନମେ ମୁଁ ତ କିଛି ପାପ କରିନାହିଁ
ମୋରେ ବିମୁଖ ହୋଇଲେ ଶ୍ରୀହରି କିମ୍ପାଇଁ ।
କାୟମନବଚନରେ ସ୍ୱପ୍ନେ ବା କଥନେ
ଅପରାଧ କରିନାହିଁ ସାଧୁ ଗୋ ବ୍ରାହ୍ମଣେ ।
ରାଜଧର୍ମେ ନିତ୍ୟନୈମିତ୍ତିକ କର୍ମମାନ
ସେ କର୍ମକୁ ମୁଁ ତ ଛାଡ଼ି ନାହିଁ କଦାଚନ ।
ଦେବତା ଅତିଥି ଭୃତ୍ୟ ଋଷି ପିତୃଗଣ
ବନ୍ଧୁବର୍ଗ ମୋଠାରେ ଆଶ୍ରିତ ଯେତେଜନ ।
ଏମାନଙ୍କୁ କେବେ ଦେଇ ନାହିଁ ଅପମାନ
ତେବେ କିମ୍ପାମୋତେ ତ୍ୟାଗ କଲେ ଭଗବାନ
ପଞ୍ଚ ଦଶ ଅପରାଧ କାଳ ସର୍ପ ପରି
ବିଷ୍ଣୁରେ ନ କରେ କେବେ ଶାସ୍ତ୍ରକୁ ବିଚାରି ।
ତେବେ କିମ୍ପା ପରିତ୍ୟାଗ କଲେ ମୋତେହରି
ଏଣୁ ମୁଁ ମହାପାତକୀ ଆହେ ତପସ୍ୱୀ ।
କେତେଜେ ଭାଗ୍ୟ ଚରିବ ଅର୍ଜିଲେ ବିଦ୍ୟାପତି
ଚର୍ମଚକ୍ଷୁରେ ସାକ୍ଷାତେ ଦେଖିଲେ ଶ୍ରୀପତି ।
କହୁଁ କହୁଁ ଅନୁରାଗ ବଢ଼ିଲା ଯେକାଳେ
ନାରଦଙ୍କୁ ରାଜା ପୁଣି କହିଣ ଲାଗିଲେ ।

ବିଷାଦେ ଅତି ବିକଳେ ତାହାଙ୍କର ମନ
କାନ୍ଦି କାନ୍ଦି କରଯୋଡ଼ି କଲେ ନିବେଦନ ।
ମୋହର ଦାଇନ୍ୟ ଶୁଣ ଆହେ ମହାମୁନି
ତୁମ୍ଭେତ ଶ୍ରୀହରି ଭକ୍ତ ଶ୍ରେଷ୍ଠ ତତ୍ତ୍ୱଜ୍ଞାନୀ ।
ଜାଣି ଜାଣି ମୋତେ ଏତେ ସରି କରାଇଲ
କିକାରଣେ ରାଜ୍ୟ ଚ୍ୟୁତ କରାଇ ଆଣିଲ ।
ଯାବାକାଳେ ନ କହିଲ ହେବ ଏ ଦୁର୍ଦ୍ଦଶା
ବିପ୍ରଙ୍କୁ ସଙ୍ଗେ ଅଣାଇ ଦେଖାଇଲ ଆଶା ।
ତୁମ୍ଭ ବାକ୍ୟେ ସ୍ଥାନ ଭ୍ରଷ୍ଟ ହେଲେ ଦ୍ୱିଜଗଣ
ବାନ୍ଧି ବୃତ୍ତି ଗୃହ ଯା ଆସିଲେ ପ୍ରଜାଜନ ।
କେମନ୍ତେ ବଞ୍ଚିବେ ସର୍ବେ କେଉଁ ଉପାୟରେ
ଏ ହେତୁ ଭାବଲେଣି ମୋର ମନେ ବିଶେଷରେ ।
ମୋର ଧୃତି ବ୍ରତ ନ ଦେଖିଲେ ନାରାୟଣ
ନିଶ୍ଚୟ କହୁଛି ତେଜିବି ଏ ଛାର ପ୍ରାଣ ।
ମୁହିଁ ଜୀବନ ଛାଡ଼ିଲେ ଆହେ ମୁନିମଣି
ମୋହର ପ୍ରଜାମାନଙ୍କୁ କେ ପାଳିବ ପୁଣି ।
ଏତେ ଦୁଃଖ ଦିଆଇଲ ତୁମ୍ଭେ ଏକା ସିନା
ସକଳ ଆଶା ଭରସା ହେଲା ମୋରଚୂନା ।
ଲଲାଟରେ ଯାହା ଲେଖାଥିଲା ତା ଘଟିଲା
ଏବେ ମୋର ଅନୁରୋଧ ଶୁଣ କିନା ଭଲା ।
ମୋର ପୁତ୍ରକୁ ମାଳବ ଦେଶେ ଘେନି ଯାଅ
ସେଠାରେ ଅବଲମ୍ବରେ ନୃପତି କରାଅ ।
ପ୍ରଜାପାଳୁ ମୋର ସମ ଚକ୍ରବର୍ତ୍ତୀ ହୋଇ
ତୁମ୍ଭର ଚରଣେ ଏତେ ହେଉଛି ବିନୟୀ ।
ମୋର ସଙ୍ଗେ ରାଜାମାନେ ଆସିଛନ୍ତି ଯେତେ
ମୋ ପୁତ୍ର ସଙ୍ଗେ ଯାଆନ୍ତୁ ମାଳବେ ସମସ୍ତେ ।
ଯେଉଁପରି ନୃପେ ଛନ୍ତି ମୋର ଆଜ୍ଞାବର୍ତ୍ତୀ
ତେସନେ କରାନ୍ତୁ ମୋ ପୁତ୍ରଙ୍କୁ ଚକ୍ରବର୍ତ୍ତୀ ।
ତାର ଆଜ୍ଞା ପାଳି ନୃପେ ସର୍ବ ଶୁଭେ ଥାନ୍ତୁ
ସେ ଯାହାରାଜ୍ୟରେ ପ୍ରଜାମାନଙ୍କୁ ପାଳନ୍ତୁ ।
ଆଉ ମୁଁ ନିଜ ଦେଶକୁ ବାହୁଡ଼ି ନ ଯିବି
ନିରାହାର କରି ଏହି କ୍ଷେତ୍ରେ ରହିଥିବି ।
ଶ୍ରୀନୀଳମାଧବଙ୍କର ପାଦପଦ୍ମ ଧ୍ୟାୟି
ସଫଳ କରିବି ଜନ୍ମ ସତ୍ୟ କହିଲଇଁ ।
ଏ ମୋର ପ୍ରତିଜ୍ଞା କେବେ ନ ହୋଇବ आन
ଶ୍ରୀହରି ଚରଣ ପଦ୍ମେ ଲଗାଇବି ଧ୍ୟାନ ।

ଏମନ୍ତେ ବିଳାପ କରି କହେ ଦଣ୍ଡଧାରୀ
ଶୁଣି ମନେ ସନ୍ତାପିତ ହେଲେ ତପସ୍ୱୀ ।
ପ୍ରବୋଧ ବଚନେ ତାଙ୍କୁ ଭଣାଇଲେ ଧୀରେ
ବୋଇଲେ ଶୋକ ନ କର ଏମନ୍ତ ଅଧୈର୍ଯ୍ୟରେ
ଶ୍ରୀହରିଙ୍କ ଭକ୍ତ ତୁମ୍ଭେ ଅଟ ସୁପଣ୍ଡିତ
ପରମ-ଦୟାଳୁ ସର୍ବ ଗୁଣେ ଗୁଣବନ୍ତ ।
ସୁବସ୍ତରବନ୍ତ ତୁମ୍ଭେ ବୈଷ୍ଣବ ଅଗ୍ରଣୀ
ମହାକୀର୍ତ୍ତିଶାଳୀ ରାଜଚକ୍ରବର୍ତ୍ତୀ ପୁଣି ।
ସୁଜାଣ ଚତୁର ହୋଇ ହେଉଛ ଅବୁଝା
ମୋହର ବଚନେ ଧୈର୍ଯ୍ୟ ଧର ମହାରଜା ।
କହିଲ ଯା ସ୍ୱପ୍ନ ପରେ ବହୁତ ମଙ୍ଗଳ
କାହିଁକି ନ ଶୁଣି ତାହା ହେଉଛ ବିକଳ ।
ମୂର୍ତ୍ତିମୟ ସାକ୍ଷାତ ଶ୍ରୀକୃଷ୍ଣ ଦରଶନ
ଅନେକ ଜନ୍ମର ଏହା ମଙ୍ଗଳ କାରଣ ।
ଅବାଧିତ ହରିଲୀଳା କେ କରେ ନିଶ୍ଚୟ
ଶିବବିରଞ୍ଚି ମୁହିଁ ମଧ୍ୟ ନ ଜାଣେ ନିର୍ଣ୍ଣୟ ।
ସର୍ବଦା ମୋହର ବାସ ଶ୍ରୀହରି ଚରଣେ
ଦୃଢ଼ ଭକ୍ତି କରିଥାଏଁ ମନେ ଅନୁକ୍ଷଣେ ।
ତେବେ ମୁହିଁ ବେଳେବେଳେ ମାୟାରେ ଭୁଲଇ
ସେ ବିଷ୍ଣୁ ମାୟାକୁ ବର୍ତ୍ତି ପାରେ ନାହିଁ କେହି ।
ଶ୍ରୀହରିଙ୍କ ମାୟା ଅଟେ ସମୁଦ୍ର ଅପାର
ବହୁ ଜନ୍ମେ ତରିବାକୁ ଶକତି କାହାର ।
ଦେଖ ତାଙ୍କ ନାଭିପଦ୍ମୁ ବ୍ରହ୍ମାଙ୍କ ଉତ୍ପତ୍ତି
ନିତ୍ୟ ଏକଭାବେ ବ୍ରହ୍ମା କରୁଛନ୍ତି ସ୍ତୁତି ।
ତଥାପି ସେ ବିଷ୍ଣୁ ମାୟା ନ ପାରନ୍ତି ଜାଣି
ଅନ୍ୟ ଜନ କେବା ଆଉ ଅଛି ଏ ଧରଣୀ ।
କହିଲଇଁ ସେହି ମାୟାଧାରୀଙ୍କ ସ୍ୱଭାବ
ବିଶେଷ କହୁଛି ପୁଣି ଶୁଣ ଏକ ଭାବେ ।
ଇନ୍ଦ୍ରଦ୍ୟୁମ୍ନ ରାଜା ତୁମ୍ଭେ ମହା ଭାଗ୍ୟବାନ
ତ୍ରିଭୁବନେ ନାହିଁ କେହି ତୁମ୍ଭର ସମାନ ।
ସେହି ଶ୍ରୀହରିଙ୍କ ଦାରୁମୟ ଚାରିମୂର୍ତ୍ତି
ଯତ୍ନକରି ନିର୍ମାଣ କରାଅ ନରପତି ।
ଧର୍ମ୍ମ ଅର୍ଥ କାମ ମୋକ୍ଷଦାତା ମୂର୍ତ୍ତିଗଣ
କୃତାର୍ଥ ହୋଇବେ ସର୍ବେ କରି ଦରଶନ ।
ସେହି ଶ୍ରୀହରିଙ୍କ ଅନୁଗ୍ରହ ତୁମ୍ଭ ପ୍ରତି
ଭୁବନ ଭରି ତୁମ୍ଭର ନାମ ହେବ ଖ୍ୟାତି ।

ସାକ୍ଷାତ ଯେ ବ୍ରହ୍ମା ସୃଜୁଛନ୍ତି ଚରାଚର
ଏ କାର୍ଯ୍ୟେ ସେ ସହାୟ ଅଛନ୍ତି ନିରନ୍ତର ।
ମୋତେ କହିଛନ୍ତି ଯାହା ତୁମ୍ଭର ନିମନ୍ତେ
ସେକଥା କହୁଛି ଏବେ ଶୁଣ ଏକଚିତ୍ତେ ।
ମୋ ପିତା ବୋଇଲେ ହସି ଶୁଣ ହେ ନାରଦ
ଯାହା କହୁଅଛି ମୁହିଁ କର ହୃଦବୋଧ ।
ମାଳବଦେଶେ ଅବନ୍ତୀ ରାଜଧାନୀ ଜାଣ
ତହିଁ ରାଜଚକ୍ରବର୍ତ୍ତୀ ଇନ୍ଦ୍ରଦ୍ୟୁମ୍ନ ନାମ ।
ସେ ଯେ ପରମ ଭକତ ଅଟେ ହରିଙ୍କର
ଶୀଘ୍ର ସେହି ନୃପପାଶେ ଚଳ ମୁନିବର ।
ନୀଳାଦ୍ରିକି ଯାଏ ରାଜା ମାଧବ ଦର୍ଶନେ
ତହିଁ ଅନ୍ତର୍ଦ୍ଧାନ ହରି ଯମର ପ୍ରାର୍ଥନେ ।
ଈଶ୍ୱରଙ୍କ ଇଚ୍ଛା ଆନକରେ ଶକ୍ତିକାର
ଏଥେ ଯେହ୍ନେ ଶୋକ ନ କରଇ ନୃପବର ।
ପଞ୍ଚମ ନନ୍ଦନ ମୋର ଇନ୍ଦ୍ରଦ୍ୟୁମ୍ନ ପ୍ରତି
କହିବ ନାରଦ ତୁମ୍ଭେ ଏ ମୋର ଭାରତୀ ।
ସହସ୍ରେକ ଅଶ୍ୱମେଧ କଲେ ସେ ରାଜନ
ପ୍ରସନ୍ନ କରାଇ ମୁହିଁ ପ୍ରଭୁ ଭଗବାନ ।
ଶ୍ୱେତଦ୍ୱୀପରୁ ତାହାଙ୍କୁ ତହିଁ ଘେନିଯିବି
ଚତୁର୍ଦ୍ଧା ମୂର୍ତ୍ତିରେ ସୁପ୍ରତିଷ୍ଠା ଯେ କରିବି ।
ଏବେ ରାଜା ନୀଳଗିରିଠାରେ ବାସକରି
ଆନନ୍ଦମନରେ ଜଗଦୀଶଙ୍କୁ ସୁମରି ।
ସହସେକ ଅଶ୍ୱମେଧ କରି ଅନୁଷ୍ଠାନ
ଅତିଯତ୍ନେ ବିଷ୍ଣୁପଦ କରୁ ଆରାଧନ ।
ଯଜ୍ଞ ଅନ୍ତେ ଦେଖିବ ସେ ବିଷ୍ଣୁ ଦାରୁମୟ
ସେ ଦାରୁ ପ୍ରତିଷ୍ଠା ମୁହିଁ କରିବି ନିଶ୍ଚୟ ।
ପ୍ରଶଂସାକରି ରାଜାକୁ କହିବ ଏ ଗିର
ଇନ୍ଦ୍ରଦ୍ୟୁମ୍ନ ଭାଗ୍ୟେ ହେବେ ଏହି ଅବତାର ।
ପୂର୍ବେ ଯେ ପାଷାଣମୟ ଇନ୍ଦ୍ରନୀଳମଣି
ଚାରିମୂର୍ତ୍ତି ହୋଇ ଆପେ ଥିଲେ ଚକ୍ରପାଣି ।
ଦରଶନ କରି ତାର ପୁରୋହିତ ଭ୍ରାତ
ସର୍ବଶୁଭେ ଜଣାକରି ଅଛି ଭଲେ ସେତ ।
ଏବେ ସେହି ଭଗବାନ ଦାରୁଦେହ ଧରି
ନୀଳାଚଳେ ଅବତାର ହେବେ ମୂର୍ତ୍ତି ଚାରି ।
ଏଣୁ ଇନ୍ଦ୍ରଦ୍ୟୁମ୍ନ ମନେ କାତର ନ ହେବ
ଅବଶ୍ୟ ତାହାର ବାଞ୍ଛା ସଫଳ ହୋଇବ ।

ଏହିପରି କେତେମତେ ପିତା ପ୍ରଜାପତି
ପ୍ରସନ୍ନ ବଦନେ ମୋ ଆଗରେ କହନ୍ତି ।
ହେ ନୃପଶେଖର ତୁମ୍ଭେ ଭାବନା ନକର
ନିଶ୍ଚୟ ମନକାମନା ପୂରିବ ତୁମ୍ଭର ।
ଶଙ୍ଖନାଭି କ୍ଷେତ୍ର ଅଗ୍ରେ ନୀଳକଣ୍ଠ ହର
ପାର୍ବତୀଙ୍କ ସାଥେ ବିହରନ୍ତି ନିରନ୍ତର ।
ସେହିସ୍ଥାନ ଅଟଇ ସୁଗମ ମନୋହର
ଉପଯୁକ୍ତ ଭାବ ଅଶ୍ୱମେଧ ଯଜ୍ଞକର ।
ଯଜ୍ଞ ନିମନ୍ତେଣ ତହିଁ ନିରମାଣି ଘର
ସେହି ଗୃହେ ବାସକର ସହସ୍ର ବତ୍ସର ।
ସର୍ବବିଘ୍ନ ନାଶେ ଫଳ ବୃଦ୍ଧିର କାରଣ
ନୃସିଂହ ମୂରତି ଗୋଟି କରିବ ସ୍ଥାପନ ।
ନିତ୍ୟକର୍ମ ସାରି ତୁମ୍ଭେ ତାହାଙ୍କୁ ପୂଜିବ
ଆନନ୍ଦ ମନରେ ତହୁଁ ଯଜ୍ଞ ଆରମ୍ଭିବ ।
ଏହି କାର୍ଯ୍ୟରେ ବିଳମ୍ବ ନକର ରାଜନ
ବ୍ରହ୍ମାଙ୍କ ବଚନ ଏହା ସୁନିଶ୍ଚୟ ଜାଣ ।
ଏମନ୍ତେ ନାରଦ ମୁନି ପରମ ହରଷେ
ବୁଝାଇ କହିଲେ ରାଜା ଇନ୍ଦ୍ରଦ୍ୟୁମ୍ନ ପାଶେ ।
ଜୈମିନି ଋଷି କହନ୍ତି ମୁନିଙ୍କ ସମାଜେ
ବୈଷ୍ଣବ ଦାସ ଶ୍ରୀହରି ପାଦପଦ୍ମ ଭଜେ ।

—ଃ✳ଃ—

## ଇନ୍ଦ୍ରଦ୍ୟୁମ୍ନଙ୍କର ନୀଳାଦ୍ରି ଗମନ

### ଜୈମିନି ଉବାଚ

ଏଥୁ ଅନନ୍ତରେ ଯେ ଜୈମିନି ତପୋଧନ
ଆନନ୍ଦ ମନେ କହନ୍ତି କରି ହରି ଧ୍ୟାନ ।
ଆହେ ମୁନିମାନେ ସର୍ବେ ମନ ଦେଇ ଶୁଣ
ଇନ୍ଦ୍ରଦ୍ୟୁମ୍ନଙ୍କର ଯଥା ନୀଳାଦ୍ରି ଗମନ ।
ନାରଦଙ୍କ ମୁଖୁଁ ଶୁଣି ସେ ଭକ୍ତ ରାଜନ
ଶୋକ ପରିହରି ହେଲେ ଆନନ୍ଦିତ ମନ ।
ନୀଳକଣ୍ଠ ସ୍ଥାନେ ଗଲେ ନାରଦଙ୍କ ସାଥେ
ହର ଗଉରୀଙ୍କି ପୂଜାକଲେ ବିଧି ମତେ ।
ବେନିକର ଯୋଡ଼ି ଆରମ୍ଭିଲେ ତହିଁ ସ୍ତୁତି
ସେହି ସ୍ଥାନେ ରଥ ରୁହାଇଣ ନରପତି ।
ଅନ୍ୟ ରାଜାଗଣ ଆଉ ପ୍ରଜାଙ୍କର ସଙ୍ଗେ
ବାହାର ହୋଇଲେ ତହୁଁ ମନ ଅନୁରାଗେ ।
ବିଶେଷ ଶ୍ରୀହରି ହୃଦେ ପଶିଛି ବଦନେ
ଚଳିଲେ ନୃପତି ନୀଳଗିରି ଦରଶନେ ।
ପର୍ବତକୁ ଉଠିବାକୁ ପଥ ଯେ ଦୁର୍ଗମ
ମନୁଷ୍ୟର ସାଧ୍ୟ ନାହିଁ କଣ୍ଟକ ବିଷମ ।
କେହି କେବେ ଯେ ଗିରିକି ନପାରନ୍ତି ଯାଇ
ସହଜ ସୁଗମ ମାର୍ଗ ଦେବତାଙ୍କ ପାଇଁ ।
ତଥାପି ନାରଦ ସଙ୍ଗେ ଗମନ କାରଣେ
ଦେବ ଗତିରେ ଉଠିଲେ ସେନା ସର୍ବଜନେ ।
ଉଚ୍ଚ ନୀଚ ସ୍ଥାନ ସବୁ ନୁହଇ ସମସର
ସ୍ଥାନେ ସ୍ଥାନେ ସର୍ପମାନେ ଅତି ଭୟଙ୍କର ।
ବନହସ୍ତୀମାନେ ସର୍ବେ କରନ୍ତି ଗର୍ଜ୍ଜନ
ସିଂହ ବ୍ୟାଘ୍ର ଗଣ୍ଡାର ଭଲ୍ଲୁକ ଅଗଣନ ।
ନିର୍ଭୟେ ବୁଲନ୍ତି ସର୍ବେ ପର୍ବତ ଉପରେ
ଭୟେ ପ୍ରବେଶି ପାରନ୍ତି ନାହିଁ ମର୍ତ୍ତ୍ୟନରେ ।
କୋଟି କୋଟି ମୃଗମାନେ କରନ୍ତି ଭ୍ରମଣ
ନାନା ଭଳି ତରୁଲତା ଦିଶଇ ଶୋଭନ ।
ନୀଳ ଶିଳାମାନ ପଡ଼ିଅଛି ସ୍ଥାନେ ସ୍ଥାନେ
ତାହା ଦେଖି ଭ୍ରମର ମଣ୍ଡଳୀ ଜନ୍ମେ ମନେ ।
ଗିରି ନିତମ୍ବେ ଲାଗଇ ସିନ୍ଧୁ ତେଉମାନ
ସେ ଶୋଭା ଦେଖି ମୋହିତ ସମସ୍ତଙ୍କ ମନ ।
ଶ୍ୱେତ ବର୍ଣ୍ଣ ସିନ୍ଧୁ ଜଳ ନୀଳ ବର୍ଣ୍ଣ ଗିରି
ଏକତ୍ର ମିଳନେ ଦିଶେ ଅପୂର୍ବ ମାଧୁରୀ ।
ଦେଖି ଇନ୍ଦ୍ରଦ୍ୟୁମ୍ନ ରାଜା ନିଜକୁ ପାଶୋରେ
ଅନନ୍ତ ସହିତ କିବା ମାଧବ ବିହରେ ।
ଅନୁମାନ କରି ପୁଣି ନିଶ୍ୱାସ ଗ୍ରୁଡ଼ି
ଗିରି ଉପରେ ଉଠିଲେ ସେନା ଦ୍ୱିଜଗଣ ।
ସେଠାରେ କୃଷ୍ଣ ଅଗୁରୁ ତରୁର ତଳରେ
ବିରାଜନ୍ତି ଭଗବାନ ନୃସିଂହ ରୂପରେ ।
କୋଟି ବ୍ରହ୍ମହତ୍ୟା ନାଶେ ଯାହାଙ୍କ ଦର୍ଶନ
ସକଳ ଆପଦ ଭୟ କରନ୍ତି ନାଶନ ।
ଭୟଙ୍କର ମୂର୍ତ୍ତି ପ୍ରଭୁ ମେଲିତ ବଦନ
କହେ ଜଟାଭାର ଅତି ବିକଟ ଦର୍ଶନ ।
ଉଗ୍ର ବେନି ନେତ୍ର ତାଙ୍କ ଅତି ଭୟଙ୍କର
ଅଗ୍ନି ଶିଖା ଜଳେ ଯେହ୍ନେ ନୟନ ଭିତର ।
ଭେଦିଲେ ମେଦିନୀ ପ୍ରଭୁ ପାଦ ଆଘାତରେ
ଦୁଇ ପାଦପଦ୍ମ କଲେ ପ୍ରବେଶ ତହିଁରେ ।

ଦୈତ୍ୟ ବକ୍ଷ ବିଦାରଣ କରନ୍ତି ବିକଟରେ
ଆଉ ଦୁଇ ହସ୍ତେ ପ୍ରଭୁ ଶଙ୍ଖ ଚକ୍ର ଧରେ ।
ମସ୍ତକେ ରତ୍ନ କିରୀଟ ମୁକୁଟ ଶୋଭନ
ସେଠାକୁ ଯାଇ ସକଳେ କଲେ ଦରଶନ ।
ନାରଦ ସଂସର୍ଗ ହେତୁ ନିର୍ଭୟ ହୋଇଣି
ଆନନ୍ଦିତ ହେଲେ ସର୍ବେ କରି ଦରଶନ ।
ଖଣ୍ଡେ ଦୂରୁ ନମସ୍କାର କଲେ ସର୍ବଜନ
ସକଳ ଦୁଃଖ ସନ୍ତାପ ହୋଇଲା ମୋଚନ ।
ଇନ୍ଦ୍ରଦ୍ୟୁମ୍ନ ରାଜା ଦେଖି ନୃସିଂହ ମୂରତି
ସତ୍ୟ ବୋଲି ମଣିଲେ ସେ ନାରଦ ଭାରତୀ ।
ଭାବି କାର୍ଯ୍ୟରେ ପ୍ରତ୍ୟୟ ହୋଇଣ ରାଜନ
ନାରଦେ ରୁହିଁ କହିଲେ ବିନୟ ବଚନ ।
ଶୁଣ ମହାମୁନି ମହାଜ୍ଞାନୀ ହେ ଗୋସାଇଁ
ଏତେ ଦିନେ କୃତାର୍ଥ ହୋଇଲଇଁ ମୁହିଁ ।
ଯଦ୍ୟପି ନୃସିଂହ ମୂର୍ତ୍ତି ମହା ଭୟଙ୍କର.
ତେବେ ସାଧୁମାନଙ୍କ ଆରାଧ୍ୟ ନିରନ୍ତର ।
ମୋ ସମ ସକଳେ ଭୟେ ପଳାବନ୍ତି ଦୂରେ
ତେବେ ତବ ସଙ୍ଗ ହେତୁ ଦେଖିଲି ପ୍ରଭୁରେ ।
ଅଶେଷ ପାତକୁ ମୁକ୍ତ ହୋଇଲି ଏ ସ୍ଥାନେ
କୃତାର୍ଥ ହୋଇଲି ତବ ପ୍ରସାଦ କାରଣେ ।
ଅତି ଭୟଙ୍କର ଭଗବାନ ନରହରି
ଅଳ୍ପ ଜନେ ନ ପାରିବେ ଆରାଧନା କରି ।
ଏବେ ଏକ ନିବେଦନ ଶୁଣ ମହାପତି
କେଉଁ ସ୍ଥାନେ ଥିଲେ ନୀଳମାଧବ ମୂରତି ।
ଦୟାକରି ସେହି ସ୍ଥାନ ଦେଖାଅ ହେ ମୋତେ
ଶୁଣି କର ଧରି ମୁନି ଦେଖାନ୍ତି ନୃନାଥେ ।
ଏ ଯେ କଳ୍ପବଟ ବୃକ୍ଷ ଦେଖ ହେ ରାଜନ
ଯୋଜନେକ ପରିସର ଉଚ୍ଚ ଦ୍ୱିଯୋଜନ ।
ଏହି ତରୁ ମୁକ୍ତି ଦାତା ପରମ-ପାବନ
ଛାୟାକୁ ଛୁଇଁଲେ ଘୁଞ୍ଚେ କଳୁଷ ବନ୍ଧନ ।
ଏହି ବୃକ୍ଷ ମୂଳେ ଯାର ହୁଅଇ ମରଣ
ସେହି ପ୍ରାଣୀ ମୁକ୍ତି ପାଏ ସଂଶୟ ନ ମଣ ।
ବଟବୃକ୍ଷ ରୂପ ଏହି ପ୍ରଭୁ ନାରାୟଣ
ଦରଶନ ମାତ୍ରେ ପାପୁଁ ମୁକୁଳନ୍ତି ଜନେ ।
ଯେ ଜନ ଏହାଙ୍କୁ ପୂଜି ଭାବେ ସ୍ତବ କରେ
ତାହାରଯେ କେତେ ପୁଣ୍ୟ କେବା କହିପାରେ ।

ଏ ବଟ ପଶ୍ଚିମେ ନରସିଂହଙ୍କ ଉତ୍ତରେ
ଥିଲେ ଯେ ମାଧବ ଧରି ଗୂଢ଼ କଳେବରେ ।
ସେ ପ୍ରଭୁ ପୁଣି ତୁମ୍ଭଙ୍କୁ ଅନୁଗ୍ରହ କରି
ଏହି ସ୍ଥାନେ ବିରାଜିବେ ଶୂନ୍ୟେ ଅବତରି ।
ବିଷ୍ଣୁଙ୍କ ଆଳୟ ଶ୍ୱେତଦ୍ୱୀପରେ ଯେସନ
ଜମ୍ବୁଦ୍ୱୀପରେ ତେସନେ ଏହୁ ନିଜସ୍ଥାନ ।
ଅତି ଗୁପ୍ତସ୍ଥାନ ଏହି ଶ୍ରୀପୁରୁଷୋତ୍ତମ
ପ୍ରକାଶ ନକରି ହରି କରନ୍ତି ଗୋପନ ।
ମୋକ୍ଷ ଅଧିକାରୀ ଏହି ସ୍ଥାନ ପ୍ରାଣୀମାନେ
ଅବିଶ୍ୱାସ କରନ୍ତି କେବଳ ପାପୀ ଜନେ ।
ବିଷ୍ଣୁଙ୍କ ପ୍ରତିମା ଯେବା ନିର୍ମାଣି ଯତନେ
ଏ ସ୍ଥାନେ ପ୍ରତିଷ୍ଠା କରେ ଭକ୍ତି ଯୁକ୍ତ ମନେ ।
ଅନ୍ତକାଳେ ସେହି ଜନ ମୋକ୍ଷ ଲଭ କରେ
ଚତୁର୍ବର୍ଗ ଫଳ ପାଏ ବିଷ୍ଣୁଙ୍କର ବରେ ।
ସ୍ୱୟଂ ମହା ଦାରୁବ୍ରହ୍ମ ଆପଣେ ଆସିବେ
ନିଜେ ବ୍ରହ୍ମା ଆସି ଭଲେ ପ୍ରତିଷ୍ଠା କରିବେ ।
ସେହି ପ୍ରଭୁ ମୁକ୍ତିଦାତା ଜଗତ ଈଶ୍ୱର
ବିରାଜିବେ ଯୁଗେ ଯୁଗେ ଆହେ ନୃପବର ।
ସତ୍ୟ ସତ୍ୟ ବହୁଭାଗ୍ୟ ଅଟଇ ତୁମ୍ଭର
ଅବତାର କରାଇବ ବ୍ରହ୍ମାଣ୍ଡ ଠାକୁର ।
ଅବତୀର୍ଣ୍ଣ ଆବର ପ୍ରଭୁଙ୍କ ଅନ୍ତର୍ଦ୍ଧାନ
ନିମିତ୍ତ ଅଛଇ ଏହା ଶୁଣସି ରାଜନ ।
ଯୁଗେ ଯୁଗେ ଅନୁଗ୍ରହ ହେତୁ ସାଧୁଗଣେ
ନାନା ଅବତାର ହରି ହୁଅନ୍ତି ଆପଣେ ।
କାରଣ ଅନ୍ତେ ସେ ପୁଣି ହୁଅନ୍ତି ଅନ୍ତର୍ଦ୍ଧାନ
କାରଣ ରହିତ ନିତ୍ୟ ଥାନ୍ତି ଏଥି ଜାଣ ।
ଏହି କ୍ଷେତ୍ରବର ଅଟେ ସର୍ବ କ୍ଷେତ୍ର ସାର
ଅପ୍ରାକୃତ ଭୂମି ବୋଲି ମାନସେ ବିଚାର ।
ଶ୍ୱେତଦ୍ୱୀପେ ଯେସନେ ପ୍ରଭୁଙ୍କ ନିତ୍ୟ ସ୍ଥାନ
ସେହିଠାରୁ ଉପାଦାନ ଅବତାର ମାନ ।
ଏଥି ମଧ୍ୟ ରହି ସଦା ଆପଣେ ଶ୍ରୀହରି
ଆପଣା ଅଂଶମାନଙ୍କୁ ସର୍ବସ୍ୱ ପ୍ରେରି ।
ପ୍ରକାଶେ ମନ୍ଦର କାଞ୍ଚି ପୁଷ୍କର ଆଦିରେ
ତରୁ ମୂଳରୁ ଅଙ୍କୁର ଉତ୍ପତ୍ତି ପ୍ରକାରେ ।
ନାନାତୀର୍ଥେ ନାନା ଦେଶେ କ୍ଷେତ୍ର ପୁରଗଣେ
ଏହାଙ୍କର ଜାଣ ଅଂଶ ଅବତାରମାନେ ।

ଏଥି କଦାପି ସଂଶୟ ନକର ହେ ନୃପ
ସବୁର ମୂଳଟି ଏହି ଦାରୁବ୍ରହ୍ମ ରୂପ ।
କ୍ଷଣେକ ପ୍ରଭୁ ତେଜନ୍ତି ନାହିଁ ନିଜ ସ୍ଥାନ
ଦେହ ଗୂଢ଼ ଆତ୍ମା ଯେହ୍ନେ ନକରେ ବିଶ୍ରାମ ।
ଏବେ ଯେ ହୋଇବେ ସେହି ପ୍ରଭୁ ଅବତାର
ସକଳ ପ୍ରଥମେ ଜ୍ଞାନ ହୋଇବ ତୁମ୍ଭର ।
ତେବେ ସେହି ପ୍ରକାଶ ଜାଣିବେ ଅନ୍ୟ ଜନ
ନିଶ୍ଚୟ ଜାଣ ହେ ରାଜା ଏ ସବୁ କଥନ ।
ଏମନ୍ତେ ଦର୍ଶନ କରାଇଲେ ସେହି ସ୍ଥାନ
ଦେଖି ପ୍ରେମ ଜଳେ ପୂର୍ଣ୍ଣ ରାଜାର ନୟନ ।
ବିକଶିତ ହେଲା ଅଙ୍ଗେ ପୁଲକର ଦାମ
ସାଷ୍ଟାଙ୍ଗେ ନୃପତି ତହିଁ କରଇ ପ୍ରଣାମ ।
ପ୍ରକାଶ ଅଛନ୍ତି ପ୍ରଭୁ ମନେ ମନେ ଧ୍ୟାୟି
କରଯୋଡ଼ି ସ୍ତବ କରେ ଗଦଗଦ ହୋଇ ।
ନମସ୍ତେ ନମସ୍ତେ ଦେବ ଜଗତ ଈଶ୍ୱର
ନମସ୍ତେ ନମସ୍ତେ ପ୍ରଭୁ କମଳାଙ୍କ ବର ।
ନମସ୍ତେ ନମସ୍ତେ ଶଙ୍ଖ ଚକ୍ର ଗଦାପାଣି
ନମସ୍ତେ ନମସ୍ତେ ପ୍ରଭୁ ବିଶ୍ୱର ବନ୍ଦିଣୀ ।
ନମସ୍ତେ ନମସ୍ତେ ଭକ୍ତଜନ ଭାବଗ୍ରାହୀ
ନମସ୍ତେ ନମସ୍ତେ ପ୍ରଭୁ ବ୍ରାହ୍ମଣ ଗୋସାଇଁ ।
ନମସ୍ତେ ନମସ୍ତେ ହରି ଦୀନଜନ ବନ୍ଧୁ
ନମସ୍ତେ ନମସ୍ତେ ପ୍ରଭୁ ହେ କରୁଣାସିନ୍ଧୁ !
ନମସ୍ତେ ନମସ୍ତେ ଗୋ-ବ୍ରାହ୍ମଣ ହିତକାରୀ
ନମସ୍ତେ ନମସ୍ତେ ପ୍ରଭୁ ଗୋଲୋକ ବିହାରୀ ।
ନମସ୍ତେ ନମସ୍ତେ ବୈଷ୍ଣବଙ୍କ ପ୍ରାଣଧନ
ନମସ୍ତେ ନମସ୍ତେ ପ୍ରଭୁ ଶ୍ରୀମଧୁସୂଦନ ।
ନମସ୍ତେ ନମସ୍ତେ ହରି ମୁକତି ପସରା
ନମସ୍ତେ ନମସ୍ତେ ଦୁଃଖୀଜନ ଦିନସରା ।
ନମସ୍ତେ ନମସ୍ତେ ଆର୍ତ୍ତୀ ଆର୍ତ୍ତି ବିଧ୍ୱଂସନ
ନମସ୍ତେ ନମସ୍ତେ ପ୍ରଭୁ ଗରୁଡ଼ ଆସନ ।
ନମସ୍ତେ ନମସ୍ତେ ହେ ତ୍ରୈଲୋକ୍ୟ ଚିନ୍ତାମଣି
ନମସ୍ତେ ନମସ୍ତେ ପ୍ରଭୁ ନଟବର ଠାଣି ।
ନମସ୍ତେ ନମସ୍ତେ ଶ୍ରୀଗୋବିନ୍ଦ ବନମାଳୀ
ନମସ୍ତେ ନମସ୍ତେ ପ୍ରଭୁ ଦରିଦ୍ର-ସଙ୍ଖାଳି ।
ନମସ୍ତେ ନମସ୍ତେ ହରି ଶ୍ରୀବତ୍ସ ଲାଞ୍ଛନ
ନମସ୍ତେ ନମସ୍ତେ [illegible]ଦାମ ଜନାର୍ଦ୍ଦନ ।

ନମସ୍ତେ ନମସ୍ତେ ହରି କୌସ୍ତୁଭ ମଣ୍ଡନ
ନମସ୍ତେ ନମସ୍ତେ ପ୍ରଭୁ ଦୁର୍ଗତି ଖଣ୍ଡନ ।
ନମସ୍ତେ ନମସ୍ତେ ନନ୍ଦ ଯଶୋଦା ନନ୍ଦନ
ନମସ୍ତେ ନମସ୍ତେ ଗୋପୀ ହୃଦୟ ଚନ୍ଦନ ।
ନମସ୍ତେ ନମସ୍ତେ ହରି ବୃନ୍ଦାବନଚନ୍ଦ୍ର
ନମସ୍ତେ ନମସ୍ତେ ପ୍ରଭୁ ମୁରରି ମୁକୁନ୍ଦ ।
ନମସ୍ତେ ନମସ୍ତେ କୃଷ୍ଣ କେଶବ କଂସାରି
ନମସ୍ତେ ନମସ୍ତେ ଗିରି ଗୋବର୍ଦ୍ଧନଧାରୀ ।
ନମସ୍ତେ ନମସ୍ତେ ହରି ବୈକୁଣ୍ଠ ବାମନ
ନମସ୍ତେ ନମସ୍ତେ ପ୍ରଭୁ ନବଘନ ଶ୍ୟାମ ।
ନମସ୍ତେ ନମସ୍ତେ ନବ ଲାବଣ୍ୟ ମୂରତି
ନମସ୍ତେ ନମସ୍ତେ ପ୍ରଭୁ ରାଧା ପ୍ରାଣପତି ।
ନମସ୍ତେ ନମସ୍ତେ ଦେବ ଶ୍ରୀପୁରୁଷୋତ୍ତମ
ନମସ୍ତେ ନମସ୍ତେ ପ୍ରଭୁ ଛବି ଅଭିରାମ ।
ଘୋର ଭବସିନ୍ଧୁମାରେ ବୁଡ଼ିଥାନ୍ତି ଯେହୁ
ତାହାଙ୍କୁ ହେଲେ ଉଦ୍ଧାର କର ମହାବାହୁ ।
ଆହେ କୈବଲ୍ୟ ଦାୟକ ଅରକ୍ଷ ରକ୍ଷଣ
ପତିତ-ପାବନ ଦେବ ଅମୋକ୍ଷ ମୋକ୍ଷଣ ।
ଅପାର ମହିମାମୟ କରୁଣା-ବାରିଧି
ଆଶ୍ରିତ ପ୍ରାଣୀଙ୍କି ଯାଚିଦିଅ ନବନିଧି ।
ତ୍ରିତାପେ ତାପିତ ସଦା ଯେଉଁ ପ୍ରାଣୀମାନେ
ତୁମ୍ଭନାମ ଭଜ ସୁଖୀ ହୋନ୍ତି ସେ ବିଧାନେ ।
ଭକ୍ତିଭାବେ ଯେହୁ ତୁମ୍ଭ ଲୀଳାଗୁଣ ସ୍ମରେ
ଭୁକ୍ତି ମୁକ୍ତି ସେ ଗୋଡ଼ାଇ ଥାନ୍ତି ତା ପଛରେ !
ଶ୍ରଦ୍ଧାରେ ଯେ ତୁମ୍ଭନାମ ରଟେ ନିରବଧି
ଅବିଳମ୍ବେ ଦାନ କର ତାକୁ ସର୍ବସିଦ୍ଧି ।
ତୁମ୍ଭଗୁଣ ଘୋଷେ ଯେହୁ ପରମ-ବିଶ୍ୱାସେ
ଆପଣା ପାର୍ଷଦ କର ରଖ ତାକୁ ପାଶେ ।
ଅନୁରାଗେ ତବ ପାଦପଦ୍ମ ସେବାକରି
ସେ ପ୍ରାଣୀ ରହଇ ସୁଖେ ସନ୍ତାପ ପାଶୋରି ।
ମୁଁ ଯେ ଅତି ଦୀନହୀନ ଅଧମ ପାମର
ଏକମାତ୍ର ତୁମ୍ଭେ ପ୍ରଭୁ ଆଶ୍ରୟ ମୋହର ।
ମୋତେ ଅନୁଗ୍ରହ କର ହେ ଭକ୍ତବତ୍ସଳ
ଅନାଥ-ବାନ୍ଧବ ତୁମ୍ଭେ ଅବଳର ବଳ ।
ପୂର୍ବେ ତୁମ୍ଭେ ଯେଉଁ ଅନୁପମ ମୂର୍ତ୍ତିଧରି
କାକପକ୍ଷୀଙ୍କି ମୁକତି ଯାଚିଦେଲ ହରି ।

ପୁଣି ସେ ମୋହନ ମୂର୍ତ୍ତି ଏ ମୋର ନୟନେ
ଦର୍ଶନ କରଇ ପ୍ରଭୁ ଅଳ ଶ୍ରୀଚରଣେ ।
ଏ ବିନୁ ଅନ୍ୟରେ ମୋର ନାହିଁ ପ୍ରୟୋଜନ
ଦେଖିବି କେବଳ କଳା ଶ୍ରୀମୁଖ-ନଳିନ ।
ଏହିରୂପେ ଇନ୍ଦ୍ରଦ୍ୟୁମ୍ନ ବେନିକର ଯୋଡ଼ି
ସ୍ତବକରେ ଭକ୍ତିଭାବେ ସାଷ୍ଟାଙ୍ଗରେ ପଡ଼ି ।
ସର୍ବାଙ୍ଗ ତିନ୍ତଇ ତାର ନୟନର ଜଳେ
ଧରଣୀପରେ ଲୋଟଇ ପ୍ରେମ-ଭାବ ଭୋଳେ ।
କି କହିବି ସେ ରାଜାର ଅଟଳ ଭକତି
ପାଦପଦ୍ମେ ସମର୍ପିଛି ଦେହ ପ୍ରାଣ ମତି ।
ବଦନେ ରଟୁଛି ରାଜା ମାଧବ ମାଧବ
ଧନ୍ୟ ତାର ଜନ୍ମକର୍ମ ଧନ୍ୟ ତାର ଭାବ ।
ସେହି ଇନ୍ଦ୍ରଦ୍ୟୁମ୍ନର ଯେ ଦାସ ଅନୁଦାସ
ତାଙ୍କ ଦାସ ଦାସ ଭଣେ ମୁଁ ବୈଷ୍ଣବ ଦାସ ।

—ঃ*ঃ—

## ରାଜାର ନୃସିଂହ ମୂର୍ତ୍ତି ପ୍ରତିଷ୍ଠା

ଜୈମିନି ଉବାଚ

ଏହିରୂପେ ଇନ୍ଦ୍ରଦ୍ୟୁମ୍ନ କରନ୍ତେ ବନ୍ଦନ
ଅନ୍ତରୀକ୍ଷେ ଥାଇ ଯେ କହିଲେ ଭଗବାନ ।
ଆହେ ରାଜା ବିଷାଦିତ ନୁହ ମାନସରେ
ଯା କହିଲେ ନାରଦ ତା କର ହରଷରେ ।
ଶୁଣି ରାଜା ମୁନିଙ୍କ ବଚନେ ଶ୍ରଦ୍ଧାବଳେ
ନିଶ୍ଚୟ କରିବି ଯଜ୍ଞ ମନେ ସ୍ଥିରକଲେ ।
ନାରଦଙ୍କ ଆଗରେ କହିଲେ ନରରାୟ
ଅଶ୍ୱମେଧର ଉଦ୍‌ଯୋଗ କର ମହାଶୟ ।
ନାରଦ ବୋଇଲେ ଶୁଣ ସୂର୍ଯ୍ୟଙ୍କ ନନ୍ଦନ
ନୀଳକଣ୍ଠ ସ୍ଥାନେ ତୁମ୍ଭେ କରସି ଗମନ ।
ବିଶ୍ୱକର୍ମାସୁତମାନେ ମୋହର ସ୍ମରଣେ
ଅଇଲେ ନୃସିଂହାଳୟ ନିର୍ମାଣ କାରଣେ ।
ପଶ୍ଚିମ ମୁଖରେ ତହିଁ ମନ୍ଦିର କରିବ
ନୃସିଂହ ମୂରତି ତୁମ୍ଭେ ସେଠାରେ ସ୍ଥାପିବ ।
ନୃସିଂହଙ୍କ ପ୍ରତିମୂର୍ତ୍ତି ନେଇ ପଞ୍ଚଦିନେ
ସେହିଠାକୁ ଯିବି ମୁହିଁ ଆନନ୍ଦିତ ମନେ ।
ପ୍ରତିମାରେ ସ୍ଥାପିବି ଇନ୍ଦ୍ରିୟ ପ୍ରାଣମନ
ପାପରୁ ପାପ ଯେସନେ ଜଳେ ତହିଁ ରାଜନ ।

ଏହାଶୁଣି ରାଜାକଲେ ସେଠାକୁ ଗମନ
କୀର୍ତ୍ତିମନ୍ତ ନାମେ ବିଶ୍ୱକର୍ମାର ନନ୍ଦନ ।
ତାହାକୁ ଦେଖିଲେ ତହିଁ ଅଛି ସେ ତକାଇ
ନୃସିଂହଙ୍କର ମନ୍ଦିର ଗଢ଼ିବାର ପାଇଁ ।
ରାଜାର ଆଦେଶେ ସେହି ବିଶ୍ୱକର୍ମାସୁତ
ଶୁଭଦିନେ ମନ୍ଦିର ଗଢ଼ିଲା ଅଦଭୁତ ।
ସଙ୍ଗରେ ଭାଇମାନଙ୍କୁ ଘେନି କୀର୍ତ୍ତିମନ୍ତ
ନିର୍ମାଣିଲା ମନ୍ଦିରଟି ସୁନ୍ଦର ଅତ୍ୟନ୍ତ ।
ତହୁଁ ପାଞ୍ଚଦିନ ଅନ୍ତେ ସେ ନାରଦ ମୁନି
ନୃସିଂହ ମୂରତି ଗୋଟି ରଥପରେ ଘେନି ।
ଚଳିଲେ ହରଷମନେ ସଙ୍ଗେ ବିପ୍ରଗଣ
ବେଦଶାସ୍ତ୍ରମାନ ଘେନି କରନ୍ତି ଗମନ ।
ସୁଗନ୍ଧପୁଷ୍ପ ଶୂନ୍ୟରୁ ହୁଏ ବରଷଣ
ଚଉଦିଗେ ସ୍ତବ କରୁଛନ୍ତି ସାଧୁଗଣ ।
ଦିବ୍ୟରଥେ ନୃସିଂହଙ୍କୁ ଘେନି ମୁନିବର
ନୀଳକଣ୍ଠ ସ୍ଥାନେ ତୋଷେ ମିଳିଲେ ସତ୍ୱର ।
ମନୋହର ମୂର୍ତ୍ତି ବିଶ୍ୱକର୍ମାର ନିର୍ମାଣ
ନାରଦ କରିଅଛନ୍ତି ଯେ ପ୍ରତିଷ୍ଠା ପ୍ରାଣ ।
ଆଦ୍ୟମୂର୍ତ୍ତି ନୃସିଂହଙ୍କ ପ୍ରତିମା ବୋଲିଣ
ସେ ନୃସିଂହେ ଦେଖି ଜାଣିଲେ ଯେ ସର୍ବଜନ ।
ତହୁଁ ଉଠି ଇନ୍ଦ୍ରଦ୍ୟୁମ୍ନ ହରଷ ମନରେ
ପ୍ରଦକ୍ଷିଣ କରି ତାଙ୍କୁ ଦଣ୍ଡବତ କରେ ।
ସର୍ବଶୁଭ ବେଳାଜାଣି ନାରଦ ଆପଣେ
ମନ୍ଦିରଭିତରେ ନେଲେ ଦେବଙ୍କୁ ଯତନେ ।
କି କହିବି ସେ ନୃସିଂହ ପ୍ରତିଷ୍ଠା ସମ୍ଭାର
ବହୁବିଧ ଦ୍ରବ୍ୟଜମା ହୋଇଛି ସେଠାର ।
ନାନାବାଦ୍ୟନାଦେ ଉଲ୍ଲସଇ ବସୁନ୍ଧରା
ହରିବୋଲ ହୁଳହୁଳି ଶବଦରେ ପୂରା ।
ସ୍ୱର୍ଗରୁ ଦୁନ୍ଦୁଭି-ନାଦ ହୁଏ ଘନଘନ
ସ୍ତବ କରନ୍ତି ଅମରେ ରହିଣ ଗଗନ ।
ନୃସିଂହଙ୍କ ଆଗେ ଶତଶତ ରତ୍ନଭାର
କୁଢ଼କୁଢ଼ ପୁଷ୍ପରାଶି ଗନ୍ଧ ମନୋହର ।
ଧରା ଲକ୍ଷ୍ମୀଙ୍କ ସହିତ ରତ୍ନବେଦୀ ପର
ଉଜ୍ଜଳ କରନ୍ତି ଶ୍ରୀନୃସିଂହ କଳେବର ।
ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦାଦି ମୁନିସଙ୍ଗେ
ବେଦସ୍ମୃତି ମତେ ସ୍ତବ କରନ୍ତି ସରାଗେ ।

ଜ୍ୟେଷ୍ଠଶୁକ୍ଳ ଦ୍ୱାଦଶୀ ନକ୍ଷତ୍ର ବାୟୁନାମେ
ନୃସିଂହେ ମୂର୍ତ୍ତି ପ୍ରତିଷ୍ଠା କଲେ ସେହ୍ନଦନେ ।
ବୈଶାଖର ଶୁକ୍ଳଚତୁର୍ଦ୍ଦଶୀ ଶନିବାର
ସେହ୍ନଦିନ ନୃସିଂହଙ୍କ ଆଦି ଅବତାର ।
ଏ ଦୁଇଦିନେ ପୂଜିଲେ ନାନାଉପଚାରେ
ଅନ୍ତେ ବ୍ରହ୍ମଲୋକ ପାନ୍ତି ପୁରାଣ ପ୍ରଚୁରେ ।
ପ୍ରତିଦିନ ଯେ ପୂଜନ୍ତି ନୃସିଂହ ମୂରତି
ସର୍ବ ଅମଙ୍ଗଳ ତାଙ୍କ ଘୁଞ୍ଚଇ ଝଟତି ।
ମହାମହୋତ୍ସବ ଇନ୍ଦ୍ରଦ୍ୟୁମ୍ନ ନୃପବର
ନୃସିଂହ ମୂର୍ତ୍ତିଙ୍କି ସ୍ଥାପିଲେ ସେ କ୍ଷେତ୍ରଠାର ।
ଏଥୁଅନ୍ତେ ଅଶ୍ୱମେଧ ଯଜ୍ଞର ବିଧାନ
ବର୍ଣ୍ଣନ କରିବି ଶୁଣିବ ହେ ସୁଜ୍ଞଜନ ।
ଜୈମିନି ଋଷିଙ୍କ ଉକ୍ତ ସୁଧାକଣା ରସ
ପ୍ରକାଶକରଇ ଦୁଃଖୀ ବଇଷ୍ଣବ ଦାସ ।

—ଃ୦ଃ—

## ଇନ୍ଦ୍ରଦ୍ୟୁମ୍ନଙ୍କ ଅଶ୍ୱମେଧ ଯଜ୍ଞ

ଋଷିରୁବାଚ

ଏଥୁ ଅନନ୍ତରେ ଶୌନକାଦି ମୁନିଗଣ
ଜୈମିନିଙ୍କି ପୁଚ୍ଛିଲେ ସେ ବିନମ୍ରେ ବଚନ ।
ଆହେ ବ୍ୟାସଙ୍କର ଶିଷ୍ୟ ତୁମ୍ଭେ ମହାମତି
ଶୁଣାଇଲ ଆମ୍ଭଙ୍କୁ ଯା ଅପୂର୍ବ ଭାରତୀ ।
ସକଳେ ଶ୍ରବଣ କରି ଲଭିଲୁଁ ଆନନ୍ଦ
ପୁଣି ପଚାରୁଛୁଁ ତୁମ୍ଭଙ୍କୁ ହେ ବିପ୍ର ମୋଦ ।
ସେ ଯେ ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନ ନୃପମଣି
କେଉଁ କାର୍ଯ୍ୟ କି ପ୍ରକାରେ ଆରମ୍ଭିଲେ ପୁଣି ।
ନୃସିଂହ ମୂର୍ତ୍ତିଙ୍କି ଭଲେ ପ୍ରତିଷ୍ଠା କରିଣ
ତଦନ୍ତେ କି କଲେ କହ କହ ତପୋଧନ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିମାନେ
ଯେତେପି କହୁଛୁ ମୁଁ ତୁମ୍ଭର ସନ୍ନିଧାନେ ।
ଯେଉଁ ସମୟେ ସେ ଇନ୍ଦ୍ରଦ୍ୟୁମ୍ନ ନରପାଳ
ମହା ସମାରୋହେ ମହୋତ୍ସବକୁ ଭିଆଇ ।
ନରସିଂହ ମୂରତିଙ୍କି ପ୍ରତିଷ୍ଠା ଯେ କଲେ
ତା ଉତ୍ତାରୁ ଅଶ୍ୱମେଧ ଯଜ୍ଞ ଆରମ୍ଭିଲେ ।
ଯଜ୍ଞ ଆଉ ପ୍ରତିଷ୍ଠାର ଦୁଇ ନିମନ୍ତ୍ରଣ
ଏକ କାଳେ କଲେ ନୃପ ସୂର୍ଯ୍ୟଙ୍କ ନନ୍ଦନ ।
ନିମନ୍ତ୍ରଣ କଲେ ଇନ୍ଦ୍ର ଆଦି ଦେବଗଣେ
ଋଷିମୁନି ବେଦଜ୍ଞ ଯାଜ୍ଞିକ ବିପ୍ରଜନେ ।
ଶାସ୍ତ୍ରଜ୍ଞମାନଙ୍କୁ ରାଜା କଲେ ନିମନ୍ତ୍ରଣ
ନିମନ୍ତ୍ରିଲେ ଯେତେ ନ୍ୟାୟ ମୀମାଂସକଗଣ ।
ଧାର୍ମ୍ମିକମାନଙ୍କୁ ନିମନ୍ତ୍ରିଲେ ସେ ଆଦର
ଅଷ୍ଟାଦଶ ବିଦ୍ୟାରେ ଯେ ପଣ୍ଡିତ ପ୍ରବର ।
ସଦାଶୁଦ୍ଧ ବ୍ରହ୍ମଶୁଦ୍ଧ ବୈଷ୍ଣବ ନିକର
ନିମନ୍ତ୍ରଣ କଲେ ସନ୍ନ୍ୟାସୀଙ୍କି ସାଦରେ ।
ଏମନ୍ତେ ଭକ୍ତ ବୃନ୍ଦଙ୍କୁ କଲେ ନିମନ୍ତ୍ରଣ
ଆଦରେ ବୈଷ୍ଣବଗଣେ କହିଲେ ରାଜନ ।
ଧନ୍ୟ ଧନ୍ୟ ମୋର ଭାଗ୍ୟ ଅଛଇ ଅପାର
ଯେଣୁ ଆଗମନ ସର୍ବ ବୈଷ୍ଣବ ଠାକୁର ।
ଏହିମତେ ପ୍ରଶଂସା କରିଣ ନରପତି
ବୈଷ୍ଣବମାନଙ୍କୁ ଚରଣେ କଲେ ଭକ୍ତି ।
ସେ ଉତ୍ତାରୁ ଇନ୍ଦ୍ରଦ୍ୟୁମ୍ନ ବିଚାରି ମାନସେ
ଡାକି ମନ୍ତ୍ରୀଙ୍କି ଘେନାଇ ପରମ ହରଷେ ।
ତ୍ରୈଲୋକ୍ୟ ମଧ୍ୟରେ ଯେତେ ଥିଲେ ନୃପଗଣ
ସମସ୍ତଙ୍କୁ ନିମନ୍ତ୍ରିଲେ ସୂର୍ଯ୍ୟଙ୍କ ନନ୍ଦନ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଆଦିଜନେ
ନିମନ୍ତ୍ରି ଆଣିଲେ ଅତି ହରଷିତ ମନେ ।
ଦୁଇକୋଶ ପର୍ଯ୍ୟନ୍ତେ ସେ ସଭା ମଣ୍ଡାଇଲେ
ନାନା ରତ୍ନେ ଅତି ଯତ୍ନେ ସବୁ ସଜାଇଲେ ।
ଅମଳ୍ୟ ପାଷାଣେ ସଭାମଣ୍ଡପ ଶୋଭନ
ଯଜ୍ଞଶାଳାମାନ ସବୁ ତେସନେ ଘଟଣ ।
ଅତି ଉଚ ସଭା ପୁର ସୁଧା ବିଲେପିତ
ମଣି ମାଣିକ୍ୟ କନକ ହୀରା ବିରାଜିତ ।
କେଉଁ ସ୍ଥାନରେ ସ୍ଫଟିକ ରଜତ ମଣ୍ଡଣି
କାହିଁ କାହିଁ ସୁବର୍ଣ୍ଣର ପଟର ସ୍ଥାଏଣି ।
ଯହିଁକି ଯେମନ୍ତ ସାଜେ ରଚିଲେ ମୋପଡ଼
ସ୍ତମ୍ଭମାନଙ୍କରେ ବେଢ଼ା ପାଟ ସୁନାଜରି ।
ଳେର କେଉ ଦୋଇ ଝୁଲେ ମୁକୁତାର ଝରା
ତୋରଣ ବଉଳା ସବୁଦିଗେ ଅନ୍ତତୋଳା ।
ସ୍ଥାନେ ସ୍ଥାନେ ଗବାକ୍ଷ ଶୋଭଇ ମନୋହର
ତହିଁ ଓହଳନ୍ତି ଯୋଗି ମୁକୁତା ଝାଲର ।

ସଭା ସ୍ଥଳେ ଶୋଭେ ଯେ ବିଚିତ୍ର ଚନ୍ଦ୍ରାତପ
କୁସୁମ ଧଣ୍ଡାମାଳ ଯେ ଅତି ଅପରୂପ ।
ମନୋହର ଚାମର ଝୁଲଇ ଚଉକତି
ପଦ୍ମକଳୀ ହାରମାନ ଝଟକଇ ଅତି ।
ଅଗୁରୁ ଚନ୍ଦନ ଶ୍ରୀକର୍ପୂରରେ ମିଶାଇଣ
ସଭାରେ ପ୍ରତି ସ୍ଥାନରେ କଲେକ ସିଞ୍ଚନ ।
ଚଉପାଶେ ବିରଚିଲେ ବିଚିତ୍ର ସୋପାନ
ସେହି ପାବଚ୍ଛ ସବୁ ଯେ ସ୍ଫଟିକେ ନିର୍ମାଣ ।
ସଭାସ୍ଥଳେ ଯେଉଁ ସବୁ ସ୍ଥାନ ନିର୍ମାଣିଲେ
ଦାଉ ଦାଉ ଝଟକଇ ପ୍ରତ୍ୟେକ ମନ୍ଦିରେ ।
ସୁଧର୍ମା ସଭା ସମାନ ବିରାଜିଲା ସଭା
କି କହିବ ତା ସୌନ୍ଦର୍ଯ୍ୟ ଜନମନ ଲୋଭା ।
ଅତି ସୁନ୍ଦର ଆସ୍ଥାନମାନ ଚମତ୍କାର
ତାହା ଉପରେ ବସିବେ ସାଧୁ ମୁନିବର ।
ଦେଖଣାହାରୀଙ୍କ ପାଇଁ ଉପଯୁକ୍ତ ସ୍ଥାନ
ନିରମାଣ କରାଇଲେ ସେ ଭକ୍ତ ରାଜନ ।
କାହାକୁ ବାରଣ ନାହିଁ ସେହି ସଭା ଠାବେ
ଦେଖିବେ ସଭାର ଶୋଭା ଯେ ଇଚ୍ଛା କରିବେ ।
ସଭା କଡରେ ଶୋଭିତ ରମ୍ୟ ଉପବନ
ସର୍ବ ଋତୁକୁ ସୁମରେ ପୂର୍ଣ୍ଣ ମନୋରମ ।
ତାର ମଧ୍ୟେ ସରୋବରମାନ ସୁ-ଶୋଭିତ
କମଳ କୁମୁଦ ତହିଁ କେତେ ବିକଶିତ ।
ଚକ୍ରବାକ ଡାହୁକ ଚାତକ ବକ ହଂସ
ହଂସରାଳୀ ପାଣିକୁଆ ତିତିର ସାରସ ।
ମାଛରଙ୍କା ଗଙ୍ଗଚିଲ କୁରର ସହିତେ
ସରୋବର ତୀରେ କ୍ରୀଡ଼ା କରନ୍ତି ନିରତେ ।
ସେହି ଜଳଚର ପକ୍ଷୀଙ୍କର ମୃଦୁସ୍ୱନ
ଅତି ସୁମଧୁର ଅଟେ କର୍ଣ୍ଣର ସାୟନ ।
ସୁଗନ୍ଧ ନିର୍ମଳ ଜଳ ଶୀତଳ ମଧୁର
ସ୍ଫଟିକ-ପାବଚ୍ଛମାନ ତଥି ମନୋହର ।
ଯଜ୍ଞଶାଳାର କି ଶୋଭା ବରନି ନହୁଏ
ନିର୍ମାଣ କରି ଅଛନ୍ତି ବିଶ୍ୱକର୍ମା ଯୋଏ ।
ଯେସନେକ ଯଜ୍ଞଶାଳା ମରୁତରାଜାର
ସେହିପରି ଏହି ଯଜ୍ଞଶାଳା ଚମତ୍କାର ।
ଅପୂର୍ବ ଶୋଭା ଦିଶଇ ବିବିଧ ରତନେ:
ତୁଳନା ଦେବାକୁ କିଛି ନାହିଁ ଏ ଭୁବନେ ।

ଦେଖି ଶୁଭଦିନ ଶୁଭ ନକ୍ଷତ୍ର ସୁଯୋଗ,
ଯଜ୍ଞ ଆରମ୍ଭିଲେ ଇନ୍ଦ୍ରଦ୍ୟୁମ୍ନ ମହାଭାଗ ।
ଯଥା ଯୋଗ୍ୟ ସ୍ଥାନେ ବସାଇଲେ ସର୍ବଜନେ
ନୃପ ଦେବଗଣ ଋଷିଗଣ ମଧ୍ୟ ସ୍ଥାନେ ।
ଯଥା ଯୋଗ୍ୟ ଦ୍ରବ୍ୟେ କଲେ ସର୍ବଙ୍କି ବରଣ
ବିଧାନେ ପୂଜିଲେ ଦେବରାଜେ ବସାଇଣ ।
କୁବେର ଆଦିଙ୍କି ରାଜା କଲେକ ଅର୍ଚ୍ଚନା
ଧନ ପାଇ ହେଲେ ସର୍ବେ ଆନନ୍ଦିତ ମନା ।
ଇନ୍ଦ୍ରଙ୍କୁ ବୋଇଲେ ରାଜା ଯୋଡ଼ି ବେନିହାତ
ମୋର ନିବେଦନ କିଛି ଶୁଣ ଶଚୀନାଥ ।
ଯଦି ମନେକର ମୁହିଁ ଇନ୍ଦ୍ରତ୍ୱ କାରଣେ
ଏ ଯଜ୍ଞ କରୁଛି ଏହା ନ ଭାବ ହେ ମନେ ।
ତୁମ୍ଭେମାନେ ସେବ ଯେଉଁ ମାଧବ ଚରଣ
ବାଲୁକା ମଧ୍ୟରେ ସେ ହୋଇଲେ ଅଦର୍ଶନ ।
ଯଜ୍ଞ ଆରମ୍ଭିଲି ପୁଣି ତାହାଙ୍କ ପ୍ରକାଶେ
ପ୍ରସନ୍ନେ ମୋତେ ଆଦେଶ କରିହେ ବିଶେଷେ ।
ଯାବତ ନ ହୁଏ ପୂର୍ଣ୍ଣ ଏହି ଯଜ୍ଞ ମୋର
ଦେବଗଣ ସହିତରେ ରହି ଏହିଠାର ।
ଶୁଣି ହସି କହେ ଇନ୍ଦ୍ର ଘେନି ଦେବଗଣେ
ହେ ରାଜନ ଯଜ୍ଞ କର ସୁଖେ ହର୍ଷମନେ ।
ତୁମ୍ଭର ଏ ଚେଷ୍ଟା ଅଟେ ସବୁର କଲ୍ୟାଣ
ସକଳେ ଦେଖିବେ ପୁଣି ପ୍ରଭୁ ଭଗବାନ ।
ଆମ୍ଭମାନଙ୍କ କପଟ ନାହିଁ ଏହି କାର୍ଯ୍ୟେ
ସହାୟ ରହିଛୁଁ ଆମ୍ଭେ ଦେବତା ସମାଜେ ।
ଇନ୍ଦ୍ରାଦି ଦେବଙ୍କ ବାଣୀ ଇନ୍ଦ୍ରଦ୍ୟୁମ୍ନ ଶୁଣି
ହରଷରେ ଯଜ୍ଞ ଆରମ୍ଭିଲେ ସେହିକ୍ଷଣି ।
ପର୍ବତ ସମାନେ କୁଶ ସମିଧ ରହିଛି
ଅସଂଖ୍ୟ ଗୋଘୃତ ଭାଣ୍ଡ ଜମାହୋଇଅଛି ।
କିଏ ବା କଳି ପାରିବ ସେ ଯଜ୍ଞ ସମ୍ଭାର
ରାଜଚକ୍ରବର୍ତ୍ତୀଙ୍କର ଯେବଣ ବେଭାର ।
ନାହିଁ ନଥିବ ନୋହିବ ଭବିଷ୍ୟତେ ତାହା
ଧନ୍ୟ ସେ ଶ୍ରୀହରି ଭକ୍ତ ରାଜା ପୁଣ୍ୟଦେହା ।
ନାନା ଉପହାରେ ଶ୍ରୀପତିଙ୍କି ପୂଜି ତହିଁ
ପିତୃ ଦେବଙ୍କୁ ପୂଜିଲେ ସାବଧାନ ହୋଇ ।
ସ୍ୱସ୍ତି ବୃଦ୍ଧି ପଢ଼ୁଛନ୍ତି ବୈଦିକ ବ୍ରାହ୍ମଣେ
ବିଧାନେ ପୂରଣ [illegible] ହୋମଗଣେ ।

ତଦନ୍ତେ ସଦସ୍ୟମାନେ ନୃପ ପତ୍ନୀ ସାଥେ
ଅଗ୍ନି ଆବାହନ କରି ପୂଜିଲେ ଶ୍ରୀନାଥେ ।
ଅଶ୍ୱବର ଆଣି ଜଳେ ପ୍ରୋକ୍ଷଣ କଲେ
ଜୟ ପତ୍ରଲେଖି ସେ ଅଶ୍ୱକୁ ଛାଡ଼ିଦେଲେ ।
ଲେଖିଲେ ଯାହାର ଶକ୍ତି ଥାଏ ଅଶ୍ୱ ଧର
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ସହିତ ଯୁଦ୍ଧ କର ।
ଏହିରୂପେ ପତ୍ର ଲେଖି ଅଶ୍ୱ ଛାଡ଼ିଦେଲେ
ତାର ପଛେ ସେନାମାନେ ଅସଂଖ୍ୟ ଚଳିଲେ ।
ଏଣେ ମୃଗଚର୍ମାସନେ ରାଜା ଭକ୍ତିମାନ
ମୌନ ହୋଇଛନ୍ତି ଚନ୍ଦ୍ରଚୂଡ଼ଙ୍କ ସମାନ ।
ଅପାଙ୍ଗେ ଆଦେଶ କଲେ ନିଜ ମନ୍ତ୍ରୀଗଣେ
ନିମନ୍ତ୍ରିତଗଣେ ତୋଷ କରାଅ ଭୋଜନେ ।
ଇଙ୍ଗିତ ବୁଝି ସେ ବିଚକ୍ଷଣ ମନ୍ତ୍ରୀଗଣ
ଯୋଗାଡ଼ କଲେ ସେ ଗଣି ଗଣି ପାତ୍ରମାନ ।
ଦେବତାଙ୍କ ପାଇଁ ମଣିମୟ ରତ୍ନପାତ୍ର
ମୁନି ରାଜାଙ୍କର ପାତ୍ର ସୁବର୍ଣ୍ଣେ ନିର୍ମିତ ।
କ୍ଷତ୍ରିୟ ବୈଶ୍ୟଙ୍କ ପାଇଁ ରୌପ୍ୟର ବାସନ
କାଂସ୍ୟ ପାତ୍ରମାନ ଶୂଦ୍ରଙ୍କର ପାଇଁ ଜାଣ ।
ଭୋଜନ ଅନ୍ତେ ପାତ୍ରକୁ ଫିଙ୍ଗନ୍ତି ସକଳେ
ନିତ୍ୟ ନୂଆ ନୂଆ ପାତ୍ରେ ଭୁଞ୍ଜନ୍ତି କୁଶଳେ ।
ରାଜ ନିମନ୍ତ୍ରଣେ ଆସିଥିଲେ ଯେତେଜନେ
ପାଞ୍ଚଶବର୍ଷ ହରଷେ ରହିଲେ ସେମାନେ ।
ବିବିଧ ବ୍ରାହ୍ମଣେ ପାକ କରନ୍ତି ନିତ୍ୟହିଁ
ମନ୍ତ୍ରେ ତନ୍ତ୍ରେ ବିଶାରଦ ଦେବତାଙ୍କ ପାଇଁ ।
ମାତଶାସ୍ତ୍ରେ ବିଶାରଦ ନରଙ୍କ କାରଣି
ଷଡ଼ବିଧ ଅନ୍ନପାକ କରନ୍ତି ଅର୍ପଣ ।
ଦେବଗଣ କ୍ଷୁଧା ତୃଷ୍ଣାହୀନ ସୁଧାପାନେ
ତଥାପି ଭୁଞ୍ଜନ୍ତି ସେହୁ ଚମତ୍କାର ମନେ ।
ପାତାଳୁ ଆଗତ ଯେତେ ନାଗରାଜଗଣ
ସୁଧାହୁଁ ଅଧିକ ତାଙ୍କୁ କରାନ୍ତି ଭୋଜନ ।
ସୁଗନ୍ଧ ପୁଷ୍ପର ମାଳା କସ୍ତୁରୀ ଚନ୍ଦନ
ପଟ୍ଟବସ୍ତ୍ର ଉପାଧାନ ସହିତ ଆସନ ।
କଲେ ସେ ପଲଙ୍କଶଯ୍ୟା ସମସ୍ତଙ୍କ ପାଇଁ
ସ୍ୱର୍ଣ୍ଣଦଣ୍ଡ ଚାମର ବିଞ୍ଚନ୍ତି ସବେ ତହିଁ ।
କର୍ପୂର ଲବଙ୍ଗ ଜାତି ତାମ୍ବୂଳ ବିଡ଼ିଆ
ସମସ୍ତଙ୍କ ପାଇଁ ଅତି ଯତନରେ ଥୁଆ ।
ଭରତଙ୍କ ଶିକ୍ଷାନାଟ ଗୀତକୁ ଗୁଆଇ
ଏମନ୍ତେ ତୋଷିଲେ ସମସ୍ତଙ୍କୁ ନରସାଇଁ ।
ତ୍ରିଭୁବନବାସୀଏ ମଣିଲେ ଚମତ୍କାର
ଏଭଳି ଯଜ୍ଞ ନୋହିଛି ନୋହିବ ଆଉର ।
ଏହିରୂପେ ଇନ୍ଦ୍ରଦ୍ୟୁମ୍ନ ଯଜ୍ଞବିଧି କଲେ
ପୃଥିବୀ ପାତାଳ ସ୍ୱର୍ଗ ଯଶେ ପୂର୍ଣ୍ଣ ଭଲେ ।
ଯାଜ୍ଞବଲ୍କ୍ୟ ଆଦିକରି ଯେତେ ଋଷିମାନେ
ଯଜ୍ଞେ ହୋତାହୋଇ ଯଜ୍ଞକରାନ୍ତି ରାଜନେ ।
ବଶିଷ୍ଠାଦି ସପ୍ତଋଷି ସଦସ୍ୟ ହୋଇଣ
ଯଜ୍ଞର ହୋଇଲେ ସାକ୍ଷୀ ଥାଇ ସଭାସ୍ଥାନ ।
ଯେସବୁ ଜନ କରନ୍ତି ବିଧିର ବିଧାନ
ମନ୍ତ୍ର ପଢ଼ନ୍ତି ସେମାନେ ହୋଇ ସାବଧାନ ।
ଯୋଗକର୍ମ ଆଚରନ୍ତି ଯୋଗୀ ଜନଗଣ
କର୍ମକାରୀମାନେ ବେଦ କର୍ମରେ ନିପୁଣ ।
ଏଣୁ ସ୍ୱରେ ବର୍ଣ୍ଣେ ମନ୍ତ୍ରହୀନ କେ ନୁହନ୍ତି
ବେଦଶାସ୍ତ୍ର ଅନୁସାରେ ମନ୍ତ୍ର ଉଚ୍ଚରନ୍ତି ।
ସଭାରେ ଅଛନ୍ତି ଯେତେ ତାପସ ମଣ୍ଡଳୀ
ବାକ୍ୟ ଉପବାକ୍ୟ ମନ୍ତ୍ର ପାଠେ କୁତୂହଳୀ ।
ସକଳେ କରନ୍ତି ହରିଭକ୍ତିର ବିସ୍ତର
ହରିଲୀଳା ଗୀତ ବଖାଣନ୍ତି ବାରମ୍ବାର ।
ଅଗ୍ନି ମଧ୍ୟେ ସାକ୍ଷାତ ହୋଇଣ ଦେବଗଣ
ହରଷ ମନରେ ହବି କରନ୍ତି ଭୋଜନ ।
ଅମୃତ ସମାନ ବ୍ରହ୍ମା ହବିକ ସୃଜିଲେ
ତାହାଭୁଞ୍ଜି ବଳବନ୍ତ ଚିରଜୀବୀ ହେଲେ ।
ଅଗ୍ନିମଧ୍ୟେ ହବି ଭୋଗକରି ଦେବଗଣ
ବାସେପୁଣି ଉପହାର କରନ୍ତି ଭୋଜନ ।
ଚିରକାଳ ସେ ଅମରେ ତେଜି ସ୍ୱର୍ଗପୁରୀ
ରାଜାର ପ୍ରୀତିରେ ତାହା ମନରୁ ପାଶୋରି ।
ଆନନ୍ଦେ ଯଜ୍ଞ ସ୍ଥାନରେ ରହିଲେ ସକଳେ
ସ୍ୱର୍ଗ ସୁଖଠାରୁ ଅତିସୁଖ ମନେ କଲେ ।
ପାତାଳ ନିବାସୀ ଯେତେ ନାଗରାଜଗଣ
ପାତାଳହୁଁ ସୁଖେ ଏଥି କରନ୍ତି ଭୋଜନ ।
ପାତାଳକୁ ବାହୁଡ଼ିବା ଇଚ୍ଛା ସେ ନକଲେ
ଇନ୍ଦ୍ରଦ୍ୟୁମ୍ନପୁରରେ ସବେ ସୁଖେ ବିହରିଲେ ।
ପୃଥିବୀ ଭ୍ରମଣ କରି ଘୋଟକ ଅଇଲା
ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତାପେ କେହି ନ ବାନ୍ଧିଲା ।

ସ୍ମୃତିକାର କଳ୍ପକାର ଶାସ୍ତ୍ରଜ୍ଞମାନଗଣ
ଯଜ୍ଞ ବିଶାରଦ ସଦାସ୍ୟରେ ବିଚକ୍ଷଣ ।
ଅବଭୃଥ ସମାପିଲେ ଅଗ୍ନିସେ ଆଧାନ
ବିଧିମତେ ଏକ ଅଶ୍ୱମେଧ କଲେ ପୂର୍ଣ୍ଣ ।
ପୁନଶ୍ଚ ଅପର ଯଜ୍ଞ ରାଜା ଆରମ୍ଭିଲେ
ପ୍ରଥମରୁଁ ଶ୍ରଦ୍ଧାସେ ଅଧିକ ବଢ଼ାଇଲେ ।
ଏମନ୍ତେ ଯଜ୍ଞ କରନ୍ତି ଭକ୍ତ ନରପତି
ତ୍ରୈଲୋକ୍ୟବାସୀଙ୍କ ସଦା ଆନନ୍ଦ ବଢ଼ାନ୍ତି ।
ଜଗନ୍ନାଥଙ୍କ ଦୟାରୁ ବ୍ରହ୍ମାଙ୍କ ଆଦେଶ
କ୍ରମେ ସହସ୍ରେକ ଯଜ୍ଞ କଲେ ପରକାଶ ।
ଏକଊଣା ସହସ୍ରେଯଜ୍ଞ କ୍ରମେ ଶେଷ କଲେ
ସହସ୍ର ପୂର୍ଣ୍ଣ ଯଜ୍ଞରେ ଦୀକ୍ଷିତ ହୋଇଲେ ।
ସାମାନ୍ୟ ନୁହନ୍ତି ଇନ୍ଦ୍ରଦ୍ୟୁମ୍ନ ନରପତି
ଶ୍ରୀଜଗନ୍ନାଥଙ୍କ ପଦେ ବିକଛନ୍ତି ମତି ।
ନୀଳାଚଳେ ଉଡ଼ାଇବାପାଇଁ କୀର୍ତ୍ତିଧ୍ୱଜା
ଦୃଢ଼ବ୍ରତ କରିଛନ୍ତି ସେହି ମହାରାଜା ।
ତେଣୁ ଦରଶନ ଦେବେ ଜଗତମୋହନ
ଚତୁର୍ଦ୍ଧାମୂର୍ତ୍ତିରେ ବିରାଜିବେ ଭଗବାନ ।
ଭକତଭାବ ରଜ୍ଜୁରେ ବନ୍ଧନ ଶ୍ରୀହରି
ଧନ୍ୟ ସେହି ଇନ୍ଦ୍ରଦ୍ୟୁମ୍ନ ଭକ୍ତ ଦଣ୍ଡଧାରୀ ।
କରାଇବେ ଦାରୁବ୍ରହ୍ମ ମୂରତି ପ୍ରକାଶ
ସେ ନୃପ ଚରଣ ବନ୍ଦେ ବଇଷ୍ଣବ ଦାସ ।

—×—

## ଇନ୍ଦ୍ରଦ୍ୟୁମ୍ନଙ୍କର ଭଗବତ ଦର୍ଶନ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ସୁଧାସାର ଚରିତ ମୁଁ କରିବି ବଖାଣ ।
ସହସ୍ରେକ ଯଜ୍ଞ ପୂର୍ଣ୍ଣଯୋଗେ ନରନାଥ
ସର୍ବଶୁଭ ବେଳାରେ ଯେ ହୋଇଲେ ଦୀକ୍ଷିତ ।
ଦିନୁଦିନ ପୁଣ୍ୟବୃଦ୍ଧି ହୋଇଲା ତାଙ୍କର
ଯଶ କୀର୍ତ୍ତି ପ୍ରବେଶିଲା ତ୍ରୈଲୋକେ ଆବର ।
ସୋମରସେ ଯେଉଁଦିନ ଯଜ୍ଞକଲେ ନୃପ
ସେହିଦିନୁ ସାତଦିନେ ହେ ମୁନି କଳାପ ।
ରାତ୍ରି ଚତୁର୍ଥ ପ୍ରହରେ ରାଜା ଧ୍ୟାନକଲେ
ସେ ଧ୍ୟାନ ନୟନେ ଅତି ବିଚିତ୍ର ଦେଖିଲେ ।

ସ୍ଫଟିକରେ ଶ୍ୱେତଦ୍ୱୀପ ଅପୂର୍ବ ସୁନ୍ଦର
ପ୍ରତ୍ୟକ୍ଷପରି ଦେଖିଲେ ଭକ୍ତ ନରବର ।
ତା ଚଉପାଖେ ବେଢ଼ିଛି କ୍ଷୀରସିନ୍ଧୁ ଜଳ
ଦେଖି ପ୍ରେମଜଳେ ପୂର୍ଣ୍ଣ ନୟନ ଯୁଗଳ ।
କଳ୍ପତରୁମାନ ସବୁ ପୁଷ୍ପଗନ୍ଧେ ଭରା
ଅମୋଦରେ ଚହଟଇ ଦଶଦିଗ ସାରା ।
ଶୁଭ୍ର ରକ୍ତ ବର୍ଣ୍ଣେ ଶଙ୍ଖଚକ୍ର ଚିହ୍ନମାନ
ପ୍ରତିଅଙ୍ଗେ ଅଳଂକୃତ ଅପୂର୍ବ ଶୋଭନ ।
ଫଳେ ଡାଳେ ବକଳରେ ଅନ୍ତରେ ବାହାରେ
ଶଙ୍ଖ ଚକ୍ର ଚିହ୍ନମାନ ଦିଶେ ମନୋହରେ ।
ସାକ୍ଷାତେ ସେ କଳ୍ପତରୁ ବିଷ୍ଣୁଙ୍କ ମୂରତି
ନେତ୍ରଭରି ଦରଶନ କଲେ ନରପତି ।
ସେହି ଶ୍ୱେତଦ୍ୱୀପ ମଧ୍ୟ ଅପୂର୍ବ ମଣ୍ଡପ
ମଣି ରତ୍ନରେ ନିର୍ମିତ ଶୋଭା ଅପରୂପ ।
ତାରମଧ୍ୟେ ଝଟକଇ ରତ୍ନ ସିଂହାସନ
ମଧ୍ୟାହ୍ନ ଭାସ୍କର ଜିଣି ତାହାର କିରଣ ।
ମନ୍ଦ ମନ୍ଦ ହୋଇ ବହେ ଶୀତଳ ପବନ
କୁସୁମ ସୁବାସେ ଝଙ୍କାରନ୍ତି ଅଳିଗଣ ।
ସେହି ସିଂହାସନେ ରାଜା କରଇ ଦର୍ଶନ
ନବୀନ କିଶୋରମୂର୍ତ୍ତି କାନ୍ତି ଶ୍ୟାମଘନ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚାରି କରେ
ମନୋହର ବନମାଳା ଲମ୍ବିଛି ଗଳାରେ ।
କଣ୍ଠେ କଉସ୍ତୁଭ ମଣି ଶ୍ରୀବତ୍ସ ଲାଞ୍ଛନ
ସରି ସରି ମୁକ୍ତାହାର ପରମ ଶୋଭନ ।
ଅତି ଅନୁପମ ତହିଁ ବୈଜୟନ୍ତୀ ହାର
ଇନ୍ଦ୍ରନୀଳମଣି ଛଟା ଅତି ଚମତ୍କାର ।
କଟିରେ ଶୋଭା ଦିଶଇ ସୁବର୍ଣ୍ଣ ଉତ୍ତରୀ
ଶିରପରେ କିରୀଟ ମୁକୁଟ ମନୋହାରୀ ।
ଶ୍ରବଣ ଯୁଗଳେ ରତ୍ନ ମକର କୁଣ୍ଡଳ
ଦାଉଦାଉ ବିରାଜଇ ଶ୍ରୀଗଣ୍ଡ ମଣ୍ଡଳ ।
ସର୍ବାଙ୍ଗ ସୁନ୍ଦର ନବ ଲାବଣ୍ୟ ପ୍ରତିମା
ସୌନ୍ଦର୍ଯ୍ୟ ସମ୍ପଦସାର କି ଦେବା ଉପମା ।
ବାହେ ରତ୍ନବାଜୁବନ୍ଧ ବାହୁଟି କଙ୍କଣ
ଅଙ୍ଗୁଳିମାନଙ୍କେ ରତ୍ନ ମୁଦ୍ରିକା ଘଟଣ ।
କଟିତଟରେ ମେଖଳା ସୁରତ୍ନ କିଙ୍କିଣ
ସୁବର୍ଣ୍ଣର ସୂତା ତହିଁ ଝଟକଇ ପୁଣି ।

ସୁକ୍ଷ୍ମୀନ ପୀତବସନ ଯୁଗ ପରିଧାନ
ନେତର କାଛେଣି ତହିଁ ବିଚିତ୍ର ଶୋଭନ ।
ପଦ୍ମଚରଣ ଯୁଗଳେ ନୂପୁର ବାଜେଣି
ମହାମୂଲ୍ୟ ମଣିଗଣେ ଅଳଙ୍କାର ଶ୍ରେଣୀ ।
ଶ୍ରୀଅଙ୍ଗର ତେଜ ବିରାଜଇ ଝଳମଳ
ଅକଳଙ୍କ ଚନ୍ଦ୍ରମୁଖେ ହାସ ସୁମଞ୍ଜୁଳ ।
ପକ୍ୱବିମ୍ବାଧରୁ ଝରେ ସୁଧାରସ ଧାର
ଶକ୍‌କଣ ଚିବୁକ ଅତିଶୟ ମନୋହର ।
ଏମନ୍ତ ରୂପକୁ ଦେଖି ଭକ୍ତ ନରପତି
ପ୍ରେମରେ ଆକୁଳ ହେଲା ତାହାଙ୍କର ମତି ।
ଭାବଭୋଳେ ନିଜଅଙ୍ଗ ନ ପାରିଲେ ଧରି
ନୟନ ଯୁଗଳୁ ପ୍ରେମ ଅଶ୍ରୁ ପଡ଼େ ଝରି ।
ସେହି ସୁନ୍ଦର ମୂର୍ତ୍ତିଙ୍କ ଦକ୍ଷିଣ ପାରୁଶେ
ମହାମତ୍ତ ହଳଧର ମୂର୍ତ୍ତି ଶୋଭାଦିଶେ ।
କୋଟିଚନ୍ଦ୍ର ଜିଣି ଶୋଭା ଧବଳ ବଦନ
ହିମାଦ୍ରି ଶିଖରସମ ତନୁ ଅନୁପମ ।
ମସ୍ତକ ଉପରେ ସପ୍ତଫଣୀ ଶ୍ରୀମୁକୁଟ
ଛତ୍ର ଆକାରେ ଶୋଭଇ କାନ୍ତି ଝଟଝଟ ।
ଶ୍ରବଣେ ମଣି କୁଣ୍ଡଳ ଦିଶଇ ଉଜ୍ଜ୍ୱଳ
ସର୍ବଦା ଘୂର୍ଣ୍ଣିତ ତାଙ୍କ ନୟନ ଯୁଗଳ ।
ଶ୍ରୀକରେ ଶଙ୍ଖ ଚକ୍ର ଲଙ୍ଗଳ ମୂଷଳ
ରଜତକାନ୍ତି ତାଙ୍କର ଅତି ସୁମଞ୍ଜୁଳ ।
ଦିବ୍ୟ ମଣିମୟ ହାର କେୟୁର ବଳୟ
ମୁଦ୍ରିକା ଆଦି ଭୂଷଣେ ଶୋଭା ଅତିଶୟ ।
କଟିତଟେ କ୍ଷୁଦ୍ର ଘଣ୍ଟି ତହିଁ ସୁନାସୂତା
କନ୍ଧ ଉପରେ ବିରାଜେ ସୁବର୍ଣ୍ଣ ପଇତା ।
ନୀଳାମ୍ବର ପରିଧାନ ବିଚିତ୍ର ମାଧୁରୀ
ଗଳେ ଗଜମୋତି ହାର ଲମ୍ବେ ସରି ସରି ।
ନାନା କୁସୁମର ମାଳା ଆଜାନୁଲମ୍ବିତ
ଦୟଣା ମରୁଆ ଚମ୍ପା ମାଳ ସୁଶୋଭିତ ।
ଚରଣ ଯୁଗଳେ ସାତଜ ରତନ ମଞ୍ଜୀର
ବାଜେଣିବଳା ସହିତ ଦିଶେ ମନୋହର ।
ବାରୁଣୀ ମଦିରା ପାନେ ନିରନ୍ତର ଭୋଳା
ଚନ୍ଦ୍ରମୁଖକୁ ମାନଇଁ କି ସୁନ୍ଦର ଡୋଳା ।
ହସିତ ରଙ୍ଗଅଧରୁ ସୁଧାପଡ଼େ ଝରି
କମ୍ବୁଜିଣା କଣ୍ଠେ ଶୋଭେ ରତ୍ନ ହାରସରି ।

ଶ୍ରୀହରିଙ୍କର ଦକ୍ଷିଣେ କୁଙ୍କୁମ ବରଣୀ
ପଦ୍ମାସନା ବିଧୁମୁଖୀ ଭଦ୍ରା ଠାକୁରାଣୀ ।
ମଧୁରହାସିନୀ ଦେବୀ ସୁଶୁଭ୍ର ଲୋଚନା
ତ୍ରୈଲୋକ୍ୟ ମୋହିନୀ ଅନୁପମା ସୁଲଳନା ।
ଜଗତନାଥଙ୍କ ବାମେ ଚକ୍ର-ସୁଦର୍ଶନ
କୋଟି ରବି ଜିଣି ତେଜ ଭୁବନ ମୋହନ ।
ମନୋହରେ ବିରାଜନ୍ତି ଲକ୍ଷ୍ମୀ ଜଗନ୍ମାତା
ପଦ୍ମାଳୟା ପଦ୍ମଗନ୍ଧା ସଜ ପଦ୍ମହସ୍ତା ।
ସିନ୍ଧୁଜେମା ବୋଲି ଯେ ବିଖ୍ୟାତା ତିନିପୁରେ
ସେହି ଲାବଣ୍ୟ ପ୍ରତିମା ବିଜୟେ ବାମରେ ।
ସମ୍ମୁଖରେ ଯୋଡ଼କର ଛନ୍ତି ପ୍ରଜାପତି
ଜୟ ଜଗନ୍ନାଥ ବୋଲି ସ୍ତୁତି ସେ କରନ୍ତି ।
ସନକାଦି ମୁନିମାନେ ରହି ଶ୍ରୀସମୁଁରେ
ନାନାମତେ ସ୍ତୁତି କରୁଛନ୍ତି ଯୋଡ଼କରେ ।
ସ୍ୱପ୍ନେ ଇନ୍ଦ୍ରଦ୍ୟୁମ୍ନ ରାଜା କଲେ ଦରଶନ
ଅତି ଅଦଭୁତ ଜ୍ୟୋତିର୍ମୟ ଭଗବାନ ।
ଚତୁର୍ଦ୍ଧାମୂରତିଙ୍କି ସେ ଦେଖି ଭାବଭୋଳେ
ପ୍ରେମ ଗଦଗଦେ ଆପଣାକୁ ପାଶୋରିଲେ ।
ଧ୍ୟାନଯୋଗେ ନରପତି ଆରମ୍ଭିଲେ ସ୍ତବ
ନମୋ ଜଗତର ଆତ୍ମା ଜୟ ଶ୍ରୀମାଧବ ।
ନମୋ କରୁଣା-ସାଗର ତ୍ରୈଲୋକ୍ୟମୋହନ
ନମୋ ତ୍ରିଗୁଣ ଅତୀତ ଭକ୍ତ ପ୍ରାଣଧନ ।
ନମୋ ପତିତପାବନ ଦୀନଜନ ବନ୍ଧୁ
ନମୋ ଅଧମତାରଣ ମହିମାର ସିନ୍ଧୁ ।
ନମୋ ଗୁଣ-ପ୍ରକାଶକ ପ୍ରକୃତିର ପାର
ନମୋ କୈବଲ୍ୟ ଦାୟକ ତ୍ରୈଲୋକ୍ୟର ସାର
ନମୋ ପୁନନିର୍ମଳ ଶୁଦ୍ଧ ବିଜ୍ଞାନ ସ୍ୱରୂପ
ନମୋ ଚଉଦଭୁବନ ମୂଳସ୍ତମ୍ଭ ରୂପ ।
ନମୋ ସଂସାରୀଙ୍କ ଦୁଃଖ ଅନ୍ଧକାରହାରୀ
ନମୋ ଶରଣ ପଞ୍ଜର ପରିତ୍ରାଣକାରୀ ।
ନମୋ ଲୀଳାକାର କୋଟି ବ୍ରହ୍ମାଣ୍ଡ ରଚକ
ନମୋ ମାନ ଉଦ୍ଧାରଣ ଗୋଲୋକ ନାୟକ ।
ନମୋ ସୂର୍ଯ୍ୟ ଚନ୍ଦ୍ର ସ୍ୱପ୍ରକାଶୀ ଭଗବାନ
ନମୋ ଜଠରାଗ୍ନି ରୂପ ନମୋ ନାରାୟଣ ।
ନମୋ ସର୍ବରୂପୀ ହରି ନିତ୍ୟ ସନାତନ
ନମୋ ସର୍ବ ଅନ୍ତର୍ଯ୍ୟାମୀ ପ୍ରଭୁ ଜନାର୍ଦ୍ଦନ ।

ନମୋ ସୁଣଶୀଳ ନେତ୍ର ନୀଳମଣି ଗାତ୍ର
ନମୋ ଭକତ ବତ୍ସଳ ଅଖିଳ ସାମନ୍ତ ।
ନମୋ ଧାତାର ବିଧାତା ଅମର ବନ୍ଦନ
ନମୋ ସର୍ବ ଅବତାରୀ ଗୋପୀ ପ୍ରାଣଧନ ।
ନମୋ ମୁନିମନ ହଂସ ଯୋଗୀଜନ ବନ୍ଦ୍ୟ
ନମୋ କେଶବ ମାଧବ ମୁରାରି ମୁକୁନ୍ଦ ।
ନମୋ ଗୋବିନ୍ଦ ଗୋପାଳ ଯଜ୍ଞେଶ ଶ୍ରୀପତି
ନମୋ ଶ୍ରୀମଧୁସୂଦନ ଅଗତିର ଗତି ।
ନମୋ ତ୍ରିବିକ୍ରମ ହରି ଗଜେନ୍ଦ୍ର ମୋକ୍ଷଣ
ନମୋ ବାମନ ନୃସିଂହ ଅରକ୍ଷ ରକ୍ଷଣ ।
ନମୋ ଶ୍ରୀଧର ଶ୍ରୀକର ଅଚ୍ୟୁତ ଦେବେଶ
ନମୋ ପଦ୍ମନାଭ ଦାମୋଦର ହୃଷୀକେଶ ।
ନମୋ ଦୈତ୍ୟ ଦାନବାରି ପ୍ରଭୁ ଆଦିମୂଳ
ନମୋ ପରମାର୍ଥଦାତା କୃଷ୍ଣ ନନ୍ଦବାଳ ।
ନମୋ ଶ୍ରୀରାମ ରାଘବ ରାବଣ ଅନ୍ତକ
ନମୋ ଶ୍ୟାମଳାଙ୍ଗ ଗତି ମୁକତି ଦାୟକ ।
ନମୋ ରସରାଜ କୋଟି କନ୍ଦର୍ପ ମୋହନ
ନମୋ ନବ ନଟବର ମୂରତି ଲାବଣ୍ୟ ।
ନମୋ ଗୋପବେଶଧାରୀ ବୃନ୍ଦାବନଚନ୍ଦ୍ର
ନମୋ ଶ୍ରୀରାଧାରମଣ ପ୍ରଭୁ ଆନନ୍ଦକନ୍ଦ ।
ନମୋ ଭବ-ବିନୋଦନ ଭବାବ୍ଧି ତାରଣ
ନମୋ ଯଦୁକୁଳ ବଧୂ ଶାରଙ୍ଗ ଧାରଣ ।
ଅତି ଗରୁ ଅତି ଶ୍ରେଷ୍ଠ ତୁମ୍ଭେ ଶୁଦ୍ଧ ଅତି
ଭକ୍ତଙ୍କୁ ନିକଟ ଅଭକ୍ତଙ୍କୁ ଦୂରେ ସ୍ଥିତି ।
ଅତି ସୂକ୍ଷ୍ମରୂପୀ ଅତି ସ୍ଥୂଳ ଶ୍ରୀନିବାସ
ବିଶ୍ୱ ବିମୋହନ ମୂର୍ତ୍ତି ବିରାଟ ପୁରୁଷ ।
ଶ୍ରୀବତ୍ସ ଲାଞ୍ଛନ ବିଭୁ ଶ୍ରୀପୁରୁଷୋତ୍ତମ
ମହା ମହିମା ଜଳଧି ବାଞ୍ଛା କର ପୂର୍ତ୍ତି ।
ତୁମ୍ଭେ ସୁ-ଗୋପିତ ପଞ୍ଚକୋଶର ମଧ୍ୟରେ
ଆପଣେ ନ ଜଣାଇଲେ କେବା ଜାଣିପାରେ ।
ଦୀନବନ୍ଧୁ ଜଗନ୍ନାଥ କର ମୋତେ ତ୍ରାଣ
ଅଭୟ ପଦ୍ମଚରଣେ ସମର୍ପିଛି ପ୍ରାଣ ।
ଅନାଥ ବାନ୍ଧବ ଅହେ ପ୍ରଭୁ ରମାସାଇଁ
କ୍ଳେଶ ଦୂରକଲି ତବ ଦରଶନ ପାଇ ।
ହେ ସଚ୍ଚିଦାନନ୍ଦ ରୂପ ସତ୍ୟ ସନାତନ
ଅଖିଳ ବିହାରୀ ବୈଷ୍ଣବଙ୍କ ଜୀବଧନ ।

ପ୍ରେମଭକ୍ତି ଭାବେ ଭଜ ଯେ ପାଏ ତୁମ୍ଭରେ
ଆଜନ୍ମ ଦୁଃଖ ନାଶି ସେ ଭାସେ ପ୍ରେମନୀରେ ।
ମଧ୍ୟାହ୍ନ ତପନ ଯଦି ଗଗନେ ଉଦୟେ
ଏ ପୃଥିବୀରେ ଅନ୍ଧକାର କେତେକ୍ଷଣ ରହେ ।
ଘୁଞ୍ଚାଇଲ ପ୍ରଭୁ ମୋର ଦୁଃଖ ଅନ୍ଧକାର
ପଦରେଣୁ ଦାନ କର ଜଗତ ଈଶ୍ୱର ।
ଧ୍ୟାନେ ଏହି ମତେ ସ୍ତବ କରି ନୃପମଣି
ପ୍ରଣାମ ଆଚରି ନେତ୍ରୁ ଢାଳେ ଅଶ୍ରୁ ପୁଣି ।
ବାରମ୍ବାର ପଦ୍ମପାଦେ କରଇ ବନ୍ଦନ
ଧ୍ୟାନ ଅବସାନେ ନହୁଅଇ ସ୍ୱପ୍ନ ଜ୍ଞାନ ।
ସ୍ୱପ୍ନ ଅନ୍ତେ ନରପତି ଚଇଁ ଉଠିଲେ
ସେ ଦିବ୍ୟ ଦର୍ଶନ ମନେ ମନେ ସୁମରିଲେ ।
ଅତି ଚମତ୍କାର ସ୍ୱପ୍ନ ଦେଖି ନୃପବର
ଆପଣାକୁ କୃତାର୍ଥ ମଣନ୍ତି ତଦନ୍ତର ।
ବିଚାରିଲେ ମନେ ମନେ ଭକ୍ତ ମହୀପାଳ
ସହସ୍ରେକ ଯଜ୍ଞମୋର ହୋଇଲା ସଫଳ ।
ସର୍ବ ରୂପେ ମୋ ସୁଭାଗ୍ୟ ଦେଲା ଯେ ଉଦୟ
ସ୍ୱପ୍ନ ଛଳେ ଅନୁଗ୍ରହ କଲେ ଦୟାମୟ ।
ନାରଦଙ୍କ ବାକ୍ୟ କେବେ ନୁହଇ ତ ଆନ
କେଉଁ ରୂପେ ଏଠାରେ ଦେଖିବ ଭଗବାନ ।
ଏହି ରୂପେ ଚିନ୍ତି ରାଜା ରାତି ପୁହାଇଲେ
ପ୍ରାତଃକାଳେ ଉଠି ନାରଦଙ୍କୁ ସେ କହିଲେ ।
ପ୍ରଣାମ କରି ମୁନିଙ୍କ ପାଦେ ଭକ୍ତି ଭରେ
ନେତ୍ରେ ପ୍ରେମ ଅଶ୍ରୁ ଭରି ସାତ୍ତ୍ୱିକ ଭାବରେ ।
ଜଡ଼ିତ କଣ୍ଠେ ନୃପତି ଗଦ ଗଦ ସ୍ୱରେ
ସ୍ୱପ୍ନ ବୃତ୍ତାନ୍ତ କହନ୍ତି ବଚନ ମଧୁରେ ।
ତା ଶୁଣି ନାରଦ ମୁନି ଆନନ୍ଦ ହୋଇଲେ
ସ୍ୱପ୍ନ କଥା କାହା ଆଗେ ନ କହ ବୋଇଲେ ।
ଏତେ ଦିନେ ନୃପ ତୁମ୍ଭ ଶୋକ ହେଲା ଦୂର
ପାହାନ୍ତି ସ୍ୱପ୍ନେ ଦେଖିଲ ଦେବ ଗଦାଧର ।
ପ୍ରାତଃକାଳ ସ୍ୱପ୍ନ ଫଳ ଦିଏ ଦଶ ଦିନେ
ନିଶ୍ଚୟ ଜାଣିହେ ରାଜା ପ୍ରମାଣ ଏସନେ ।
ପୂର୍ବେ ପ୍ରଜାପତି-ବ୍ରହ୍ମା କହିଛନ୍ତି ମୋତେ
ପ୍ରତ୍ୟକ୍ଷ ହୋଇବେ ହରି ଯଜ୍ଞର ଅନ୍ତରେ ।
ଯେ ବ୍ରହ୍ମାଙ୍କୁ ସ୍ୱପ୍ନେ ତୁମ୍ଭେ କରିଛ ଦର୍ଶନ
ଏଣୁ ଚିନ୍ତା ପରିହରି ନୃପ ହୋଇ ଏକମନ ।

କଦାଚିତ ସ୍ୱପ୍ନ ଜ୍ଞାନ ନକର ରାଜନ
ହରିଙ୍କ ଚରିତ୍ର ଏ ଯେ ବୁଝିବା ବିଷମ ।
ଏମନ୍ତ ସ୍ୱପ୍ନ ଅଭାଗ୍ୟ ଜନେ ନ ଘଟଇ
ଭାଗ୍ୟବନ୍ତ ପ୍ରାଣୀ କ ଏ ସ୍ୱପନ ମିଳଇ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ଅଦ୍ଭୁତ ଅମୃତମୟ ଏହି ଯେ କଥନ ।
ହରଷିତ ହୋଇ ପୁଣି ଇନ୍ଦ୍ରଦ୍ୟୁମ୍ନ ରାଜା
ସୋମ ରସେ ଯଜ୍ଞ କରି କଲେ ବିଷ୍ଣୁ ପୂଜା ।
ଏକଠାବେ ବସି ସର୍ବ ତ୍ରଇଲୋକ୍ୟଗଣେ
ଅଶ୍ୱମେଧ ଯଜ୍ଞ ଦେଖନ୍ତି ସେ ହର୍ଷମନେ ।
ଆକାଶ ପରଶେ ସର୍ବ ବେଦ ଧ୍ୱନି ମାନ
ଅନ୍ୟ ଆଉ ଶବ୍ଦ କିଛି ନହୁଏ ଶ୍ରବଣ ।
ଦୀନହୀନ ଅନାଥ ଆଇଲେ ଯେତେ ଜନ
ଇଚ୍ଛାଭରି ସମସ୍ତଙ୍କୁ ଦେଲେ ବହୁଧନ ।
ଗାୟକ ନର୍ତ୍ତକ ସୁତବାଦୀଙ୍କି ଆବର
ବହୁ ଧନ ଦେଇ ସର୍ବେ କଲେ ପୁରସ୍କାର ।
କଳ୍ପବୃକ୍ଷ ସମ ହେଲା ଇନ୍ଦ୍ରଦ୍ୟୁମ୍ନ ପୁରୀ
ଯେବା ଯାହା ଲୋଡ଼େ ତାହା ପାଏ ଇଚ୍ଛାଭରି ।
କାହାକୁ ବାରଣ ନାହିଁ ଅବାରିତ ଦ୍ୱାର
ଶୋଷି ଭୋକିମାନେ ଅନ୍ନଜଳେ ତୋଷଭର ।
ବସନ ଭୂଷଣ ଆଦି ଯେ ଯାହା ଇଚ୍ଛଇ
ଆନନ୍ଦ ମନରେ ତାହା ଦ୍ୟନ୍ତି ନରସାଇଁ ।
ଏହିମତେ ରାଜା ସମସ୍ତଙ୍କୁ ଦାନକଲେ
ପୃଥିବୀ ପାତାଳ ସ୍ୱର୍ଗ ସର୍ବେ ଭରାଇଲେ ।
ସମୁଦ୍ର ତଟରେ ବିଶ୍ୱେଶ୍ୱର ଦକ୍ଷିଣେ
ଯଜ୍ଞ ପୂର୍ଣ୍ଣହୋନ୍ତେ ରାଜା ଅବଭୃଥ ନାମେ ।
ପୂର୍ବେ ଏକ ବେଦୀ ନିର୍ମାଣ କରିଥିଲେ
ସେଠାକୁ ନିଯୋଗ ଯେତେ ସେବକ ଆସିଲେ
ଧାଇଁଣ ଆଇଲେ ନିଶ୍ୱାସକୁ ଛାଡ଼ି ଛାଡ଼ି
ନୃପତି ଛାମୁରେ ଜଣାଇଲେ କରଯୋଡ଼ି ।
ଭୋଦେବ ଶ୍ରୀମା ହେଉ ଆମ୍ଭ ନିବେଦନ
ଅଡ଼ହୁଁ ଅପୂର୍ବ ଏକ କଲୁଁ ଦରଶନ ।
ବଡ଼ବୃକ୍ଷେକ ଦେଖିଲୁଁ ସମୁଦ୍ରର ତୀରେ
ତା ଅଗ୍ରଭାଗ ବୁଡ଼ିଛି ଜଳର ଭିତରେ ।
କୂଳେ ମୂଳ ରହିଅଛି ଜଳ୍ଲୋଳେ ପ୍ଲାବିତ
ରକ୍ତବର୍ଣ୍ଣ ତରୁ ଶଙ୍ଖ ଚକ୍ରରେ ଅଙ୍କିତ ।
ଏକାବେଳେ ଯେସନ୍ତେ ଶତସୂର୍ଯ୍ୟର ଉଦୟ
ଆଶ୍ଚର୍ଯ୍ୟ ଦେଖି ମହିମା ହେଉଅଛୁଁ ବିସ୍ମୟ ।
ସୁଗନ୍ଧରେ ସିନ୍ଧୁତୀର ଆମୋଦିତ କରେ
ତରୁବର ଅଛି ସ୍ନାନବେଦୀ ନିକଟରେ ।
କଳ୍ପବୃକ୍ଷ ଅଟଇ ସେ ନୁହେଁ ସାଧାରଣ
କଳ୍ପତରୁ ରୂପେ କେହି କଲେ ଆଗମନ ।
ସେବକମାନଙ୍କ ବାଣୀ ଶୁଣି ନରପତି
ନାରଦେ ପୁଚ୍ଛିଁ କହିଲେ କରିଣ ମିନତି ।
କହନ୍ତୁ ହେ ମୁନିବର ଏଥିର କାରଣ
କିବା ଶ୍ରେଷ୍ଠତରୁ ଦେଖି କହନ୍ତି ଏ ଜନ ।
ନାରଦମୁନି କହନ୍ତି ସହାସ୍ୟ ବଦନେ
ପୂର୍ଣ୍ଣାହୁତି ସମାପନ କର ହେ ବହନେ ।
ଏତେଦିନେ ତବ ଯଜ୍ଞ ହୋଇଲା ସଫଳ
ଉଦୟ ହୋଇଲା ତୁମ୍ଭ ସଉଭାଗ୍ୟ ଫଳ ।
ଏଥିପୂର୍ବେ ସ୍ୱପ୍ନେ ଯାହା କରିଛ ଦର୍ଶନ
ସେହି ବୈକୁଣ୍ଠରନାଥ ଅଇଲେ ରାଜନ ।
ପୂର୍ଣ୍ଣବ୍ରହ୍ମ ଅବତୀର୍ଣ୍ଣ ତାରଣେ ସଂସାର
ତାର ବିବରଣ ଶୁଣ ସୂର୍ଯ୍ୟଙ୍କ କୁମାର ।
ଶ୍ୱେତଦ୍ୱୀପେ ବିଶ୍ୱମୂର୍ତ୍ତି ଯା କଲ ଦର୍ଶନ
ସେହି ପ୍ରଭୁ ଲୋମରୂପ କଲେ ଯେ ଧାରଣ ।
ସ୍ୱଇଚ୍ଛାରେ ପଡ଼ି ପ୍ରଭୁ କ୍ଷୀରସିନ୍ଧୁ ନୀରେ
ତରୁରୂପ ଆପଣେ ହୋଇଲେ ସ୍ୱମାୟାରେ ।
ପୃଥିବୀରେ ରହିବେ ଯେବଣ ଅବତାର
ସେହିପ୍ରାପ୍ୟ ହେଲେ ପ୍ରଭୁ ତରୁର ଆକାର ।
ଅଲୌକିକ ତରୁ ଏ ଯେ ଏହାର ଦର୍ଶନେ
ତୁମ୍ଭଭଳି ପାତ୍ର ପୃଥିବୀରେ ନାହିଁ ଜଣେ ।
ଏବେ ତବ ଭାଗ୍ୟହେତୁ ଦେଖିବେ ସକଳେ
ଏହିକୀର୍ତ୍ତି ତୁମ୍ଭର ଘୋଷିବେ ଭୂମଣ୍ଡଳେ ।
ସମୁଦ୍ରତୀରରେ ସମାପି ଅବଭୃଥ ସ୍ନାନ
ମହାମହୋତ୍ସବ ତୁମ୍ଭେ କର ହେ ଭିଆଣ ।
ତରୁରୂପୀ ଯଜ୍ଞେଶ୍ୱରେ ମଙ୍ଗଳ ନିମନ୍ତେ
ସ୍ଥାପନକର ହେ ମହାବେଦୀ ଉପରେ ଆଣି ।
ଏହିରୂପେ ସୁକତି କରିଣ ନୃପବର
ଦାରୁବ୍ରହ୍ମ ନିକଟକୁ ଚଳିଲେ ସତ୍ୱର ।

ରାଜାଙ୍କ ଗହଣେ ଗଲେ ପାତ୍ରମନ୍ତ୍ରୀଗଣ
ରଥ ଅଶ୍ୱ ଗଜ ପଦାତିକ ଅଗଣନ ।
ଧାଇଁଲେ ଅନେକ ଲୋକ ଶ୍ରୀହରି ଦର୍ଶନେ
ପଥ ନ ପାଆନ୍ତି ଜନ ଗହଳେ ସେମାନେ ।
କୁଳବଧୂଏ ଧାଆନ୍ତି ଲାଜ ପରିହରି
ବୃଦ୍ଧମାନେ ଚଳନ୍ତି ଯେ ଯଷ୍ଟି ଡିଗିମାରି ।
ଜଗନ୍ନାଥ ଦର୍ଶନେ ସବୁରି ଶ୍ରଦ୍ଧାମନେ
ହରିଧ୍ୱନି କରି ପଥେ ଯାନ୍ତି ସର୍ବଜନେ ।
ସମୁଦ୍ର ଲହରି ଶବ୍ଦ କର୍ଣ୍ଣ ସ୍ତବ୍ଧ କରେ
ତେତେବେଳେ ରୁଣ୍ଡହେଲେ ମହୋଦଧି ତୀରେ
ଦେଖନ୍ତି ସେ ବ୍ରହ୍ମଦାରୁ ବ୍ରହ୍ମାଣ୍ଡ ଈଶ୍ୱର
ତେଜରେ ଉଜ୍ଜ୍ୱଳ କରୁଅଛି ସିନ୍ଧୁତୀର ।
ଶତ ଶତ ଭାନୁ କି ଉଦିତ ଏକବାରେ
ଶଙ୍ଖ ଚକ୍ରଚିହ୍ନମୟ ବିରାଜେ ତରୁରେ ।
ଜନ୍ମ ସଫଳ ମଣିଲେ ଦେଖି ସର୍ବଜନ
ଦାରୁବ୍ରହ୍ମେ ଇନ୍ଦ୍ରଦ୍ୟୁମ୍ନ କଲେ ଦରଶନ ।
ନିମଗ୍ନ ହୋଇଲେ ରାଜା ଆନନ୍ଦ ସାଗରେ
ପୁଲକେ ପୂରିତ ମୁଖେ ବଚନ ନସ୍ଫୁରେ ।
ସ୍ୱପ୍ନେ ଜଗନ୍ନାଥେ ଯେମନ୍ତେ କଲେ ଦରଶନ
ସେହିରୂପେ ବୃକ୍ଷବରେ ଦେଖନ୍ତି ରାଜନ ।
ଚାରି ବଡ଼ଡାଳ ଚାରିଶାଖା ଶୋଭେ ତାର
ସୁଧାଂଶୁରେ ତରୁ ଅଙ୍ଗ ଅତି ଚମତ୍କାର ।
ଦେଖି ରାଜା ସବୁଶ୍ରମ ସଫଳ ମଣିଲେ
ମାଧବଙ୍କ ଅଦର୍ଶନ ଶୋକ ବରଜିଲେ ।
ପ୍ରେମଜଳେ ଜରଜର ନୟନ ଦୁଇଟି
ପୁଣ ପୁଣ ପ୍ରଣମନ୍ତି ଅବନୀରେ ଲୋଟି ।
ଦିବ୍ୟମାଳା ଚନ୍ଦନାଦି ନାନା ଅଳଙ୍କାର
ଦାରୁ ଅଙ୍ଗରେ ମଣ୍ଡିଲେ ସୂର୍ଯ୍ୟଙ୍କ କୁମର ।
ତଦନ୍ତେ ବିପ୍ରମାନଙ୍କୁ କରି ନିବେଦନ
ଦାରୁବ୍ରହ୍ମେ ଗୃହକୁ ନେବାରେ କଲେ ମନ ।
ଅନେକ ବ୍ରାହ୍ମଣମାନେ ରୁଣ୍ଡହୋଇ ତହିଁ
ହରିବୋଲ ଶବ୍ଦରେ ଅବନୀ କମ୍ପାଇ ।
ଦାରୁବ୍ରହ୍ମ ତରୁଟୋଟି ବହିନେଲେ ବେଗେ
ଘଣ୍ଟା ମର୍ଦ୍ଦଳ ବାଜଇ କେତେ ରାଜମାର୍ଗେ ।
ଲକ୍ଷ ଲକ୍ଷ ଢୋଲବାଜେ ଉଲ୍ଲସଇ ମନ
ଶଙ୍ଖ କାହାଳୀ ମହୁରି ଅସଂଖ୍ୟ ବାଜଇ ।

ପଟହ ମନ୍ଦରି ଗିନି କଂସାଳ ଝଞ୍ଜାଳ
ନାନାବାଦ୍ୟ ନାଦେ ଉଚ୍ଛୁଳଇ କ୍ଷେତ୍ର-ସ୍ଥଳ ।
ଭୁରି ଭେରି ମୃଦଙ୍ଗ ଝର୍ଝରି କରତାଳ
ମୁରଜ ରବାବ ବୀଣା ବାଜଇ ବିଶାଳ ।
ବାଜଇ ଡମ୍ଫ ନାଗରା ଯୋଡ଼ ଜଗଝମ୍ପା
ଦମାଲୁ ଡିଣ୍ଡିମସ୍ୱରେ ତିନିପୁର କମ୍ପା ।
ପଥେ ନୃତ୍ୟ ଗୀତରଙ୍ଗେ ନର୍ତ୍ତକେ ଗାୟକେ
ଆନନ୍ଦମନେ ଚଳନ୍ତି ବାଦ୍ୟକାର ଲୋକେ ।
ଜୟ ଜୟ ଶବଦ ଯେ ପଡ଼େ ଘନ ଘନ
ନୃପତି ଗହଣେ ଲକ୍ଷ ଲକ୍ଷ ପରିଜନ ।
ଜୟ ଜୟ ଜଗନ୍ନାଥ ଦାରୁରୂପ ହରି
ଏହି ଶବଦ କେବଳ ପଡ଼ୁଅଛି ପୂରି ।
ପ୍ରଭୁଙ୍କୁ ବେଢ଼ି ଚଳନ୍ତି ସର୍ବଦେବଗଣ
ଶୂନ୍ୟ ମାର୍ଗରୁ ଶୁଭଇ ଦୁନ୍ଦୁଭିର ସ୍ୱନ ।
ଅକଳଣା ପୁଷ୍ପବୃଷ୍ଟି ହୁଏ ଘନ ଘନ
ସୁବାସ ଚନ୍ଦନ ଜଳ କରନ୍ତି ସିଞ୍ଚନ ।
ନାଗଗଣ ନରଗଣ ମୁନିଋଷିଗଣ
ଗନ୍ଧର୍ବ କିନ୍ନର ସିଦ୍ଧ ସାଧକ ଚାରଣ ।
ସକଳେ ହରଷମନେ ଗମନ କରନ୍ତି
ଜୟ ଧ୍ୱନିରେ ସମସ୍ତେ ଦାଣ୍ଡ ଉଚ୍ଛୁଳାନ୍ତି ।
ଅମରୀମାନେ କରନ୍ତି ପାରିଜାତ ବୃଷ୍ଟି
ଅନୁପମ ଅତିଶୟ ସେହି ଶୋଭା ସୃଷ୍ଟି ।
ଅଞ୍ଜଳି ଅଞ୍ଜଳି ପୁଷ୍ପ ପଡ଼େ ଦାରୁଦେହେ
ଚଳନ୍ତି ସେ ବ୍ରହ୍ମତରୁ ପ୍ରସନ୍ନ ହୃଦୟେ ।
ଚଉଦିଗେ ଧୂପପାନ କୃଷ୍ଣାଗୁରୁ ତହିଁ
ମଳୟ ପବନେ ସେ ସୁଗନ୍ଧ ମହକଇ ।
ରତ୍ନଦଣ୍ଡ ଚାମର ଆଲଟ ପଙ୍ଖାମାନ
ଢାଳନ୍ତି ଭକତବୃନ୍ଦ ହୋଇ ହର୍ଷମନ ।
ଉଡ଼େ ବାନା ବଇରଖ ଚରାଳ ପତାକା
ଛତ୍ର ତୋରଣ ଆଡ଼ଣୀ ତାର ନାହିଁ ସଂଖ୍ୟା ।
ରଥ ଗଜ ଅଶ୍ୱ ଭୁଲେ ଅନେକ ପଦାତି
ଧାଡ଼ି ଧାଡ଼ି ହୋଇ ଦାଣ୍ଡେ ଶୋଭା ପାଉଛନ୍ତି ।
ବୈଷ୍ଣବମାନେ ଚଳନ୍ତି ହରିନାମ ଗାଇ
ସ୍ତୁତି କରନ୍ତି ମୁନିଏ ଯୋଡ଼ି କର ଦୁଇ ।
ହୋତା ବିପ୍ର ଶ୍ରୋତ୍ରିୟ ବିଦ୍ୱାନମାନେ ଯେତେ
ବେଦମନ୍ତ୍ର ପାଠ କରି ଚଳନ୍ତି ସମସ୍ତେ ।

ଛତିଶୁ ବୈଶ୍ୟାଦି ଶୂଦ୍ର ଅନ୍ତଶୂଦ୍ରଜାତି
ହରି ହରି ଧ୍ୱନିରେ ସେ ଦାଣ୍ଡ ଉଚ୍ଛୁଳନ୍ତି ।
ଜୟ ଜୟ ପରମେଶ୍ୱର ବ୍ରହ୍ମଦାରୁ
ଜୟ ଜୟ ଜଗନ୍ନାଥ ମହିମାର ମେରୁ ।
ଜୟ ନୀଳମାଧବ ଅନନ୍ତ ଭଗବାନ
ଜୟ ଦାରୁରୂପୀ ହରି ଜୟ ଜନାର୍ଦ୍ଦନ ।
ଏହିରୂପେ ନାନାସ୍ତବ କରନ୍ତି ସକଳେ
ମହାବେଦୀ ପାଶେ ବ୍ରହ୍ମଦାରୁକୁ ଆଣିଲେ ।
ସେହି ମହାବେଦୀ ଗୋଟି ଅତି ଚମତ୍କାର
ଉପରେ ଇନ୍ଦ୍ରଗୋବିନ୍ଦ ଚାନ୍ଦୁଆ ସୁନ୍ଦର ।
ପାଟବସନ ବେଷ୍ଟିତ ତାର ଚଉକତି
ଖମ୍ବମାନଙ୍କରେ ମୋତିଝରା ପନ୍ତି ପନ୍ତି ।
ମହା ନନ୍ଦାସ୍ଥଳପରି ଦିଶଇ ସୁନ୍ଦର
ସେ ମହାବେଦୀକି ଦେବା କିସ ପଟାନ୍ତର ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଆଦେଶେ ବିପ୍ରମାନେ
ସେହି ବେଦୀ ଉପରେ ରଖିଲେ ନାରାୟଣେ ।
ଗହଗହ ଶବଦରେ ଉଚ୍ଛୁଳେ ସେ ସ୍ଥାନ
ଜନ ଗହଳେ ପୂରିଛି ଶ୍ରୀକ୍ଷେତ୍ର ଭୁବନ ।
ମୁନିମାନଙ୍କ ଆଗରେ ଜୈମିନି ଏସନେ
ବଖାଣିଲେ ସୁମଧୁରେ ଆନନ୍ଦିତ ମନେ ।
ଶ୍ରବଣ କରି ସକଳ ତାପସ ନିକର
ଜୟ ହରିବୋଲ ଡାକଦେଲେ ଯୋଡ଼ିକର ।
ଶ୍ରୀଜଗନ୍ନାଥଙ୍କ ପାଦପଦ୍ମ ଆଶ୍ରିତରେ
ରଚଇ ବୈଷ୍ଣବ ଦାସ ପୁରାଣ ଗୀତରେ ।

—୫*୫—

## ଦାରୁବ୍ରହ୍ମ ପ୍ରତିମା ନିର୍ମ୍ମାଣ

ଜୈମିନି ଉବାଚ

ଏଥୁଅନ୍ତେ ସମାଚାର ଶୁଣ ମୁନିଗଣ
ଯେମନ୍ତେ ସେ ବ୍ରହ୍ମଦାରୁ ପ୍ରତିମା ନିର୍ମ୍ମାଣ ।
ଇନ୍ଦ୍ରଦ୍ୟୁମ୍ନ ରାଜା ଅତି ଆନନ୍ଦ ମାନସେ
ସାଷ୍ଟାଙ୍ଗେ ନମିଲେ ନାରଦଙ୍କ ପାଦ ଦେଶେ ।
ରାଜାଙ୍କୁ କୋଳକରି ସେ ମୁନି ଆନନ୍ଦିତ
ଦୋହେଁ ପ୍ରତି ଆଲିଙ୍ଗନେ ଅଙ୍ଗ ପୁଲକିତ ।
ରାଜାଙ୍କୁ ଚାହିଁ କହନ୍ତି ତହୁଁ ମୁନିବର
ପୂଜାକର ଦାରୁମୟ ଜଗତ ଈଶ୍ୱର ।
ମୁନିଙ୍କ ବଚନେ ନାନା ଭଳି ଉପହାରେ
ପୂଜାକଲେ ଦାରୁ ବ୍ରହ୍ମ ରାଜା ହରଷରେ ।
ପୂଜାସାରି ପଚାରିଲେ ମୁନିଙ୍କର ପାଶ
କିରୂପେ ପ୍ରତିମା ବିଷ୍ଣୁ ହୋଇବେ ପ୍ରକାଶ ।
କେବା ନିର୍ମ୍ମାଣ କରିବ କହ ମହାଶୟ
ସକଳ ବତାଇ ମୋର ସଂଶୟ ମେଣ୍ଟାଅ ।
ଏହାଶୁଣି ମୁନିବର କହି ଆରମ୍ଭିଲେ
ଅଲୌକିକ ଚେଷ୍ଟା ତାଙ୍କ କେ ବୁଝିବ ଭଲେ ।
ସୃଷ୍ଟିକର୍ତ୍ତା ବ୍ରହ୍ମା ତାଙ୍କ ଚେଷ୍ଟା ନ ଜାଣନ୍ତି
ଯାହାଙ୍କର ଚେଷ୍ଟା ଶିବେ ଅଗୋଚର ଅତି ।
ଇନ୍ଦ୍ରଆଦି ଦେବଙ୍କୁ ଯା ଚେଷ୍ଟା ନୋହେ ଜଣା
ଅନ୍ୟ କେବା ଜାଣିବଟି ଆହେ ମହାମନା ।
ଚଉଦ ଭୁବନେ କେହିନାହିଁ ଜାଣିବାକୁ
ଗୋଚର ସିନା ସେ ପ୍ରଭୁ ଆପେ ଆପଣାକୁ ।
ଏହିମତେ ଦୁହେଁ ତହିଁ କରନ୍ତେ ବିଚାର
ସେହି କାଳେ ଶୂନ୍ୟରୁ ଶୁଣିଲେ ଚମତ୍କାର ।
ହୋଇଲା ଆକାଶବାଣୀ ଶୁଣନ୍ତି ସକଳେ
ଶୁଣି ଅତି ଆଚମ୍ବିତ ଅନ୍ତରେ ମଣିଲେ ।
ଶୁଣ ରାଜା ଇନ୍ଦ୍ରଦ୍ୟୁମ୍ନ ନରାଧିପ ବସୁସ୍ୱେ
ଅଲୌକିକ ହରିଙ୍କ ବିଗ୍ରହରେ କାର୍ଯ୍ୟ ନୁହେ ।
ମହାବେଦୀ ଆଚ୍ଛାଦନ କରି ହେ ଯତନେ
ଏଥି ମଧ୍ୟେ ଅବତାର ହୋଇବେ ଆପଣେ ।
ପଞ୍ଚଦଶ ଦିନ ନ ଫେଡ଼ିବ ଆଚ୍ଛାଦନ
ଦୃଢ଼ରୂପେ ସର୍ବ ଦ୍ୱାର କରିବ ବନ୍ଧନ ।
ଉପସ୍ଥିତ ହେଲା ଯେଉଁ ବୃଦ୍ଧ ସୂତ୍ରଧର
ନିଜ ସଜ ମୁଣ୍ଡି ଦେମ କନ୍ଧର ଉପର ।
ତାକୁ ବେଦୀ ମଧ୍ୟରେ ପ୍ରବେଶ କରାଇବ
ଯତନରେ ଦ୍ୱାରମାନ ଅର୍ଗଳରେ କିଳିବ ।
ଯାବତ ନିର୍ମ୍ମାଣ ହେବେ ପ୍ରତିମା ସକଳ
ତାବତ ବାହାରେ କରି ବାଦ୍ୟ କୋଳାହଳ ।
ଗଢ଼ା ଶବଦ ଶୁଣିଲେ କାଲ କଣା ହେବେ
ନରକେ ନିବାସ ପୁଣି କଳନ୍ତ ମଜ୍ଜିବେ ।
କଦାଚ କର୍ତ୍ତବ୍ୟ ନୁହେଁ ଭିତରେ ପଶିବା
ନିର୍ମ୍ମାଣରେ କାଳେ ନ ଦେଖିବ କେହି ବାବା ।
କର୍ମ୍ମକାରୀ ବିନା ଯଦି ଅନ୍ୟ ପ୍ରାଣୀ ଦେଖେ
ରାଜ୍ୟରକ୍ଷତଥା ଆଉ ସେହୁ ମରେ ଦୁଃଖେ ।

ସ୍ଥୂଳେ ସ୍ଥୂଳେ ଚକ୍ଷୁମ୍ଳାନ ହୋଇ ବସେ ଜନ
ଏ ହେତୁ ସେ କାଳେ ନ କରିବେ କେ ଦର୍ଶନ ।
ଯେତେବେଳେ ସବୁକାର୍ଯ୍ୟ ହେବ ସମାଧାନ
ଆପଣେହିଁ କର୍ତ୍ତବ୍ୟ କହିବେ ଭଗବାନ ।
ଯେଉଁ ଯେଉଁ କାର୍ଯ୍ୟମାନ କରଇ ଯତନେ
ସୁଖର କାରଣ ତାହା ହୁଏ ସର୍ବଜନେ ।
ଏତେ କହି ଅନ୍ତରୀକ୍ଷେ ପ୍ରଭୁ ଭଗବାନ
ନୀରବ ହୋଇ ବଚନ କଲେ ସମାଧାନ ।
ଏହିପରି ଶୁଣି ସର୍ବେ ଆକାଶ ବଚନ
ସେହି ମତେ ପାଳିବାକୁ ସର୍ବେ କଲେ ମନ ।
ସେ କାଳରେ ହରି ବିଶ୍ୱକର୍ମା ରୂପଧରି
ରାଜାର ପାଶେ ଅଇଲେ ଧୀର ଧୀର କରି ।
ଅତି ବୃଦ୍ଧ ବଢ଼ାଣୀ ସେ ଦେବ ଗଦାଧର
କାଶି କାଶି ପଡ଼ିଗଲେ ଅବନୀ ଉପର ।
ଠେଙ୍ଗା ହାତେ ଉଠିବାକୁ ଥରେ ସର୍ବ ଅଙ୍ଗ
ଖଲନ୍ତେ ଚରଣ କମ୍ପେ ଦଶନ୍ତ ବିଭଙ୍ଗ ।
ଚଉଦିଗେ ଲୋକେ ଯେ କରନ୍ତି ପରିହାସ
ମାୟାରେ ସବୁରି ମନ ମୋହିଲେ ଶ୍ରୀବାସ ।
ଦେଖି ଅତି ବିସ୍ମୟ ହୋଇଲେ ନରପତି
ଲୋକଙ୍କୁ ନିବାରି କହିଲେ ସେ ବୁଢ଼ା ପ୍ରତି ।
କହ କେଉଁ ଦେଶରୁ ତବ ଆଗମନ
କି ହେତୁ ଅଇଲ ଏଥି କିସ ପ୍ରୟୋଜନ ।
ବୃଦ୍ଧ ବୋଲେ ଘର ମୋର ଦ୍ୱାରକା ନଗରେ
ବାସୁଦେବ ମହାରଣା ନାମଟି ସଂସାରେ ।
ଯେତେ କିଛି ଦେଖ ରାଜା ଏ ତିନି ଭୁବନେ
ସକଳ ଗଢ଼ିଛି ମୁହିଁ ବୁଝ ଶୁଦ୍ଧମନେ ।
ଏଠାକୁ ଅଇଲି ଦାରୁ ମୂର୍ତ୍ତି ଗଢ଼ିବାରେ
କାହିଁ ଅଛି ବ୍ରହ୍ମ ତରୁ ଦେଖାଅ ହେ ମୋରେ ।
ରାଜା ବୋଲନ୍ତି ଆଶ୍ଚର୍ଯ୍ୟ ତୁମ୍ଭର ଏ ବାଣୀ
ଏଡ଼େ ବୁଢ଼ା କେମନ୍ତେ ଗଢ଼ିବ ହେ ବଢ଼ାଣୀ ।
ନାରଦ ବୋଇଲେ ରାଜା ନ ମଣ ସଂଶୟ
ବୁଢ଼ାର କଥାକୁ ତୁମ୍ଭେ କର ହେ ପ୍ରତ୍ୟୟ ।
ଶୁଣି ଅତି ବିସ୍ମୟ ହୋଇଲେ ନରପତି
ହେଜି ଆକାଶବାଣୀକି ସ୍ଥିର କଲେ ମତି ।
ପୁଣି ସେ ବୁଢ଼ା ବଢ଼ାଇ ରାଜାଙ୍କୁ ଅନାଇଁ
ମଧୁର ବଚନେ ଧୀରେ କହେ ସମଜାଇ ।

ଶୁଣ ଆହେ ମହାରାଜା ମୋହର ବଚନ
ସ୍ୱପ୍ନେ ଯେଉଁ ଯେଉଁ ରୂପ କରିଛ ଦର୍ଶନ ।
ଦାରୁରେ ସେ ସବୁ ମୂର୍ତ୍ତି କରିବି ପ୍ରକାଶ
ଏତେ କହି ବେଢ଼ା ମଧ୍ୟେ ଗଲେ ଶ୍ରୀନିବାସ ।
ସକଳଜନଙ୍କୁ କରିବାକୁ ସେ ବଞ୍ଚନ
ବୁଢ଼ା ବଢ଼ାଇ ରୂପରେ କଲେ ଆଗମନ ।
କେତେ ମାୟା ଜାଣନ୍ତି ସେ ମାୟାଧର ହରି
ଯେତେ ଯାହା ଭବଲୀଳା ସକଳ ତାଙ୍କରି ।
ଆପଣା ମୂରତି ଆପେ ଗଢ଼ିବାର ପାଇଁ
ବିଜୟେ କରିଅଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ ।
ବଡ଼ କଉତୁକୀ ଲୀଳାମୟ ଦଇତ୍ୟାରି
ଭକତ ଭାବେ ସର୍ବଦା ଭୋଳ ଚକ୍ରଧାରୀ ।
ପରମଭକ୍ତ ସେ ଇନ୍ଦ୍ରଦ୍ୟୁମ୍ନ ନୃପମଣି
ତାର ବାଞ୍ଛା ପୂର୍ଣ୍ଣ କରିବାକୁ ପଦ୍ମପାଣି ।
ଆଚମ୍ବିତେ ହୋଇଛନ୍ତି ବୁଢ଼ା କାରିଗର
କେତେ ହୃଦର ଜାଣନ୍ତି ହରିଆ ଶ୍ରୀଧର ।

## ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ଅନ୍ତରୀକ୍ଷ ବାଣୀ ଚେତି ସେ ଭକ୍ତ ରାଜନ ।
ଯେଉଁ ଯେଉଁ ରୂପ ସ୍ୱପ୍ନେ ଦେଖିଥିଲେ ନେତ୍ରେ
ସେହି ମୂର୍ତ୍ତି କରିବାରେ ବରୁରିଲେ ଶତ୍ରେ ।
ବୁଢ଼ା ବଢ଼ାଇ ବେଢ଼ାରେ କରନ୍ତେ ପ୍ରବେଶ
ଦ୍ୱାରବନ୍ଦ କରିବାରେ ଦିହିଲେ ଆଦେଶ ।
ଚଉଦିଗେ ଦ୍ୱାରମାନ କଲେକ ସେ ବନ୍ଦ
ଭିତରେ ପଶିବା ପାଇଁ ଅନ୍ୟଙ୍କୁ ନିଷେଧ ।
ବେଢ଼ା ଚଉକତି କଲେ ବସ୍ତ୍ରେ ଆଚ୍ଛାଦନ
ସ୍ଥାନେ ସ୍ଥାନେ ଖଞ୍ଜାଇଲେ ପତାକା ତୋରଣ ।
ନାନା ବାଦ୍ୟ ବଜାଇଲେ ବାଦ୍ୟକାରମାନେ
ବାଦ୍ୟ ନାଦେ ସିନ୍ଧୁ ଉଚ୍ଛୁଳଇ ଘନ ଘନେ ।
ଏହିରୂପେ ପ୍ରତିଦିନ ବାଜେ ବାଦ୍ୟମାନ
ଅପେକ୍ଷା କଲେ ସକଳେ ପଞ୍ଚଦଶ ଦିନ ।
ପାରିଜାତ ପୁଷ୍ପ ବୃଷ୍ଟି ହୁଅଇ ନିରତେ
ଜୟ ଧ୍ୱନି ଗଗନରେ ଶୁଭେ ଦିବାରାତେ ।
ହରିବୋଲ ହୁଳହୁଳି ନରନାରୀ ମୁଖେ
ପ୍ରେମ ବିହ୍ୱଳେ ନାଚନ୍ତି ଭକ୍ତମାନେ ସୁଖେ ।

କୁସୁମ ସୁଗନ୍ଧେ ପୂର୍ଣ୍ଣ ମହାବେଦୀ ସ୍ଥଳୀ
ଧୂପ ଗନ୍ଧ ଚହଟଇ ବେଢ଼ି ବେଳ ବଳ ।
ଧନ୍ୟ ମର୍ତ୍ତ୍ୟର-ବୈକୁଣ୍ଠ ଭୂମି ସୁ-ଦୁର୍ଲ୍ଲଭ
ଅପୂର୍ବ ଆନନ୍ଦ ଲଭୁଛନ୍ତି ଜନ ସର୍ବ ।
ନାଚି ନାଚି ଗୀତ ନାଟ କରି ଦେବସ୍ତ୍ରୀଏ
ମୋହୁଛନ୍ତି ଭକ୍ତଙ୍କର ମନ ମୋଦ ଭରି ।
କେବଳ ଶ୍ରୀହରି ନାମ ହେଉଅଛି ଗାନ
ଜୟ ଶବଦେ ପୂରିଛି ରତ୍ନବେଦୀ ସ୍ଥାନ ।
ସୃଷ୍ଟି ଧାରେ ସ୍ୱର୍ଗ ଗଙ୍ଗା ବରଷନ୍ତି ଜଳ
ସିଞ୍ଚନ୍ତି ଉକ୍ରତେ ବାସ ଚନ୍ଦନ ସଲିଳ ।
ଐରାବତ ଆଦି ଗଜଙ୍କର ମଦଗନ୍ଧ
ସଦା ଅନୁଭବନ୍ତି ସକଳ ଲୋକବୃନ୍ଦ ।
ଯଜ୍ଞ ହେତୁ ଆସିଥିଲେ ଯେତେ ଦେବଗଣ
ଶ୍ରୀହରି ଦର୍ଶନେ କଲେ ଦୁଃଖ ବିମୋଚନ ।
ପୂର୍ବେ ଯେପ୍ରେ କରିଥିଲେ ମାଧବେ ସେବନ
ଜଗନ୍ନାଥଙ୍କୁ ତେସନେ କଲେ ଉପାସନ ।
ଶ୍ରୀନୀଳମାଧବଙ୍କର ଯେ ଅମର ଭକ୍ତେ
ଉପାସନା ଆଚରନ୍ତି ପ୍ରଭୁ ଜଗନ୍ନାଥେ ।
ଦେବର୍ଷି ମହର୍ଷି ଯେ ବ୍ରହ୍ମର୍ଷି ନିକରେ
ସ୍ତୁତି କରୁଛନ୍ତି କରଯୋଡ଼ି ନିରନ୍ତରେ ।
ପାରିଜାତ ଫୁଲେ ଦେବେ ପୂଜନ୍ତି ଶ୍ରୀହରି
ନାଗ ନର ଆଦିଙ୍କର ଭାବ ସେହିପରି ।
କେ ଅବା ବର୍ଣ୍ଣି ପାରିବ ସେ କାଳ ମାଧୁରୀ
ହରି ଧ୍ୱନିରେ ଉଚ୍ଛୁଳେ ଶ୍ରୀକ୍ଷେତ୍ର ନଗରୀ ।
ଶ୍ରୀଦାରୁବ୍ରହ୍ମ ମୂର୍ତ୍ତି ଦର୍ଶନେ ରଖି ଅଭିଳାଷ
ଭାବରେ ଭଣେ ବାଇଆ ବଇଷ୍ଣବ ଦାସ ।

—:*:—

## ଚତୁର୍ଦ୍ଧାମୂର୍ତ୍ତିରେ ଭଗବାନଙ୍କର ଆବିର୍ଭାବ

### ଋଷିନୁବାଚ

ଏଥିଅନ୍ତେ ଜୈମିନିଙ୍କି ଘେରି ମୁନିଗଣ
ପଚାରିଲେ ସମାଦରେ ଶ୍ରଦ୍ଧାବଳାଇଣ ।
ବୋଇଲେ ହେ ବ୍ୟାସଙ୍କର ଯୋଗ୍ୟ ଶିଷ୍ୟବର
କହିକନା ଆମ୍ଭଆଗେ ପ୍ରଭୁ ସମାଚାର ।
କେମନ୍ତେଣ ଆବିର୍ଭାବ ହେଲେ ଶିରିପତି
ଦାରୁବ୍ରହ୍ମ ରୂପେ ସେହି ଚତୁର ମୂରତି ।
ଶ୍ରବଣେକରି କୃତାର୍ଥ ହେବୁଁ ମୁନିଗଣ
ସମ୍ପ୍ରତି ତାହା ପ୍ରକାଶ କରନ୍ତୁ ଆପଣ ।
ଶୌନକାଦି ମୁନିଙ୍କର ଅନୁରୋଧ ବାଣୀ
ଶୁଣି କହି ଆରମ୍ଭିଲେ ତାପସ ଜୈମିନି ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଦରହସିତ ବଦନେ
ଏକମନ ହୋଇ ସର୍ବେ ଶୁଣ ସାବଧାନେ ।
ଦେବତାଙ୍କ ଉପାସନେ ପ୍ରଭୁ ଜଗନ୍ନାଥ
ଦିବ୍ୟରୂପମାନ ଧରି ହୋଇଲେ ସାକ୍ଷାତ ।
ସ୍ୱୟଂ ନିରମାଣ ହେଲେ ପଞ୍ଚଦଶ ଦିନେ
ଚତୁର୍ମୂରତି ଧାରଣ କଲେ ମନୋରମେ ।
ପୂର୍ବେ ଯେଉଁ ଯେଉଁ ରୂପ ଅଛି ବ୍ୟକ୍ତକରି
ଆବିର୍ଭାବ ହେଲେ ହରି ସେହିରୂପ ଧରି ।
ଦିବ୍ୟ ସିଂହାସନ ପରେ ଜଗତର ନାଥ
ବଳଭଦ୍ର ସୁଭଦ୍ରା ଶ୍ରୀସୁଦର୍ଶନ ସାଥ ।
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଦେବରାଜ
ଲାଙ୍ଗଳ ମୂଷଳ ଚକ୍ର ପଦ୍ମ ଚତୁର୍ଭୁଜ ।
ପ୍ରକାଶ ହୋଇଲେ ମହାପ୍ରଭୁ ଆଚମ୍ବିତେ
ଶଙ୍ଖ ଚକ୍ର ଗଦାପଦ୍ମ ଲକ୍ଷିତେ ହାତେ ।
ବଳଦେବଙ୍କ ହସ୍ତରେ ଲାଙ୍ଗଳ ମୂଷଳ
ବିରାଜଇ ମନୋହରେ ରଥାଙ୍ଗ କମଳ ।
କି ବର୍ଣ୍ଣିବି ଯେହି ବଡ଼ ଠାକୁରଙ୍କ ଠାଣି
ତାହାଙ୍କ ଶିରେ ମୁକୁଟ ଶୋଭେ ସପ୍ତଫଣୀ ।
ଛତ୍ର ଆକାରେ ସୁନ୍ଦର ସେହି ରତ୍ନ ପାଗ
ସର୍ପର ଆକୃତି ମନୋରମ ଧବଳାଙ୍ଗ ।
ବଢ଼ଇ ଅଦଭୁତ ଯେ ସୁଚିକ୍କଣ କାନ୍ତି
ରଜତ ପର୍ବତ ସମ ମହାବଳୀ ମୂର୍ତ୍ତି ।
ଜକ ଜକ ଦିଶୁଥାଇ ଶ୍ରବଣେ କୁଣ୍ଡଳ
ତାହାର କିରଣ ମଣ୍ଡେ ଶ୍ରୀଗଣ୍ଡ ମଣ୍ଡଳ ।
ଆପଣେ ଅନନ୍ତଦେବ ପ୍ରଭୁ ସଙ୍କର୍ଷଣ
ବିରାଜନ୍ତି ସିଂହାସନେ ହସିତ ବଦନ ।
ସୁଭଦ୍ରା କୁଙ୍କୁମମୁଖୀ ପରମା-ସୁନ୍ଦରୀ
କମଳ ଅଭୟବର ବେନି କରେ ଧରି ।

ଆବର୍ଣ୍ଣବ ଜନ୍ମିଲେ ଶୁଭେ ଆପଣେ କମଳା
ଚୈତନ୍ୟ ରୂପିଣୀ ସର୍ବଙ୍କର ସେ ଅମଳା ।
ଏହାଦେବୀ ଦ୍ୱାପରେ ଯେ କୃଷ୍ଣ ଅବତାରେ
ଜନ୍ମିଥିଲେ ଭାଗ୍ୟବନ୍ତୀ ରୋହିଣୀ ଉଦରେ ;
ବଳରାମ ରୂପସଦା ହୃଦୟରେ ଭାବ
ବଳଭଦ୍ର ଆକାରେ ଜନ୍ମିଲେ ମହାଦେବୀ ।
ଅଭେଦ ଶରୀର ସେ ଯେ କୃଷ୍ଣ ବଳରାମ
ଏକବ୍ରହ୍ମ ଦୁଇରୂପ ଜାଣ ହେ ପ୍ରମାଣ ।
ବିଷ୍ଣୁଙ୍କ ବିଚ୍ଛେଦ ଲକ୍ଷ୍ମୀ ତିଳେ ନ ସହନ୍ତି
ଏଣୁ ବିଷ୍ଣୁଙ୍କ ସହିତ ଅବତାର ହୁଅନ୍ତି ।
ବଳରାମ ଜନ୍ମିଥିଲେ ରୋହିଣୀ ଉଦରେ
ତସ୍ମାତ ଭଗ୍ନୀ କହନ୍ତି ଲୋକ ବ୍ୟବହାରେ ।
ମାତ୍ର ଆପଣେ କମଳା ସୁଭଦ୍ରା ରୂପିଣୀ
ଏକଗର୍ଭେ ଜନ୍ମହେତୁ ହରିଙ୍କ ଭଗିନୀ ।
ଯହିଁ ପୁରୁଷ ରୂପରେ ପ୍ରଭୁ ଭଗବାନ
ତହିଁ ସ୍ତ୍ରୀ ରୂପରେ ହୁଅନ୍ତି ଲକ୍ଷ୍ମୀ ଅଧିଷ୍ଠାନ ।
ପୁରୁଷ ମାତ୍ରକେ ସର୍ବ ଅଟେ ବିଷ୍ଣୁମୟ
ସ୍ତ୍ରୀମାତ୍ରେ କମଳାରୂପ ଜାଣ ସୁ-ନିଶ୍ଚୟ ।
ଦେବତା କି ଅବା ପଶୁ ପକ୍ଷୀ ନରଗଣ
ଏ ଦୁହିଁଙ୍କ ବିହୁନେ ଅଛୁ ବା କେଉଁଜନ ।
ବଳରାମ କୃଷ୍ଣ ଦୁହେଁ ଏକ ଥାଅ ମଣି
ହରିବିନେ ଫଣାଅଗ୍ରେ କେ ଧରେ ଧରଣୀ ।
ସେହି ଅନନ୍ତ ଅଟନ୍ତି ପ୍ରଭୁ ବଳରାମ
ନରଙ୍କେ ପୂର୍ଣ୍ଣ କରନ୍ତି ହରି ମନସ୍କାମ ।
ଶକ୍ତିରୂପା ମହାଲକ୍ଷ୍ମୀ ବ୍ରହ୍ମାଣ୍ଡ ଜନନୀ
ସକଳେ ଜାଣନ୍ତି ସେହୁ ହରିଙ୍କ ଭଗିନୀ ।
ଯେଉଁ ସୁଦର୍ଶନ ଚକ୍ର ବିଷ୍ଣୁକରେ ସ୍ଥିତି
ଶାଖାଅଗ୍ରେ ହୋଇଲେ ତେଣୁ ଚତୁର୍ଥ ମୂରତି ।
ସେ ବ୍ରହ୍ମ ଦାରୁରେ ଚାରିମୂର୍ତ୍ତି ଏହିରୂପେ
ନିର୍ମାଣ ହୋଇଲେ ନିଜ ଶ୍ରୀହସ୍ତରେ ଆପେ ।
ବୃହନ୍ତି ପ୍ରକୃତିରେ ଯେ ସେ ବୁଢ଼ା ବଢ଼ାଇ
ମାୟାରେ ଆସିଣ ଥିଲେ ଛଦ୍ମରୂପ ହୋଇ
କରିବାପାଇଁକି ସମସ୍ତଙ୍କ ଉପକାର ।
ଅନ୍ତରିକ୍ଷେ ଥାଇଣ ବୋଇଲେ ମାୟାଧର
ଶୁଣ ଇନ୍ଦ୍ରଦ୍ୟୁମ୍ନ ରଜା ଏବେ ସାବଧାନେ
ପାଟବସନେ ଗୁଡ଼ାଅ ଏହି ମୂର୍ତ୍ତିଗଣେ ।

ଦୃଢ଼ଭାବେ ଆଚ୍ଛାଦନ କରି ସୁ-ଯତନେ
ବର୍ଣ୍ଣକରେ ଚିତ୍ରକର ଅତି ମନୋରମେ ।
ନିଜ ନିଜ ବର୍ଣ୍ଣଭଲେ କରାଅ ଧାରଣ
ଜଗନ୍ନାଥେ କଳାବର୍ଣ୍ଣ ଯେହ୍ନେ ନବଘନ ।
ଶଙ୍ଖ ଆଉ ଚକ୍ରବର୍ଣ୍ଣ କରି ବଳରାମେ
ଅରୁଣ ବରନ କରି ଚକ୍ର ସୁଦର୍ଶନେ ।
ଭକତି ଭାବରେ ମଣ୍ଡି ନାନା ଅଳଙ୍କାରେ
କୁଙ୍କୁମ ଅ୍ ଣବର୍ଣ୍ଣ କରି ସୁଭଦ୍ରାରେ ।
କେବଳ ଦାରୁରେ କଲେ ପ୍ରତିମା ଦର୍ଶନ
ମହାପାପେ ସେ କରିବେ ନରକେ ଗମନ ।
ଏଣୁ ଅବଲମ୍ବେ ଏହି ତରୁ ବକଳରେ
ଦୃଢ଼କରି ଆଚ୍ଛାଦନ କରି ପ୍ରଥମରେ ।
ତଦନ୍ତେ ପାଟବସନେ କରି ଆଚ୍ଛାଦନ
ବୃକ୍ଷଅଠା ତହିଁ ପୁଣି କରି ହେ ଲେପନ ।
ତହୁଁ ପୁଣି ବର୍ଣ୍ଣକରେ ଚିତ୍ରକର ଗଣ
ଶିଳ୍ପି ମାନଙ୍କ ହସ୍ତରେ ଏସବୁ କରାଅ ।
ପୁଣି ଲେପ କାଢ଼ିକରି ପ୍ରତି ବରଷରେ
ଅଙ୍ଗରାଗ କରାଇବ ଯତନ ପ୍ରକାରେ ।
ମାତ୍ର ଏଥିକି ହେ ରାଜା ହେବ ସାବଧାନ
ବକଳ ଶ୍ରୀଅଙ୍ଗୁ ନ ଫେଡ଼ିବ କଦାଚନ ।
ଚିରକାଳ ସେ ବକଳ ଅଙ୍ଗେ ରହିଥିବ
ବକଳହୀନ ଦେଖିଲେ ପ୍ରମାଦ ଘଟିବ ।
ବକଳ ଘୁଞ୍ଚାଇ ଯେବା ଦେଖେ ହେ ନୃପତି
ଚିରକାଳ ହେବ ତାର ନରକେ ବସତି ।
ଦୁର୍ଭିକ୍ଷ ମଡ଼କ ରାଜ୍ୟେ ହେବ ତତକ୍ଷଣ
ଦେଖିଲା ପ୍ରାଣୀର ନଷ୍ଟେ ମରିବେ ସନ୍ତାନ ।
କଦାଚିତ ସେରୂପେ ପ୍ରଭୁଙ୍କୁ ନ ଦେଖିବ
ଦେବତା କି ମନୁଷ୍ୟ ଦେଖିଲେ ବନ୍ଧ୍ୟହେବ ।
ଏହିହେତୁ ବନ୍ଧୁଲେପେ ହୋଇ ବିଲେପିତ
ଦର୍ଶନ ଦେଇ କରିବେ ଜଗତର ହିତ ।
ସୁଚିତ୍ର ପଦ୍ମଲୋଚନ ପ୍ରଭୁ ବାସୁଦେବେ
ଦରଶନ କଲେ ନରେ ପାପୁଁ ମୁକ୍ତହେବେ ।
ମନର କାମନା ଯଦି ପାଇବ ରାଜନ
ସୁଚିତ୍ର କରାଇ କରି ପ୍ରଭୁ ଦରଶନ ।
ଭୂମଣ୍ଡଳେ ଦୟାକରି ହରି ଅବତାର
ତୁମ୍ଭ ଉପଲକ୍ଷେ ସର୍ବେ ପାଇବେ ନିସ୍ତାର ।

ନୀଳଗିରି ମଧ୍ୟେ ଯେଉଁ କଳ୍ପତରୁବର
ତାର ବାୟୁକୋଣେ ଶଏହାତର ଭିତର ।
ନୃସିଂହଙ୍କ ଉତ୍ତରେ ସେ ଅଛି ମହାସ୍ଥାନ
ସେହିଠାରେ କର ଏକ ଦେଉଳ ନିର୍ମାଣ ।
ସହସ୍ରେକ ହସ୍ତ ଉଚ୍ଚ ଦେଉଳ କରିବ
ହରିଙ୍କି ପ୍ରତିଷ୍ଠା କରି ଭିତରେ ସ୍ଥାପିବ ।
ପୂର୍ବେ ବିଶ୍ୱାବସୁ ନାମେ ଶବର ନନ୍ଦନ
ବୈଷ୍ଣବଙ୍କ ଶ୍ରେଷ୍ଠ ଯେହୁ ଜାଣ ହେ ରାଜନ ।
ଏହି ପର୍ବତରେ ଆସି ମାଧବେ ସେବିଲା
ତାରସଙ୍ଗେ ସଖ୍ୟ ତୁମ୍ଭ ପୁରୋହିତ ହେଲା ।
ଏହିଯେ ଦାରୁ ଲେପନ ସଂସ୍କାର କାରଣ
ସେ ଦୁହିଙ୍କ ସନ୍ତାନଙ୍କୁ କର ନିଯୋଜନ ।
ଅବଶ୍ୟ ଉତ୍ସବ ଯେତେ ହେବ ପ୍ରଭୁଙ୍କର
ସେ ଦୁହିଙ୍କ ପୁତ୍ରେ ଦଅ ସେହି ଅଧିକାର ।
ଏତେ କହି ଶୂନ୍ୟେ ପ୍ରଭୁ ନୀରବ ହୋଇଲେ
ଶୁଣି ଇନ୍ଦ୍ରଦ୍ୟୁମ୍ନ ମନେ ଆନନ୍ଦିତ ହେଲେ ।

ଜୈମିନି ଉବାଚ

ଏଥୁ ଅନନ୍ତରେ ଶୁଣ ହେ ମୁନିମଣ୍ଡଳ
ଆକାଶବାଣୀକି ଶୁଣି ରାଜା କୁତୁହଳୀ ।
ଯେଉଁ ଯେଉଁ ରୂପେ ରାଜା ପାଇଲେ ଆଦେଶ
ତାହାସବୁ ଆଚରିଲେ କରିଣ ବିଶ୍ୱାସ ।
ପ୍ରଭୁଙ୍କ ଆଦେଶ ପାଇ ଆନନ୍ଦିତ ମନେ
ତଦନ୍ତେ ନିଯୁକ୍ତ କଲେ ଶିଳ୍ପକାର ଜନେ ।
ଶିଳ୍ପକାରେ କଲେ ନେତ୍ର ବସନ ବନ୍ଧନ
ଦାରୁବ୍ରହ୍ମ ଦେହେ ତରୁ ବକଳ ଢାଙ୍କିଣ ।
ଅତି ସୁଦୃଢ଼ କରିଣ ବାନ୍ଧିଲେ ଯତନେ
ମାଟିମୁଠି ଦେଲେ ଶ୍ରୀଅଙ୍ଗକୁ ସୁଶୋଭନେ ।
ବକଳ ଘୋଡ଼ାଇ ସାରି ନେତ୍ର ଫିଟାଇଲେ
ପାଟବସନ ତାପରେ ଧୀରେ ଗୁଡ଼ାଇଲେ ।
ଯଥା ଯୋଗ୍ୟ ଦ୍ରବ୍ୟେ କଲେ ଶ୍ରୀଅଙ୍ଗ ସଂସ୍କାର
ଚିତ୍ରକର ବର୍ଣ୍ଣକେ ମଣ୍ଡିଲେ ଚମତ୍କାର ।
ସିଂହାର କାର୍ଯ୍ୟ କୁଶଳେ କରି ସମାପନ
ଚିତ୍ରକରମାନେ ହେଲେ ଆନନ୍ଦେ ମଗନ ।
ସର୍ବେ ଆସି ନୃପତିଙ୍କି କଲେ ନିବେଦନ
ତା ଶୁଣି ରାଜା ହୋଇଲେ ପ୍ରଫୁଲ୍ଲିତ ମନ ।

ମହାବେଦୀରୁ ବସନ ଫେଇ ନରପତି
ଦେଖିଲେ ଅତି ବିଚିତ୍ର ଚତୁର୍ଦ୍ଧା ମୂରତି ।
ସକଳ ଲୋକେ ଦେଖିଲେ ଧନ୍ୟ ଧନ୍ୟ ହୋଇ
ଅପୂର୍ବ ସୁନ୍ଦର ଚାରି ମୂରତି ଯେ ତହିଁ ।
ସିଂହାସନେ ରାମକୃଷ୍ଣ ଭଦ୍ରା ସୁଦର୍ଶନ
କୋଟି ପୂର୍ଣ୍ଣଚନ୍ଦ୍ର ଜିଣି ଉଜ୍ଜଳ ବରନ ।
ପଦ୍ମ ଆସନରେ ସ୍ଥିତ ପ୍ରଭୁ ଚକ୍ରଧର
କୃପାରେ ସହାସ୍ୟ ମୁଖ ସୁରଙ୍ଗ ଅଧର ।
ଚଉସର ବକ୍ଷସ୍ଥଳ ଅତି ଶୋଭା ଧରେ
ଶଙ୍ଖ ଚକ୍ର ଗଦାପଦ୍ମ ଶୋହେ ଚାରିକରେ ।
ସଜ ଶ୍ୱେତପଦ୍ମ ଜିଣି ସୁନ୍ଦର ନୟନ
ଦରଶନ ମାତ୍ରେ ପାପ ହୁଏ ବିମୋଚନ ।
ଦାରୁବ୍ରହ୍ମ ଦେହଧରି ପ୍ରଭୁ ପୀତବାସ
ତେଜରେ ସେ ଦଶଦିଗ କରନ୍ତି ପ୍ରକାଶ ।
ନବୀନ ନୀରଦ ତନୁ ରସେ ଢଳ ଢଳ
ମସ୍ତକେ ଫୁଲ ଟାହିଆ କର୍ଣ୍ଣରେ କୁଣ୍ଡଳ ।
ମନୋହର ବାଙ୍କ ଚୂଳେ ମଲ୍ଲୀ ମାଳବେଢ଼ା
ତହିଁ ଶୋଭେ ଶିଖିଶିଖା କେତକୀ ପାଖୁଡ଼ା ।
ସେବତୀ ବଉଳ ଚମ୍ପା ଦୟଣାର ହାର
ବନମାଳା ବୈଜୟନ୍ତୀ ଗଳାକୁ ସୁନ୍ଦର ।
କଣ୍ଠେ ରତ୍ନ ରୂପସରୀ ଦିଶେ ଜକ ଜକ
ହୃଦୟେ କୌସ୍ତୁଭମଣି ଶ୍ରୀବତ୍ସ ପଦକ ।
ବ୍ୟାଘ୍ର ନଖୀ କଣ୍ଠି ଝୁଲେ ପୋହଳାର ମାଳ
ତଥି ପାଶେ ଶୋଭା ପାଏ ମୋତି ହାରାବଳୀ ।
ମରୁଆ ମାଳତୀ ସଙ୍ଗେ ତୁଳସୀର ଧଣ୍ଡା
ଆଜାନୁ ସରକ ଲମ୍ବି ଅଛି ପେଣ୍ଡା ପେଣ୍ଡା ।
ନାସେ ଗଜ ମୋତିବର ଅମୂଲ୍ୟ ବସଣୀ
ଲଲାଟେ ଚନ୍ଦନ ଚିତା ସୁନାଚିତା ମଣି ।
କନ୍ଧେ ସୁବର୍ଣ୍ଣ ଉତ୍ତରୀ ଦିଶେ ଦାଉ ଦାଉ
ବାହେ ବାହୁଟି ବଳୟ ରତନେ ଜଡ଼ାଉ ।
ଚମ୍ପା କଳୀ ଜିଣି ନୀଳ ଅଙ୍ଗୁଳି ଯାକରେ
ବଙ୍କା ହୀରା ମୁଦ୍ରିକା ଯେ ଅତି ଶୋଭା ଧରେ ।
ସୁଝୀନ ପୀତ-ବସନ ଦିଶେ ଝଟ ଝଟ
କ୍ଷୁଦ୍ର ଘଣ୍ଟି ମେଖଳା କିଙ୍କିଣୀ କଟିତଟ ।
ଚରଣ ପଦ୍ମେ ଶୋଭଇ ରତନ ଘୁଙ୍ଗୁର
ବିଚିତ୍ର ବାଜେଣି ବଳା ମଞ୍ଜୁଳ ମଞ୍ଜୀର ।

ପ୍ରଫୁଲେ ଫୁଟିଆ ପାଟଳ ଅପୂର୍ବ ମାଧୁରୀ
ନବ ନଟବର ବେଶ ପ୍ରଭୁ ଦେବ ହରି ।
ସୁରମ୍ୟ ନବଲାବଣ୍ୟ ନବ ତ୍ରିଭଙ୍ଗିମା
ଦେଖି ଚକ୍ଷୁ ମନ ଭୁଲେ ଶ୍ରୀଅଙ୍ଗ ସୁଷମା ।
ଚତୁର ହସ୍ତେ ଚତୁର ଆୟୁଧକୁ ଧରି
ନାଶନ୍ତି ଶୋକ ସନ୍ତାପ ସୁଖଦାନ କରି ।
ସର୍ବାଙ୍ଗ ଭୂଷିତ ନାନା ରତ୍ନ ଆଭରଣେ
ବଳରାମ ରହିଛନ୍ତି ତାହାଙ୍କ ଦକ୍ଷିଣେ ।
ବାରୁଣୀ ମଦିରା ପାନେ ଘୂର୍ଣ୍ଣିତ ଲୋଚନ
ସାକ୍ଷାତ ଅନନ୍ତଦେବ ଧବଳ ବଦନ ।
ମସ୍ତକରେ ସପ୍ତଫଣା ମଣ୍ଡଳ ବିସ୍ତାର
ତାହାଙ୍କ ବିଗ୍ରହ ଦିଶେ କୁଣ୍ଡଳୀ ଆକାର ।
ଅଳ୍ପ ନତ ପୃଷ୍ଠ ଉରୁ ଉଚ୍ଚ ପରିସର
ଚକ୍ରପରି ଫଣାବୃନ୍ଦ ମସ୍ତକ ଉପର ।
ଲାଙ୍ଗଳ ମୂଷଳ ଦୋ କମଳ ଧାରଣ
ବନମାଳା ହାର ତାଙ୍କ ବଳୟ ଭୂଷଣ ।
ମାଥେ ମୁକୁଟ ସହିତ କିରୀଟ ଉଜ୍ଜ୍ୱଳ
କୈଳାସ-ପର୍ବତ ସମ ଶ୍ରୀଅଙ୍ଗ ଧବଳ ।
ଦିବ୍ୟ ନୀଳ ପାଟବସ୍ତ୍ର ତାଙ୍କ ପରିଧାନ
ଦେଖି ପ୍ରେମ ଜଳେ ପୂର୍ଣ୍ଣ ରାଜାର ନୟନ ।
ସେ ପ୍ରଭୁ ଦୁହିଙ୍କ ମଧ୍ୟେ ସୁଭଦ୍ରା ଭଗିନୀ
ସାକ୍ଷାତେ କମଳା ଅଂଶେ ଜଗତଜନନୀ ।
ସର୍ବମଙ୍ଗଳ ଦାୟିନୀ ସର୍ବସୁଲକ୍ଷଣୀ
ଅପାର ମହିମାମୟୀ ମଧୁର ହାସିନୀ ।
ଅଭୟ ହସ୍ତା ସେ ଦେବୀ ପଙ୍କଜ ଧାରିଣୀ
ସୁରଙ୍ଗ ପାଟ ବସନା କମଳ ନୟନା ।
ବଳରାମ ସହୋଦରୀ କୁଙ୍କୁମ ବରଣୀ
ପାପ ସମୁଦ୍ର ତାରିଣୀ ପଦ୍ମ ସୁବାସିନୀ ।
ବିକଚ କମଳ ଜିଣି ପ୍ରସନ୍ନ ଲପନୀ
ଲାବଣ୍ୟ ଅଙ୍ଗିମା ଦେବୀ ରମ୍ୟ ସୀମନ୍ତିନୀ ।
ବିଷ୍ଣୁଙ୍କ ବାମେ ଶୋଭଇ ଚକ୍ର ସୁଦର୍ଶନ
ବାଳସୂର୍ଯ୍ୟ ପ୍ରଭା ଜିଣି ଅରୁଣ ବରନ ।
ତୀକ୍ଷ୍ଣ ଧାର ତେଜୋମୟ ଅପୂର୍ବ ମୂରତି
ଦରଶନେ ଧର୍ମସୁତଙ୍କ ନୟନ ଆରତି ।
ଦାରୁବ୍ରହ୍ମ ପ୍ରକାଶ ହୋଇଲେ ଏହି ମତେ
ସର୍ବଜନେ ଚତୁର୍ଭୁଜ ଦେଖିଲେ ସାକ୍ଷାତେ ।

ଏହି ରୂପେ ପ୍ରତ୍ୟକ୍ଷ ହୋଇ ଶ୍ରୀଭଗବାନ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କୁ କରିବେ ବରଦାନ ।
ସେ ଚତୁର୍ଦ୍ଧା ମୂର୍ତ୍ତିଙ୍କି ଯେ ସାକ୍ଷାତେ ଦେଖିବେ
ଜୀବ ମାନେ ମୁକ୍ତ ହୋଇ ବୈକୁଣ୍ଠକୁ ଯିବେ ।
ସେ କାରଣେ ଉପାୟ କରିବେ ଭଗବାନ
ଯୁଗ ଅନୁରୂପେ ଦେବେ ଦରଶନ ଦାନ ।
ସତ୍ୟ ଆଦି ଯୁଗେ ଚତୁର୍ଭୁଜ ଦରଶନ
କଳି ଯୁଗେ ଦ୍ୱିଭୁଜ ଦେଖିବେ ପ୍ରାଣୀଗଣ ।
ପୂର୍ଣ୍ଣବ୍ରହ୍ମ ସନାତନ ପ୍ରଭୁ ଦାରୁମୟେ
ଯେତେକ ଯେ ଲୀଳା କରନ୍ତି ତା ସତ୍ୟ ନିଶ୍ଚୟେ ।
ଆଉ ଏକ ଗୂଢ଼ କଥା ଏଥି ମଧ୍ୟେ ହୁଏ
ଅତିଗୁପ୍ତ କଥା ପ୍ରକାଶର ଯୋଗ୍ୟ ନୁହେ ।
ପୂର୍ବେ ଶମନ ଯେ କାଳେ କଲେକ ପ୍ରାର୍ଥନା
ପୂର୍ବଖଣ୍ଡେ ଅଛି ତାହା ବିସ୍ତାର ବର୍ଣ୍ଣନା ।
ଯମଙ୍କ ସ୍ତୁତିରେ ବଶ ହୋଇ ଭଗବାନ
ଶ୍ରୀନୀଳମାଧବ ରୂପ କଲେ ଅନ୍ତର୍ଦ୍ଧାନ ।
ଅବିଶ୍ୱାସୀ ଜନ ଯେତେ ସଂସାର ମଧ୍ୟର
ତାଙ୍କ ପ୍ରତି ଯମଙ୍କୁ ଦେବାକୁ ଅଧିକାର ।
ସେହି ପ୍ରଭୁ ଲୀଳା ବିସ୍ତାରିଲେ ସଂଗୋପନେ
ଯମ ଅଧିକାର ନାହିଁ ବିଷ୍ଣୁଭକ୍ତ ଜନେ ।
ପୁଣି ଦାରୁ ଦେହ ଧରି ପ୍ରକାଶ ହୋଇଲେ
ବିଶ୍ୱାସ ଅବିଶ୍ୱାସକୁ ଅପେକ୍ଷା ରଖିଲେ ।
ଦାରୁଦେହ ଦେଖି ଯେବା ଅବିଶ୍ୱାସ କରେ
ଘୋର ରୌରବ ମଧ୍ୟରେ ସେହି ବାସକରେ ।
ସାକ୍ଷାତ ପରମବ୍ରହ୍ମ ଜାଣେ ଯେଉଁ ଜନ
ମରଣ ଅନ୍ତେ ବୈକୁଣ୍ଠେ ସେ କରେ ଗମନ ।
ସେହି ନୀଳମାଧବ ଆପଣେ ଜଗନ୍ନାଥ
ଚତୁର୍ଭୁଜମୂର୍ତ୍ତି ଧରି ହୋଇଲେ ସାକ୍ଷାତ ।
ସଦା ଯଦି ଦରଶନ ଦିଅନ୍ତି ସେହିରୂପେ
କେମନ୍ତେ କରୁଣା ଦାନ ରହେ ମୃତ୍ୟୁ ଭୂପେ ।
ସେ କାରଣେ ଜଗନ୍ନାଥ ସୂକ୍ଷ୍ମ ମୂର୍ତ୍ତି ଧରି
ପ୍ରତିମା ଭିତରେ ରହିଛନ୍ତି ଗୁପ୍ତକରି ।
ସେହିରୂପେ ବଳରାମ ଭଦ୍ରା ସୁଦର୍ଶନ
ନିଜ ନିଜ ସୂକ୍ଷ୍ମ ମୂର୍ତ୍ତି ଅନ୍ତରେ ଗୋପନ ।
ବାହାରେ ଦ୍ୱିଭୁଜ ସର୍ବେ କରନ୍ତି ଦର୍ଶନ -
ଚତୁର୍ଭୁଜ ମୂରତି ଅନ୍ତରେ ସୁଗୋପନ ।

ସେହି ବାହ୍ୟ ମୂର୍ତ୍ତି ଦେଖି ବିଶ୍ୱାସ ଯେ କରେ
ଅନାୟାସେ ଭବ-ସମୁଦ୍ରରୁ ସେହୁ ତରେ ।
ସବୁରି ଉପାସ୍ୟ ଦାରୁବ୍ରହ୍ମ ନାରାୟଣ
ଭାବ ମତେ ଦେଖନ୍ତି ଯେ ଭାବ ସିଦ୍ଧଜନ ।
ଶାକ୍ତ ସୌର ଗାଣପତ୍ୟ ଶୈବ ବା ବୈଷ୍ଣବେ
ଦରଶନ କରିବେ ଯେ ଅବା ଯେଉଁ ଭାବେ ।
ଭାବଗ୍ରାହୀ ଭକତ ବତ୍ସଳ ଭଗବାନ
ସେହି ଭାବେ ତାହାଙ୍କୁ ସେ ଦେବେ ଦରଶନ ।
ଯେଉଁ ଜନ ଯେଉଁରୂପେ ଆଚରିବେ ସୁକ୍ତି
ସେହିରୂପେ ତାଙ୍କୁ ଦେଖା ଦେବେ ଶ୍ରୀପତି ।
ଭାବକୁ ନିକଟ ପ୍ରଭୁ ଅଭାବକୁ ଦୂର
ତେଣୁ ଭାବଗ୍ରାହୀ ନାମ ବ୍ରହ୍ମାଣ୍ଡ ଠାକୁର ।
ସର୍ବ ଦେବମୟ ହରି ସର୍ବ ଅନ୍ତର୍ଯ୍ୟାମୀ
ଅପାର ମହିମାମୟ ଜଗତର ସ୍ୱାମୀ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଜୀବନ ସଙ୍ଗାଳ
ମହା ବଳୀୟାନ ବାହୁ ପ୍ରଭୁ ବନମାଳୀ ।
କ୍ଷମାଦାନୀ କରୁଣା ସାଗର ସତ୍ୟବାଦୀ
ଶରଣାଗତ ପାଳକ ମହିମା ବାରିଧି ।
ବାଞ୍ଛାପୂର୍ଣ୍ଣକାରୀ ସର୍ବ ଦୁଃଖ ଶୋକହାରୀ
କଳିଯୁଗ ପ୍ରାଣୀଙ୍କର ମୁକ୍ତି ଅଧିକାରୀ ।
ଦରିଦ୍ର-ବାନ୍ଧବ ପ୍ରଭୁ ବିଶ୍ୱତପଦ ଭୋଳା
ଭକତ ଭାବରେ ସଦା ହୋଇବନ୍ତି ଭୋଳା ।
ଯେହୁ ଯେବଣ ରୂପରେ କରିବେ ଦର୍ଶନ
ତାଙ୍କୁ ସେ ମୂର୍ତ୍ତିରେ ପ୍ରଭୁ ହେବେ ସୁ-ପ୍ରସନ୍ନ ।
ଶ୍ରୀନୀଳାଦ୍ରି ଚୂଡ଼ାମଣି କମଳା ବିଳାସ
ତାଙ୍କ ଦାସ ଭଣିଲେ ମୁଁ ବୈଷ୍ଣବ ଦାସ ।

—:*:—

## ପ୍ରିୟମ୍ୱଦର ଗଣେଶରୂପେ ଜଗନ୍ନାଥ ଦର୍ଶନ

### ଶୌନକ ଉବାଚ

ଜୈମିନି ଋଷିଙ୍କ ଆଗେ ପୁଚ୍ଛନ୍ତି ଶୌନକ
କହ କହ ତପୋଧନ କଥା ଠିକ ଠିକ ।
କିଏ କେବେ କେଉଁରୂପ ଚିନ୍ତାକରି ମନ
ଆସିଥିଲେ ଶ୍ରୀକ୍ଷେତ୍ରକୁ ଇଷ୍ଟ ଦରଶନେ ।
କେମନ୍ତେ ତାହାଙ୍କ ବାଞ୍ଛା ପୂର୍ଣ୍ଣ କଲେ ହରି
ସେ କଥା ପ୍ରକାଶ କର କରୁଣା ବିସ୍ତାରି ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ତହିଁ ମୃଦୁ ମୃଦୁ ହସି
କହୁଅଛି ତୁମ୍ଭ ଆଗେ କଥାଏ ଶୁଣ ଋଷି ।
ପୁରାତନ କଥା ଏକ ଖ୍ୟାତ ସର୍ବଜନେ
ଭକତ ଅଇଲା ଜଗନ୍ନାଥ ଦରଶନେ ।
ଗଣେଶ ସେବକ ପ୍ରିୟମ୍ବଦ ନାମ ତାର
ବହୁଶ୍ରମେ ପଥଚାଲି ଆସିଲା ସତ୍ୱର ।
ସ୍ନାନମଞ୍ଚେ ଜଗନ୍ନାଥ ଚତୁର୍ଦ୍ଧା ମୂରତି
ଦେଖି ପ୍ରିୟମ୍ବଦ ହେଲା ମହା ଦୁଃଖମତି ।
ନିଜ ଇଷ୍ଟଦେବ ମୂର୍ତ୍ତି ନପାଇ ଦର୍ଶନ
ଦୁଃଖମନେ ବାହୁଡ଼ିଲା ସେଠାରୁ ବହନ ।
ଅଠରନଳା ଠାବେ ସେ ମିଳନ୍ତେ ଯାଇଣ
ଆଚମ୍ବିତେ ଏକଧ୍ୱନି କଲା ସେ ଶ୍ରବଣ ।
କେବଣେ ଯାଉ ଭକ୍ତବର ମୋତେ ଭୁ ମୂରୁଚ୍ଛି
ତୋର ପ୍ରଭୁ ମୁହିଁ ସ୍ନାନମଣ୍ଡପେ ବସିଛି ।
ଯାଇ ଗଣପତି ରୂପ ପାଇବୁ ଦର୍ଶନ
ତାହା ଶୁଣି ପ୍ରିୟମ୍ବଦ ସବସ୍ପୁ ମନ ।
ଆଶ୍ଚର୍ଯ୍ୟମଣି ସେ ବାଣୀ ଶୁଣିହେଁ ଚଉଦିଗେ
ଟିକେ କହିଲା ସୁଧାବାଣୀ ନାହିଁତ ମୋ ଆଗେ ।
ଯାତପାଞ୍ଚ ବିଚାର କରିଣ ତାର ମନେ
ଚାଲିଉଠିଲା ଆପଣାର ପ୍ରଭୁ ଦରଶନେ ।
ସିଂହଦ୍ୱାର ଟପିଯାଇ ଅତି ମନସ୍ତୁଷ୍ଟେ
ତରତରେ ଉଠିଲା ସେ ବାଇଶ ପାବଚ୍ଛେ ।
ସ୍ନାନ ମଣ୍ଡପକୁ ଗଲା ଉତ୍କଣ୍ଠିତ ମନେ
ପ୍ରେମ ଲୋତକ ପଡ଼ୁଛି ତା ବେନି ନୟନେ ।
ଦେଖି ନିଜ ଇଷ୍ଟଦେବ ଗଣେଶ ମୂରତି
ଦେବସ୍ନାନ ବେଦୀପରେ ବିରାଜ କରନ୍ତି ।
ଚତୁର୍ଭୁଜ ଗଜାନନ ଅଙ୍ଗ ଜ୍ୟୋତିର୍ମୟ
ଦେବଗଣ ଚୌଦିଗେ କରନ୍ତି ଜୟ ଜୟ ।
ମୂଷିକବାହନେ ସ୍ଥିତ ଅଖିଳର ପତି
ସର୍ବପରି ନ ଦେଖଇ ସେ ରୂପ ମୂରତି ।
ଇଷ୍ଟଦେବଙ୍କୁ ଦେଖି ସେ ଭାବେ ହେଲା ଭୋଳା
ସାଷ୍ଟାଙ୍ଗ ହୋଇ ଭୂମିରେ ଦଣ୍ଡବତ କଲା ।

ଭଣ୍ଡାହୋଲ କରଯୋଡ଼ି କରନ୍ତି ବନ୍ଦନ
ଜୟ ଜୟ ପ୍ରଭୁର ଆଶ୍ରୟ ଗଜାନନ ।
ଜୟ ସର୍ବ ବିଘ୍ନନାଶ ସର୍ବାଙ୍ଗ ସୁନ୍ଦର
ଜୟ ଭକ୍ତ ହିତକାରୀ ପାଶାଙ୍କୁଶ କର ।
ଏହିମନ୍ତେ ନାନାମତେ କାକୁରେ ସ୍ତୁତି କଲା
ହରଷେ ଶ୍ରୀନନ୍ଦନ ବାମ କଟେ ସେ ରହିଲା ।
ସେହି ଅବଧିରୁ ଦାରୁବ୍ରହ୍ମ ଭଗବାନ
ଗଣେଶ ବେଶ ଧରନ୍ତି ସ୍ନାନଯାତ୍ରା ଦିନ ।
ଏଣୁ ପରଂବ୍ରହ୍ମ ହରି ଯଥା ଅବତାର
କି ବିଚିତ୍ର ଚତୁର୍ଭୁଜ ଦ୍ୱିଭୁଜ ହେବାର ।
ସେହି ପ୍ରଭୁ ସତ୍ୟ ତ୍ରେତା ଦ୍ୱାପର କଳିରେ
ଭକ୍ତଙ୍କୁ ଦର୍ଶନ ଦିଅନ୍ତି ଭାବ ଅନୁସାରେ ।
ଏକଥା ବୁଝନ୍ତି ଜାଣନ୍ତି ଭାବସିଦ୍ଧ ଜନେ
ପ୍ରଭୁର ଈଶ୍ୱର ଦାରୁବ୍ରହ୍ମ ସେ ଆପଣେ ।
ଆଉ ଏକ ଗୂଢ଼କଥା ଶୁଣ ମନଦେଇ
ପୁରାଣର ଗୁପ୍ତଅର୍ଥ କହୁଅଛି ବୁଝାଇ ।
ଦେହଛଡ଼ା ହୋଇ ଯେହ୍ନେ ନ ରହଇ ପ୍ରାଣ
ଦାରୁଦେହ ଧରିଛନ୍ତି ତେହ୍ନେ ନାରାୟଣ ।
ଅଗ୍ନି ଯେହ୍ନେ ଛଡ଼ାନୁହେ ଦାହିକା ଶକତି
ତେସନେଟି ଦାରୁ ଦେହଧାରୀ ଲକ୍ଷ୍ମୀପତି ।
କ୍ଷୀର ଯେହ୍ନେ ଅଛି ସଦା ଗାଭୀର ସ୍ତନରେ
ତେହ୍ନେ ଦାରୁମୟ ବ୍ରହ୍ମ ଜାଣ ଯଥାର୍ଥରେ ।
ଅଦ୍ୟାପି ଯେ ରାଜବେଶ ଧରନ୍ତି ସେକାଳେ
ସୁବର୍ଣ୍ଣର ହସ୍ତ ପାଦ ଦେଖନ୍ତି ସକଳେ ।
ସେହିକାଳେ ଚତୁର୍ଭୁଜ ମୂରତି ପ୍ରକାଶ
କୋଟି କନ୍ଦର୍ପର ଦର୍ପହାରୀ ଶ୍ରୀନିବାସ ।
ଯୁଗ ଅନୁସାରେ ଯେହ୍ନେ ପ୍ରଭୁଙ୍କ ଦର୍ଶନ
କଳପବଟ ଦେଉଳ ଦର୍ଶନ ତେସନ ।
ଏଣୁ ଜଗନ୍ନାଥ ଲୀଳା ଅତି ଗୂଢ଼ତର
ବ୍ରହ୍ମା ଆଦି ଜାଣିବାକୁ ସେଲୀଳା ଦୁଷ୍କର ।
ଏଥି ତର୍କ କରି ଯେବା ଅବିଶ୍ୱାସ କରେ
ନିଶ୍ଚୟ ସେ ମୂଢ଼ ଯମଦଣ୍ଡ ଭୋଗକରେ ।
ଦୃଢ଼ ବିଶ୍ୱାସରେ ଯେହୁ କରେ ଦରଶନ
ଅନ୍ତକାଳେ ଲଭଇ ସେ ଗୋବିନ୍ଦ ଚରଣ ।
ଏହା ସବୁ ପୁରାଣର ଅର୍ଥ ଗୂଢ଼ତର
କହିବାକୁ ଅଯୋଗ୍ୟ ମୁଁ ଅଜ୍ଞାନ ପାମର ।
ଏସବୁ ଲୀଳାର ତତ୍ତ୍ୱ ମୁଁ ମୂଢ଼ର କି ଜାଣେ
ଶାସ୍ତ୍ରଗୁରୁ ଆଜ୍ଞାମତେ ପ୍ରାକୃତେ ବଖାଣେ ।
ସ୍ୱପ୍ନେ ଆଦେଶିଲେ ମୋତେ ଭକ୍ତଙ୍କ ବାନ୍ଧବ
ମୋର ନୀଳାଦ୍ରି ଲୀଳାକୁ ବସି ଲେଖ ସବ ।
ଶ୍ରୀଜଗଦୀଶ ପୁରାଣ ନାମେ ଗ୍ରନ୍ଥଗୋଟି
ଗୀତ ପ୍ରବନ୍ଧରେ ବାନ୍ଧ ନ କରିଣ ତ୍ରୁଟି ।
ମୁଁ ତୋର ଗୁରୁଙ୍କ ଗୁରୁ ଆରେ ବାପୁ ଦାସ
କହୁଅଛି ମନୁ ନ ଭୁଲିବୁ ଏ ମୋ ଭାଷ ।
ନିଶି ଚତୁର୍ଥ ପ୍ରହର ପାହାନ୍ତି ସମୟେ
ଚକାଡୋଳାଙ୍କର ଆଜ୍ଞା ହେଲା ଏହି ପ୍ରାୟେ ।
ଆପଣେ ଶ୍ରୀଅଙ୍ଗଲଗ୍ନା ମାଳ ମୋର ଗଳେ
ହସି ହସି ଲମ୍ବାଇଣ ଦେଲେ କୃପାବଳେ ।
ଅପୂର୍ବ ସୁଗନ୍ଧ ସେହି ଉଲଗି ଧଣ୍ଡାଟି
ମୋ ଶୟନ ଗୃହ ଗୋଟି ପଡ଼ଇ ଚହଟି ।
ସେ ବୈଷ୍ଣବ ବେଶଧାରୀ କରି ଆଜ୍ଞାଦାନ
ଦେଖୁ ଦେଖୁ ଚକ୍ଷୁ ଆଗୁଁ ହେଲେ ଅନ୍ତର୍ଦ୍ଧାନ ।
ସ୍ୱପ୍ନ ଚେତ ଚିନ୍ତିଲି ସେ ଆଦେଶ ବଚନ
ଭାବନା ଲୋତକେ ପୂରିଗଲା ମୋ ନୟନ ।
ପ୍ରଭାତ ସମୟେ ଇଷ୍ଟମନ୍ତ୍ର ସୁମରିଲି
ନିତ୍ୟକର୍ମ୍ମ ସ୍ନାନ ଧ୍ୟାନ ଆହ୍ନିକ ସାରିଲି ।
ଲେଖନୀ ଘେନି ବସିଲି ପୁରାଣ ରଚନେ
କିଏ ସତେ କହିଦିଏ ପଦମାନ ମନେ ।
ସଂସ୍କୃତ ଉତ୍କଳ ଖଣ୍ଡ ନାମେ ଗ୍ରନ୍ଥସାର
ତା ଆଶ୍ରିତେ ବିରଚିଲି କରି ସାରୋଦ୍ଧାର ।
ସ୍କନ୍ଦ ପୁରାଣ ବୈଷ୍ଣବ ଖଣ୍ଡ କ୍ଷେତ୍ରତତ୍ତ୍ୱ
ଦୁଇଗ୍ରନ୍ଥ ଐକ୍ୟ କରି ଲେଖିଲି କବିତ୍ୱ ।
ବାତୁଳର ବାକ୍ୟବୋଲି ନ କର ହେ ଘୃଣା
କରଯୋଡ଼ି ଏ ବୈଷ୍ଣବ ଦାସ କରେ ଜଣା ।

---8*8---

## ଇନ୍ଦ୍ରଦ୍ୟୁମ୍ନ ସରୋବର ଉତ୍ପତ୍ତି କଥନ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ବିପ୍ରଗଣ
ଏହିରୂପେ ପ୍ରକଟିଲେ ଜଗତ-ମୋହନ ।

ଚତୁର୍ଦ୍ଧା ମୂରତି ଦୀନବନ୍ଧୁ ଭଗବାନ
ଦେଖି ଆନନ୍ଦସାଗରେ ବୁଡ଼ିଲା ରାଜନ ।
ବାହ୍ୟଜ୍ଞାନ ପାଶୋରିଲା ଅବନୀର ନାଥ
ବାଷ୍ପ ଜଳ ଝଳ ଆଖି ଝରଇ ନିରନ୍ତ ।
ସ୍ତମ୍ଭପ୍ରାପ୍ତ କରଯୋଡ଼ି ଅଛି ଠିଆହୋଇ
ପ୍ରେମଜଳେ ବକ୍ଷସ୍ଥଳ ହୋଇଯାଏ ଧୋଇ ।
ସେହିକାଳେ ହାସ୍ୟମୁଖେ ଭଣିଲେ ନାରଦ
ଶୁଣ ରାଜା ଇନ୍ଦ୍ରଦ୍ୟୁମ୍ନ ମୋ କହିବା ପଦ ।
ଏତେ ଶ୍ରମ କଲ ତୁମ୍ଭେ ଯାହାର କାରଣେ
ସେହିଫଳ ପ୍ରତ୍ୟକ୍ଷ ହୋଇଲା ଏତେଦିନେ ।
ପୃଥିବୀ ମଧ୍ୟରେ ତୁମ୍ଭେ ଏକା ଭାଗ୍ୟବାନ
ଏହି ଦେଖ ଜଗନ୍ନାଥ କମଳ ଲୋଚନ ।
ଯାହାଙ୍କୁ ଦେଖିବାପାଇଁ ଯୋଗୀ ଋଷିଗଣ
ଧ୍ୟାନଯୋଗେ ଅନୁକ୍ଷଣ କରନ୍ତି ଯତନ ।
ବହୁଯତ୍ନେ ରୂପ ଦେଖନ୍ତି କି ନ ଦେଖନ୍ତି
ସେହି ପ୍ରଭୁ ଦାରୁରୂପେ ପ୍ରକଟିଲେ ଏଥି ।
ତୁମ୍ଭଠାରେ ଦୟାବହି ଜଗତ ଈଶ୍ୱର
ଅନାଦି ପୁରୁଷ ହେଲେ ସବୁରି ଗୋଚର ।
ଏଣୁ ସ୍ତୁତିକର ଏହି ଦାରୁ ନାରାୟଣେ
ସନ୍ତୋଷରେ ବାଞ୍ଛାପୂର୍ଣ୍ଣ କରିବେ ବହନେ ।
ଏହାଶୁଣି ଇନ୍ଦ୍ରଦ୍ୟୁମ୍ନ ଯୋଡ଼ି ଦୁଇକର
ବେଦର ବିଧାନେ ସ୍ତବକଲେ ମନୋହର ।
ଜଗନ୍ନାଥ ବଳଦେବ ଭଦ୍ରା ସୁଦର୍ଶନେ
ସ୍ତୁତିକଲେ ଆଉ ତହିଁ ଥିଲେ ଯେତେଜନେ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚତୁର୍ବର୍ଣ୍ଣ
ସକଳେ ଏକତ୍ର ମିଳି କରନ୍ତି ବନ୍ଦନ ।
କିବାମନ୍ତ୍ର କିବାସ୍ତୋତ୍ର କବିତା ପୁରାଣେ
ଯାହାକୁ ଆସଇ ଯାହା ଗାଏ ସେ ହରଷନେ ।
ଗଦ ଗଦ ଶବଦରେ ଉଚ୍ଛୁଳେ ସେ ସ୍ଥାନ
ହରିବୋଲ ହୁଳହୁଳି ଘଣ୍ଟେ ଘନଘନ ।
ରୁଣ୍ଡହୋଇ ଦେଖୁଛନ୍ତି ନରନାରୀମାନେ
ଶ୍ରୀକ୍ଷେତ୍ର ଉଲ୍ଲସି ଉଠେ ସ୍ତୁତି ଗୀତଗାନେ ।
ଇନ୍ଦ୍ରଦ୍ୟୁମ୍ନ ମହାରାଜା ହରଷିତ ହୋଇ
ବିନମ୍ର କରି କହିଲେ ପୁରୋହିତେ ଚାହିଁ ।
ପ୍ରଭୁ ପୂଜା ଲାଗି କର ଦ୍ରବ୍ୟ ସୁ-ସଂସ୍କାର
ଶୁଣି ପୁରୋହିତ କଲେ ଅନେକ ସମ୍ଭାର ।

ତହୁଁ ନରପତି ନାରଦଙ୍କ ଉପଦେଶେ
ମନ୍ତ୍ର ବିଧାନରେ ପୂଜା କରନ୍ତି ହରଷେ ।
ଦ୍ୱାଦଶ ଅକ୍ଷର ମନ୍ତ୍ରେ ପୂଜେ ବଳରାମ
ଯାହା ଉପଦେଶେ ଧ୍ରୁବ ପାଏ ଶ୍ରେଷ୍ଠ ଧାମ ।
ମନ୍ତ୍ରରାଜ ଅଟଇ ଯେ ଅଷ୍ଟାଦଶାକ୍ଷର
ସେହି ମନ୍ତ୍ରେ ପୂଜା କଲେ ଜଗତ ଈଶ୍ୱର ।
ବେଦ ମଧ୍ୟେ ପ୍ରସିଦ୍ଧ ପୁରୁଷସୂକ୍ତ ମନ୍ତ୍ର
ତହିଁରେ ପୂଜିଲେ ରାଜା ପ୍ରଭୁଙ୍କୁ ସ୍ୱତନ୍ତ୍ର ।
ଲକ୍ଷ୍ମୀ ମନ୍ତ୍ରେ ସୁଭଦ୍ରାଙ୍କ ଅର୍ଚ୍ଚନ ବିଧାନେ
ସୌଦର୍ଶନ ମନ୍ତ୍ରେ ପୂଜା କଲେ ସୁଦର୍ଶନେ ।
ବହୁବିଧ ଉପହାରେ ପୂଜି ଭଗବାନ
ପ୍ରଭୁ ପ୍ରୀତି ଅର୍ଥେ ଦ୍ୱିଜେ ଦେଲେ ବହୁ ଦାନ ।
ସମାଦରେ ସାଧୁ ବୈଷ୍ଣବଙ୍କୁ ସେହିପରି
ତୋଷ କଲେ ମହାରାଜା ଅତି ଯତ୍ନକରି ।
ତୁଳା ପୁରୁଷାଦି ଆଉ ମହାଦାନମାନ
କେତେ ଯେ ଦେଲେ ନୃପତି କେ କରେ ଗଣନ ।
ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ ହେତୁ ନରରାୟେ
କୋଟି କୋଟି ଧେନୁ ଦେଲେ ଆନନ୍ଦ ହୃଦୟେ ।
ସୁବର୍ଣ୍ଣ ମୁକ୍ତାମାଳାରେ ମଣ୍ଡି ଗାଭୀଗଣ
ବହୁତ ଦକ୍ଷିଣା ତୁଲେ ରାଜା କଲେ ଦାନ
ସେ ଗାଭୀଙ୍କ ଖୁରୁ ଅଗ୍ରେ ଯେଉଁ ଗର୍ତ୍ତ ହେଲା
ଦାନ ଜଳେ ପରି ମହାତୀର୍ଥ ହୋଇଗଲା ।
ଇନ୍ଦ୍ରଦ୍ୟୁମ୍ନ ସରୋବର ହେଲା ତାର ନାମ
ସାର୍ଦ୍ଧ ତିନକୋଟି ତୀର୍ଥ ତହିଁ ଅଧିଷ୍ଠାନ ।
ସେହି ସରୋବରରେ ସ୍ନାନ କରି ଯେଉଁ ଜନ
ବିଧିମତେ ପିତୃ ଦେବେ କରଇ ତର୍ପଣ ।
ସହସ୍ରେକ ଅଶ୍ୱମେଧ ଫଳ ସେହୁ ପାଏ
ଅନ୍ତକାଳେ ସ୍ୱଚ୍ଛନ୍ଦରେ ବୈକୁଣ୍ଠକୁ ଯାଏ ।
ପିତୃଗଣେ ପିଣ୍ଡଦାନ ଯେ କରଇ ତହିଁ
ସେହି ଭାଗ୍ୟବାନ କୋଟି କୁଳ ଉଦ୍ଧାରଇ ।
ଦେହାନ୍ତରେ ବ୍ରହ୍ମଲୋକେ କରଇ ସେ ବାସ
ପୁନର୍ଜନ୍ମ ନ ହୁଅଇ ଆସି ମର୍ତ୍ତ୍ୟ ଦେଶ ।
ଗଙ୍ଗା ସମାନ ଅଟଇ ସେହି ତୀର୍ଥବର
ସ୍ନାନ କରି ବିଷ୍ଣୁ ଦାସ ଭବୁଁ ହେଉ ପାର ।

—:*:—

## ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଦେଉଳ ପ୍ରତିଷ୍ଠା ଉଦ୍ୟମ

ଜୈମିନି ଉବାଚ

ଜୈମିନି ଋଷି କହନ୍ତି ଏଥୁ ଅନନ୍ତରେ
ଏକମନ ହୋଇ ଶୁଣ ତାପସ ନିକରେ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଦେଉଳ ନିର୍ମାଣ
ସେହି ଶ୍ରୀମନ୍ଦିର ଯଥା ପ୍ରତିଷ୍ଠା ବିଧାନ ।
ବର୍ଣ୍ଣନ କରିବି ତାହା ଉତ୍ତମ ବିଧାନେ
ମନ କର୍ଣ୍ଣକୁ ନିବେଶ ଅତି ସାବଧାନେ ।
ମହାରାଜା ଇନ୍ଦ୍ରଦ୍ୟୁମ୍ନ ଜାଣି ଶୁଭଯୋଗ
ଶ୍ରୀମନ୍ଦିର ନିର୍ମାଣେ କଲେ ଉଦଯୋଗ ।
ଅମୃତ ମାହେନ୍ଦ୍ରବେଳା ହୁଅନ୍ତେ ପ୍ରବେଶ
ଶୁଭକ୍ଷଣେ ବିପ୍ରଗଣେ ଅର୍ଚ୍ଚିଲେ ନରେଶ ।
ମଙ୍ଗଳାଷ୍ଟକ ଆଦି ଯେ ପାଠ କରାଇଲେ
ବ୍ରାହ୍ମଣଙ୍କ ମୁଖେ ସ୍ୱସ୍ତି ଋଦ୍ଧି ବୋଲାଇଲେ ।
ମନେ ମନେ ବିଷ୍ଣୁପଦ କରି ସୁମରଣ
ଦେଉଳ ସ୍ଥାନରେ ଅର୍ଘ୍ୟ କଲେ ସମର୍ପଣ ।
ପୃଥ୍ୱୀଙ୍କି ଯେ ପ୍ରାର୍ଥନା କଲେ ନରନାଥ
ବୋଇଲେ ଭକତିଭରେ ହେ ଧରଣି ମାତ ।
ଚନ୍ଦ୍ର ସୂର୍ଯ୍ୟ ଯେ ପର୍ଯ୍ୟନ୍ତ ହେବେ ଗୋଚର
ସେ ଅବଧି ଏହି ସ୍ଥାନ ଦିଅ ଆଗୋ ମାତ ।
ତଦନ୍ତେଣ ବାସ୍ତୁ ଯାଗ କଲେକ ଯତନେ
ବହୁ ଉପହାର ଦେଲେ କର୍ମକାରୀଗଣେ ।
ମହା ମହୋତ୍ସବ ତହିଁ କଲେକ ଭିଆଣ
କେହି ଗାଏ କେହି ବାଏ କେ କରେ ନର୍ତ୍ତନ ।
ଅନାଥ ଦରିଦ୍ର ଜନେ ଅନ୍ନ ବସ୍ତ୍ର ଦେଲେ
ରାଜାମାନଙ୍କୁ ଚରିତ ମେଲାଣି ଯେ କଲେ ।
କୃତାର୍ଥ ହୋଇ ସକଳ ପ୍ରଭୁ ଦରଶନେ
ନିଜ ନିଜ ସ୍ଥାନେ ଗଲେ ହରଷିତ ମନେ ।
ପାଷାଣ ଛେଦନେ ଆଉ ପାଷାଣ ବହନେ
କୋଟି କୋଟି ସ୍ୱର୍ଣ୍ଣ ମୁଦ୍ରା ଦେଲେ ଜନଗଣେ ।
ସବୁଙ୍କି କହିଲେ ରାଜା ହରଷିତ ହୋଇ
ଅଷ୍ଟାଦଶ ଦ୍ୱୀପ ଅଧିକାରୀ ହୋଇ ମୁହିଁ ।
ବାହୁବଳେ ଯେତେ ଧନ କଲି ଉପାର୍ଜନ
ଦେଉଳ ନିର୍ମାଣେ ତାହା କଲଇଁ ଅର୍ପଣ ।
ଶ୍ରୀକ୍ଷେତ୍ର ପାଇବା କାର୍ଯ୍ୟେ ମୁଁ ଯେତେକ ଶ୍ରମ କଲି
ଦେଉଳ ରଚନେ ତାହା ସଫଳ ମଣିଲି ।
ଏଥୁଁ ବା ଅଧିକ ମୋର କି ଭାଗ୍ୟ ନୋହିବ
ଆପଣା ଅର୍ଜିତ ଧନେ ତୋଷିବି ମାଧବ ।
ଏହି କ୍ଷେତ୍ରବର ଅଟେ ବିଷ୍ଣୁଙ୍କ ଶରୀର
ମୁହିଁ ବୋଲି ଯାହାକୁ କହନ୍ତି ବିଶ୍ୱମ୍ଭର ।
ଆବିର୍ଭାବ ତିରୋଭାବ ନିତ୍ୟ ସ୍ଥିତି ଯହିଁ
ନିମିଷେ ଶ୍ରୀକ୍ଷେତ୍ର ନ ଛାଡ଼ନ୍ତି ରମାସାଇଁ ।
ନିଜ ନାମେ କ୍ଷେତ୍ରବର ଶ୍ରୀପୁରୁଷୋତ୍ତମ
ନିଶ୍ଚୟ ଅଟେ ମର୍ତ୍ତ୍ୟର ବଇକୁଣ୍ଠଧାମ ।
ଏହିରୂପେ ନୃପତି କହନ୍ତି ବାରଂବାର
କହୁ କହୁ ନେତ୍ରୁ ବହେ ପ୍ରେମ ଅଶ୍ରୁଧାର ।
ସେହି ସଭା ମଧ୍ୟେ ଥିଲା ଏକ ଦ୍ୱିଜବର
ଋକବେଦୀ ମହାଜ୍ଞାନୀ ବେଦାନ୍ତେ ତତ୍ପର ।
ମହା ଆନନ୍ଦ ହୋଇ ସେ ନୃପତିଙ୍କି କହେ
ମହା ଭାଗ୍ୟବନ୍ତ ତୁମ୍ଭେ ଶୁଣ ନରରାୟେ ।
ଚରାଚର ଗୁରୁ ଯେଉଁ ପ୍ରଭୁ ଜଗନ୍ନାଥ
ସ୍ୱୟଂ ଦାରୁ ମୂର୍ତ୍ତି ଧରି ହୋଇଲେ ସାକ୍ଷାତ ।
ସାଧନା ବିହୀନ ପାପୀ ମହା ଦୁରାଚାରେ
ଦର୍ଶନ ଦେଇ ତାରିବେ ପ୍ରଭୁ ସୁଦୟାରେ ।
ଦ୍ୱିଜ ବାକ୍ୟ ଶୁଣନ୍ତେ ନାରଦ ମୁନିବର
ରାଜାଙ୍କୁ ଚାହିଁ କହିଲେ ସ-କରୁଣ ଗିର ।
ସତ୍ୟ ସତ୍ୟ ଭାଷିଲେ ଯା ଏ ବିପ୍ର ସୁଜନ
ନିଶ୍ୱାସରେ ବେଦ ଯେବେ ହେଲା ଉପାଦାନ ।
ଚାରି ଶିରୋଭାଗ ଅର୍ଥେ ଯେଉଁ ବିବରଣେ
ସେହି ଦାରୁମୟବ୍ରହ୍ମ ଦିଶନ୍ତି ନୟନେ ।
ତାର ଅର୍ଥ ଭଲେ ଜାଣନ୍ତି ଯେ ପଦ୍ମଯୋନି
ତାଙ୍କ ମୁଖୁଁ ଏ ସକଳ ଅଛୁ ମୁହିଁ ଶୁଣି ।
ତାହାଙ୍କ ଆଜ୍ଞାରେ ପୃଥ୍ୱୀ ହେଲା ଭବ ଆଣ
ସୁଖେ ଅନୁସର ଯାଇ ତାହାଙ୍କ ନିବାସ ।
ଶ୍ରୀହରିଙ୍କ ପ୍ରକାଶ କରିବା ନିବେଦନ
ସମ୍ପ୍ରତି ତୁମ୍ଭେ ଦେଉଳ କରାଅ ଗଠନ ।
ଏସନ ଶୁଣି କହନ୍ତି ଇନ୍ଦ୍ରଦ୍ୟୁମ୍ନ ରାୟ
ମୋତେ ସଙ୍ଗେ ନେଇ ଚଳ ମୁନି ମହାଶୟ ।
ତାଙ୍କ କୃପାରୁ ପାଇଲି ପ୍ରଭୁ ଜଗନ୍ନାଥ
ପ୍ରଭୁଙ୍କ ପ୍ରତିଷ୍ଠା ଲାଗି କରିବି ସାକ୍ଷାତ ।

ଆଗମନ କାରଣେ କରିବ ନିମନ୍ତ୍ରଣ
ଯେସନେ ସ୍ୱୟଂ ଆସି ମୋ କରନ୍ତି ସମାପନ ।
ଅଳ୍ପକାଳ ଅପେକ୍ଷା କରନ୍ତୁ ମୁନିବର
ଦେଉଳ ନିର୍ମାଣ ମାତ୍ର ସିବା ନିଜ ଘର ।
ତହୁଁ ରାଜା ଶିଳ୍ପୀଗଣେ ବହୁଧନ ଦେଲେ
ଏକେ ଏକେ ସମସ୍ତଙ୍କୁ ନିଯୁକ୍ତ ସେ କଲେ ।
ଦିନୁ ଦିନ ବଢ଼ଇ ଦେଉଳ ମନୋହର
ଶୁକ୍ଳ ପକ୍ଷେ କ୍ରମେ ଯେସନେ ବଢ଼ଇ ଶଶଧର ।
ଅତି ଉଚ୍ଚ ଶ୍ରୀମନ୍ଦିର ଭେଦିଲା ଗଗନ
ଅଲକ୍ଷଣ ନୁହେ କରିବାକୁ ଅନୁମାନ ।
ବହୁତ ଧନ ନୃପତି ଖରଚନ୍ତି ନିତି
ଅକାତରେ ହର୍ଷମନେ ବ୍ୟୟ କରୁଥାନ୍ତି ।
କେତେକ ଖଣ୍ଡ ପାଷାଣ ସଂଖ୍ୟା ଯହିଁ ହୁଏ
କେତେ କୋଟି ଧନ ବ୍ୟୟ ତା ନିର୍ଣ୍ଣୟ ନୁହେ ।
ପୃଥିବୀର ରାଜାମାନେ ସର୍ବେ ଆଜ୍ଞାକାରୀ
ସବୁଙ୍କି କାର୍ଯ୍ୟେ ନିଯୁକ୍ତ କଲେ ଦଣ୍ଡଧାରୀ ।
ସେ ସର୍ବେ ନିଯୁକ୍ତ କଲେ ଯେତେ ପ୍ରଜାଗଣେ
ସର୍ବଜନ ଏକଠାବେ ମିଳିଲେ ବହନେ ।
ହର୍ଷେ ହରିବୋଲ କରନ୍ତି ପ୍ରଜାଜନ
ସେହି ମହା କଳରବେ ଉଛୁଳେ ଗଗନ ।
ତୋଷ ହୋଇ ରାଜାଙ୍କ ଭକତି ଶ୍ରଦ୍ଧାଗୁଣେ
କୀର୍ତ୍ତି ସହ ବୃଦ୍ଧି ହେଲେ କମଳା ଆପଣେ ।
ତ୍ରିଭୁବନେ ଅନୁପମ ଦେଉଳର ଶୋଭା
କାଞ୍ଚନେ ରଚିତ କାହିଁ କାହିଁ ରତ୍ନ ଆଭା ।
ନାନା ମଣି ହୀରକ ଖଚିତ ସ୍ଥାନେ ସ୍ଥାନେ
ସ୍ଫଟିକେ ରଚିତ କାନ୍ଥ ଶୋଭଇ ଯତନେ ।
ଶରତ କାଳରେ ଯେସନେ ଶୁଭ୍ର ମେଘମାଳ
ତେସନେକ ଚମତ୍କାର ଶୋଭିତ ଦେଉଳ ।
କାହିଁ କାହିଁ ନୀଳ ପାଷାଣରେ ସୁଗଠିତ
ନୀଳ ମେଘ ପୁଞ୍ଜ ଯେସନେ ଆକାଶେ ଉଦିତ ।
ଏହିରୂପେ ମନୋହର ଦେଉଳ ଗଢ଼ିଲେ
ଦେଉଳ ଆଗରେ ଜଗମୋହନ ରଚିଲେ ।
ଶ୍ରୀନାଟ ମଣ୍ଡପ କଲେ ସମ୍ମୁଖେ ତାହାର
ଗରୁଡ଼ର ମୂର୍ତ୍ତି ସ୍ତମ୍ଭ ଉପରେ ରୁଚିର ।
ରଚିଲେ ତେତିଶ କୋଟି ଦେବଙ୍କ ମୂରତି
ବାହନ ସଙ୍ଗେ ଦେବଙ୍କୁ ନିର୍ମାଣିଲେ ତହିଁ ।
ସ୍ତ୍ରୀ ପୁରୁଷ ପୁତ୍ତଳିକା କଲେ ଶତ ଶତ
ବିପରୀତ ଲୀଳା ଯେତେ କଲେ ସୁନିର୍ମିତ ।
ଚଉଷଠୀ ବନ୍ଧ କେଳି ଯୁବକ ଯୁବତୀ
ସ୍ଥାନେ ସ୍ଥାନେ ଲଗାଇଲେ ଦେଉଳ ଚଉକତି ।
ରଚିଲେ ପାତାଳବାସୀ ଯେତେ ନାଗଗଣେ
ପ୍ରସ୍ତରରେ ଅଧିଷ୍ଠାନ ସକଳେ ବଖାଣେ ।
ଯେଉଁସ୍ଥାନେ ଥିଲେ ନୀଳମାଧବ ଈଶ୍ୱର
ରତ୍ନବେଦୀ ସେଠାବେ ରଚିଲେ ମନୋହର ।
ସେହି ଯୋଗପୀଠ ଅଟେ ଅତି ଗୁପ୍ତସ୍ଥାନ
ଯହିଁ ହରି ନିତ୍ୟସ୍ଥିତି ହୋଇଛନ୍ତି ଅନୁକ୍ଷଣ ।
ଚଉଦିଗେ ବେଢ଼ିକଲେ ଅନେକ ମନ୍ଦିର
ମେଘନାଦ ନାମେ ବେଢ଼ା ଚୌଦିଗେ ପ୍ରାଚୀର
ପୂର୍ବଦିଗେ ସିଂହଦ୍ୱାର ରଚିଲେ ସୁନ୍ଦର
ପୂର୍ବଦିଗେ ସିଂହଦ୍ୱାର ଅତି ମନୋହର ।
ଦୁଇ ସିଂହ ରହିଲେ ଯେ ରକ୍ଷକ ତାହାର
ହନୁମାନ ରକ୍ଷାକଲେ ଦକ୍ଷିଣ ଦୁଆର ।
ରଖନ୍ତି ଉତ୍ତରଦ୍ୱାର ଦୁଇ ମର୍କଟ ।
ପଶ୍ଚିମରେ ରହିଲେ ଆପଣେ ନରହରି ।
ଦେଉଳର କଣ୍ଠଦେଶ ଅଁଳା ଶ୍ରୀଶୋଭନ
ତା ଉପରେ ନୀଳଚକ୍ର କରିବେ ଘଟନ ।
କୈଳାସ ପର୍ବତେ କିବା ନୀଳ ନବଘନ
ଦେଉଳକୁ ନୀଳଚକ୍ର ମାନଇଁ ତେସନ ।
ସୁବର୍ଣ୍ଣ ଦଣ୍ଡରେ ଧ୍ୱଜ ପତାକା ଉଡ଼ଇ
ନେତ ଶବଳ ବୈରଖ ବାନା ବିରାଜଇ ।
ଏହିରୂପେ କଲେ ବଡ଼ ଦେଉଳ ନିର୍ମାଣ
ଗର୍ଭପ୍ରତିଷ୍ଠା ତାହାର କଲେକ ରାଜନ ।
ବଜ୍ରପାତ ନିବାରଣ କାରଣେ ନୃପତି
ମହାମୂଲ୍ୟ ମଣିମାନ ଗୁନ୍ଥାଇଲେ ତହିଁ ।
ଏହାସମ ପୁଣି ଆଉ ଦେଉଳ ରଚନେ
ବହୁତ ସେ ରତ୍ନମଣି ଦେଖିଲେ ସେସ୍ଥାନେ ।
ଯେରୂପେ ହୋଇଲା ବଡ଼ଦେଉଳ ନିର୍ମାଣ
ନାହିଁ ହୋଇଛି ନହୋଇବ ଆଉ ତା ସମାନ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ପୁଣି ଶୁଣ ମୁନିଗଣ
ପୁରୁଷୋତ୍ତମ କ୍ଷେତ୍ର କଥା ଅଟେ ପୀୟୂଷ ମିଳନ ।

ପୃଥିବୀରେ କେହେଲେ ଯେପରି ମହା ମହାରାଜ
ମନେ ନ ସମ୍ଭବେ ଯେ କରିବେ ଏଡ଼େକାର୍ଯ୍ୟ ।
ପରସ୍ପରେ ସ୍ୱର୍ଗରେ କହନ୍ତି ଦେବଗଣ
ଆମ୍ଭମାନଙ୍କର ସ୍ୱର୍ଗ ନହେଲା ସେମନ ।
ପୃଥିବୀରେ ଯେଉଁ ଶ୍ରୀବଡ଼ଦେଉଳ
ସ୍ୱର୍ଗରେ ଦୁର୍ଲ୍ଲଭ ତାହା ହେଲା ଚିରକାଳ ।
ଏମନ୍ତ ଦେଉଳ ହେଲା ଅବନୀ-ମଣ୍ଡଳେ
କାହିଁ ଦେଖିନାହିଁକ ଶୁଣିନାହିଁକ କେଉଁକାଳେ ।
ଧନ୍ୟ ଧନ୍ୟ ଇନ୍ଦ୍ରଦ୍ୟୁମ୍ନ ରଖିଲେ କୀରତି
ସହସ୍ରେକ ଯଜ୍ଞକରି ତୋଷିଲେ ଶ୍ରୀପତି ।
ଯାହାର ମନ୍ଦିରେ ବସି ସର୍ବ ଦେବଗଣେ
ଦିବ୍ୟରାଜ ଭୋଗକୁ ଭୁଞ୍ଜିଲେ ହର୍ଷମନେ ।
ଏମନ୍ତେ ସେ ଅମରେ କହନ୍ତି ପରସ୍ପର
ଇନ୍ଦ୍ରଦ୍ୟୁମ୍ନଙ୍କର ଯଶ ଗାନ୍ତି ନିରନ୍ତର ।
ନାରଦ ସହାୟ ଯାର ତାର କି ବିସ୍ମୟ
କହିବା ଅପୂର୍ବ ତାକୁ ସଦା ତାର ଜୟ ।
ଏଣେ କରଯୋଡ଼ି ଇନ୍ଦ୍ରଦ୍ୟୁମ୍ନ ନରପତି
ଅତି ବିନୟ ଭାବରେ ମୁନିଙ୍କି କହନ୍ତି ।
ସଫଳ ହୋଇଲା ଯଜ୍ଞ ତୁମ୍ଭର ପ୍ରସାଦେ
ଦେଉଳ ନିର୍ମାଣ ସମାପନ ନିର୍ବିବାଦେ ।
ଏତେବୋଲି ଭାବ ଗଦଗଦେ ସେହିକ୍ଷଣେ
ଦଣ୍ଡବତ କଲେ ମହାମୁନିଙ୍କ ଚରଣେ ।
ଉଠାଇ ନାରଦ ତାଙ୍କୁ କଲେ ଆଲିଙ୍ଗନ
ତୁମ୍ଭର ଆମ୍ଭର ଭେଦ ନାହିଁଟି ରାଜନ ।
ଦେଖ ବିଷ୍ଣୁ ଅବତାର ତୁମ୍ଭର କାରଣେ
ଜଗନ୍ନାଥଙ୍କର ପଦ ଭଜ ଅନୁକ୍ଷଣେ ।
ତାଙ୍କପାଦେ ସ୍ନେହ ତବ ଅଚଳ ଭକତି
ଏହାଠାରୁ ପୁଣ୍ୟବନ୍ତ କି ପରମ ଗତି ।
ତୀର୍ଥେ ମନ୍ତ୍ରେ ଜପେ ଦାନେ ବ୍ରତ ଅଧ୍ୟୟନେ
ଯଜ୍ଞେ ତପେ ଶମ୍ଭୁହେ ଯାହାଙ୍କ ଅର୍ଚ୍ଚନେ ।
ତୁମ୍ଭ ଭକ୍ତିରେ ସେ ପ୍ରଭୁ ହୋଇଣ ସଦୟ
ଅବନୀମଣ୍ଡଳେ ଆସି ହୋଇଲେ ଉଦୟ ।
ଏବେ ଦୁଃଖ ଶୋକ ସବୁ ପରିହରି ଦୂରେ
ଭକ୍ତିଯୋଗେ ମନ ଦିଅ ପରମ ସାଦରେ ।
ଚିରକାଳ ଏହି ପୃଥିବୀରେ ବାସକରି
ବହୁଦ୍ରବ୍ୟେ ମହୋତ୍ସବେ ପୂଜ ହେ ଶ୍ରୀହରି ।

ବ୍ରହ୍ମାଙ୍କ ନିକଟେ ତୁମ୍ଭେ କରିବ ଗମନ
ସେ ବତାଇ ଦେବେ ସବୁ ଯାତ୍ରା ବିବରଣ ।
ଦେଉଳ-ପ୍ରତିଷ୍ଠା ସେବେ କରିବ ହର୍ଷିତେ
ସେସମୟକାଳେ ବ୍ରହ୍ମା ବର ଦେବେ ହେ ତୁମ୍ଭତେ ।
ସପ୍ତଋଷି ସଙ୍ଗେ ମୁହିଁ ଆସିବି ତକ୍ଷଣି
ଏବେ ଚାଲ ବ୍ରହ୍ମଲୋକେ କରିବା ଗମନ ।
ତୁମ୍ଭବିନେ କା ଶକତି ବ୍ରହ୍ମଲୋକେ ଯିବ
ଏଡ଼େ ଭାଗ୍ୟ ଆଉ ପୁଣି କିଏ ଅରଜିବ ।
ଏତେକହି ମୁନିବର ଇନ୍ଦ୍ରଦ୍ୟୁମ୍ନ ସାଥେ
ଆପଣେ ଉଠିଲେ ଆନନ୍ଦରେ ଶୂନ୍ୟପଥେ ।
ସେ ବୈଷ୍ଣବ ଚୂଡ଼ାମଣି ନାରଦଙ୍କ ପାଦେ
ଅଧମ ବୈଷ୍ଣବ ଦାସ ନିରନ୍ତର ବନ୍ଦେ ।

—:*:—

## ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ବ୍ରହ୍ମଲୋକେ ଗମନ

ଜୈମିନି ଉବାଚ

ଏଥୁ ଅନନ୍ତରେ ଶୁଣ ସର୍ବ ମୁନିଗଣ
ବ୍ରହ୍ମଲୋକେ ରାଜାକଲେ ଯେପରି ଗମନ ।
ନାରଦଙ୍କ ଆଗେ କରଯୋଡ଼ି ସେ ରାଜନ
ଜଣାଇଲେ ଶୁଣ ଦେବ ମୋର ନିବେଦନ ।
ଏହି ପୁଷ୍ପରଥେ ବସି ଚାଲ ବ୍ରହ୍ମପୁରୀ
ମନରୁଁ ଅଧିକ ଯାର ଗମନ-ମାଧୁରୀ ।
ଏତେବୋଲି ଇନ୍ଦ୍ରଦ୍ୟୁମ୍ନ ଆନନ୍ଦ ମାନସେ
ବାହାରିଲେ ଶ୍ରୀମନ୍ଦିର ପରିକ୍ରମା ଆଶେ ।
ସେବା ଅଧିକାରୀଗଣେ ଡାକି ମହାରାଜ
ନିଯୋଗିଲେ ଯାର ଯେଉଁ ଉପଯୁକ୍ତ କାର୍ଯ୍ୟ ।
ମୁନିବରଙ୍କୁ କହିଲେ ପ୍ରଣାମ ଆଚରି
କିଞ୍ଚିତ ଅପେକ୍ଷା କର ଆହେ ବ୍ରହ୍ମଋଷି ।
ଶ୍ରୀହରିଙ୍କି ଏବେ ମୁହିଁ ପ୍ରଦକ୍ଷିଣ କରି
ଅବିଳମ୍ବେ ସର୍ବଶୁଭେ ଆସିବଇଁ ଫେରି ।
ଏମନ୍ତ ଶୁଣି ସନ୍ତୋଷେ ଶ୍ରୀନାରଦ ମୁନି
ପ୍ରେମଭାବେ ଧଇଲେ ସେ ନୃପତିଙ୍କ ପାଣି ।
ମହାବେଦୀ ପାର୍ଶ୍ୱରେ ପ୍ରବେଶ ହୋଇଲେ
ଜଗନ୍ନାଥଙ୍କୁ ନିରେଖି ପ୍ରଣାମ ସେ କଲେ ।

ବଳଭଦ୍ର ସୁଭଦ୍ରାଙ୍କୁ ପ୍ରଣମି ଆନନ୍ଦେ
ସୁଦର୍ଶନେ ପ୍ରଣମିଲେ ଭାବ ଗଦଗଦେ ।
ବ୍ରହ୍ମଲୋକକୁ ଗମନ କରିବାର ପାଇଁ
ପ୍ରଭୁଙ୍କ ସମ୍ମୁଖରେ ଆଜ୍ଞା ମାଗେ ନରସାଇଁ ।
ବାରମ୍ବାର କରଯୋଡ଼ି କରଇ ବନ୍ଦନ
ପ୍ରେମ ଲୋତକରେ ପୂର୍ଣ୍ଣ ଯୁଗଳ ନୟନ ।
ମହାଭକ୍ତ ସେ ଯେ ଇନ୍ଦ୍ରଦ୍ୟୁମ୍ନ ନରପତି
ମନ ବଚନରେ ପରନ୍ଧମା ସାର ତଥି ।
ଶବଶେଳେ କହେ ଜଗନ୍ନାଥଙ୍କୁ ଅନାଇଁ
ଆଜ୍ଞାଦିଅ ଏ ଭୃତ୍ୟକୁ ବ୍ରହ୍ମାଣ୍ଡ ଗୋସାଇଁ ।
ତୁମ୍ଭ ଅନୁଗ୍ରହ ବଳେ ବ୍ରହ୍ମଲୋକେ ଯିବ
ଜଣାଇଁ ମଣାଇଁ ତହୁଁ ବ୍ରହ୍ମାଙ୍କୁ ଆଣିବ ।
ସେହିକାଳେ ଜଗନ୍ନାଥ ଅନୁକମ୍ପା ହେଲେ
ମସ୍ତକରୁ ଖସାଇଣ ଦେଲେ ଫୁଲମାଳେ ।
ସେବକ ସେ ମାଳ ଆଣି ନୃପତିଙ୍କି ଦେଲା
ପ୍ରଭୁଙ୍କର ଆଜ୍ଞା ହେଲା ବୋଲି ଜଣାଇଲା ।
ଆନନ୍ଦେ ସେ ଆଜ୍ଞାମାଳ ଗଳେ ବାନ୍ଧିକରି
ବଦନରେ ଉଚ୍ଚରିଲେ ଜୟ ରାମ ହରି ।
ମେଲାଣି ଘେନି ଚଳନ୍ତେ ଇନ୍ଦ୍ରଦ୍ୟୁମ୍ନ ରାମେ
ପାଲଟି ପାଲଟି କଲା ଶ୍ରୀମୁଖକୁ ଚାହିଁ ।
ଶ୍ରୀଜଗନ୍ନାଥଙ୍କୁ ଛାଡ଼ି ଯିବା ପାଇଁ ତହିଁ
ମହାଭକ୍ତ ନୃପଙ୍କର ମନ ନ ବଳଇ ।
ପୁଣି ରାଜା ନମସ୍କାର କରି ବାରଂବାର
ନୟନରୁ ଢାଳେ ଝରଝର ଅଶ୍ରୁଧାର ।
ରତ୍ନବେଦୀର ବାହାରେ ଆସି ଧୀରେ ଧୀରେ
ରାଜବେଶ ଅଳଙ୍କାର ପିନ୍ଧିଲେ ଦେହରେ ।
ଜୟ ଜଗନ୍ନାଥ ବୋଲି ବୋଲି ନିଜ ମୁଖେ
ନାରଦଙ୍କ ସଙ୍ଗେ ବାହାରିଲେ ମନ ସୁଖେ ।
ପୁଷ୍ପରଥରେ ବସିଲେ ତହୁଁ ଦୁଇଜଣ
ସୂର୍ଯ୍ୟଙ୍କୁ ଭକତିଭରେ କଲେ ପ୍ରଦକ୍ଷିଣ ।
ଦ୍ୱିତୀୟ ଭାସ୍କର କି ସେ ଭକ୍ତ ଦଣ୍ଡଧାରୀ
ଚଳିଲେ ହରଷେ ପୁଷ୍ପବିମାନ ଉପରି ।
ଆକାଶ ମାର୍ଗରେ ରଥ ଉଠେ ଖରତରେ
ରାଜା ବସିଛନ୍ତି ସୁଖେ ମୁନିଙ୍କ ସଙ୍ଗରେ ।
ଦୁହିଙ୍କ ପାଇଁ ମୁକ୍ତ ସେ ବ୍ରହ୍ମପୁରୀ ଦ୍ୱାର
ହରିଗୁଣ ଗାଉଛନ୍ତି ରାଜା ମୁନିବର ।

ଦେଖି ସ୍ୱର୍ଗବାସୀମାନେ ଚମତ୍କାର ହେଲେ
ଧନ୍ୟ ଇନ୍ଦ୍ରଦ୍ୟୁମ୍ନ ବୋଲି କେତେ ପ୍ରଶଂସିଲେ ।
ଧ୍ରୁବ ଲୋକ ପାର ହୋଇ ସୁଖେ ବେନି ଜଣ
ମହର୍ଲୋକେ ପ୍ରବେଶିଲେ ଆନନ୍ଦେ ବହନ ।
ସେହି ସ୍ଥାନେ ରହିଥିଲେ ସିଦ୍ଧଗଣ ଯେତେ
ବହୁତ ପ୍ରଶଂସା କଲେ ନୃପତିଙ୍କି ସମସ୍ତେ ।
ବିଧିମତେ ସିଦ୍ଧମାନେ କଲେ ତ ଅର୍ଚ୍ଚନା
ତହୁଁ ଦୁହେଁ ଚଳିଗଲେ ହୋଇ ହର୍ଷମନା ।
ଜନଲୋକେ ପ୍ରବେଶନ୍ତେ ବିମାନ ଆରୋହି
ସେହି ଜନଲୋକବାସୀମାନେ ତାଙ୍କୁ ଚାହିଁ ।
ହସ୍ତ ହୋଇ ନତ ମୁଖେ କରନ୍ତି ଦର୍ଶନ
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ମୁଖ ସୁପ୍ରସନ୍ନ ।
ନାରଦମୁନିଙ୍କ ଆନନ୍ଦର ସୀମା ନାହିଁ
ଜନଲୋକେ ପ୍ରଶଂସନ୍ତି ଧନ୍ୟ ଧନ୍ୟ କହି ।
ବିଷ୍ଣୁଭକ୍ତ ବୋଲି ଇନ୍ଦ୍ରଦ୍ୟୁମ୍ନ ମହାରାଜା
ସମସ୍ତେ କରନ୍ତି ତାଙ୍କୁ ବିଧିମତେ ପୂଜା ।
ତହୁଁ ଦୁହେଁ କଲେ ପୁଷ୍ପ ବିମାନେ ଗମନ
ବ୍ରହ୍ମଲୋକେ ପହଞ୍ଚିଲେ ହୋଇ ହର୍ଷ ମନ ।
ବ୍ରହ୍ମାଣ୍ଡ ଯାକରେ ଅଛି ଯେତେ ବସ୍ତୁଚୟ
ବିଷ୍ଣୁଭକ୍ତ ପକ୍ଷେ ନୁହେ ଅସାଧ୍ୟ ନିଶ୍ଚୟ ।
ଅବହେଳେ ମିଳେ ଯାରେ ଭୁକ୍ତି ମୁକ୍ତି ସର୍ବ
ସେ ହରିଭକ୍ତ ଜନକୁ କିସ ବା ଅପୂର୍ବ ।
ହେନେ ଊର୍ଦ୍ଧ୍ୱ ଗତି କରି ସିଦ୍ଧଙ୍କୁ ନିରେଖି
ଦେବମୂର୍ତ୍ତି ଧରେ ରାଜା ହୋଇ ମହାସୁଖୀ ।
ଇଚ୍ଛା ମାତ୍ରେ ପ୍ରାପ୍ତି ଶକ୍ତି କଲେ ସେ ଧାରଣ
ଭୁଲିଗଲେ ନିଜ ବାସ ନହୁଏ ସ୍ମରଣ ।
ଇନ୍ଦ୍ରଦ୍ୟୁମ୍ନ ମହାରାଜା ଅଟେ ଭକ୍ତସାର
କେମନ୍ତ ମହିମା ଏହୁ ଦେଖ ହେ ତାହାର ।
ଯାର ବଶ ଜଗନ୍ନାଥ ପ୍ରଭୁ ନାରାୟଣ
ତାହା ମହିମା କେ ବର୍ଣ୍ଣି ପାରିବ କେସନ ।
ମହୀତଳେ ଯେତେ କର୍ମ କଲେ ଅବିରତ
ତାର ଫଳ ଆଶା ରାଜା ନ କଲେ,କିଞ୍ଚିତ ।
ଶ୍ରୀହରିଙ୍କ ପ୍ରୀତି ଅର୍ଥେ କଲେ ସର୍ବକର୍ମ
ତେଣୁ ଏ ଦେବତା ଶକ୍ତି ଧରିଲେ ରାଜନ ।
ତହୁଁ ପୁଷ୍ପରଥେ ଥାଇ ଭକ୍ତ ନରପତି
ଆଚମ୍ବିତେ ହୋଇଲେ ସେ ଅତି ଦୁଃଖମତି ।

ଦେଉଳକୁ ଚିନ୍ତା କରି ଆପଣା ମନରେ
ବିଚାରନ୍ତି ସେ ଆପଣା ଆପଣା ଅନ୍ତରେ ।
ସର୍ବଶ୍ରେଷ୍ଠ ବ୍ରହ୍ମଲୋକେ ଅଇଲି ଯେ ମୁହିଁ
ଏହା ଜାଣି ଶତ୍ରୁଗଣ ମୋର ଥିବେ ଯେହି ।
ଯବେ ସେ ଯୁଦ୍ଧ କରନ୍ତି ନିଜ ଠାଇଁ ଆସି
କେହି ଅବା ଥିବେ ଏଥି ହେବାକୁ ସାହସୀ ।
କର୍ମୀମାନଙ୍କୁ ମୁଁ ଯେଉଁ କର୍ମେ ନିଯୋଗିଲି
ସମସ୍ତଙ୍କୁ ଯଥାଯୋଗ୍ୟ ବେତନ ଗଣିଲି ।
ଆଜ୍ଞା ଦେଲି ସେମାନଙ୍କୁ ଜଣ ଜଣ କରି
ଦେଉଳର ବାକି କାର୍ଯ୍ୟ ହେବନାହିଁ ସାରି ।
ବ୍ରହ୍ମାଙ୍କୁ ସଙ୍ଗରେ ଧରି ନ ଗଲେରେ ଯାବତ
ଦେଉଳରେ ରତ୍ନ ଦେବ ନାହିଁଟି ତାବତ ।
ଏହି ଯେ ବ୍ରହ୍ମଲୋକକୁ ଆସିଥାଏ ଯେହି
ମର୍ତ୍ତ୍ୟପୁରେ ପୁନର୍ବାର ନ ବାହୁଡେ ସେହି ।
ଏହା ବା ମନେ କରିବେ ମନ୍ତ୍ରୀମାନେ ମୋର
ରାଜାମାନେ ଅବା ହରି ନେବେ ରାଜ୍ୟଭାର ।
ଏ କି ବିପରୀତ ଥିଲା କର୍ମରେ ମୋହର
ସେବା କରି ନପାରିଲି ଦାରୁବ୍ରହ୍ମ ହରି ।
ଆହା ମୁଁ କେଉଁ ଉପାୟ କରିବଇଁ ଏବେ
ଏହିରୂପେ ନରପତି ମନେ ମନେ ଭାବେ ।
ଜାଣି ପାରି ମୁନିବର ପ୍ରବୋଧି କହନ୍ତି
କାହିଁପାଇଁ ମନ ଦୁଃଖ କର ନରପତି ।
ଅବନତ ମୁଖେ କିବା ଚିନ୍ତାକର ମନେ
ସୁଭାଗ୍ୟ ବଳରୁ ଆସିଅଛ ଯେଉଁସ୍ଥାନେ ।
ଚିନ୍ତାର ବିଷୟ ଏଥି କିଛି ମାତ୍ର ନାହିଁ
ଆଧି ବ୍ୟାଧି ଜରା ମୃତ୍ୟୁ କେବେ ନ ଘଟଇ ।
ମହାଆନନ୍ଦ ସ୍ୱରୂପ ଅଟେ ଏହି ସ୍ଥାନ
ଏଠାକୁ ଆସିଲ ତୁମ୍ଭେ ମହାଭାଗ୍ୟବାନ ।
ଚର୍ମ ଚକ୍ଷୁରେ ମର୍ତ୍ତ୍ୟରେ ଦେଖିଲ ଶ୍ରୀହରି
ତ୍ରିଭୁବନେ ଜଣେ କେହି ନାହିଁ ତୁମ୍ଭ ସରି ।
ଏହି ଯେ ବ୍ରହ୍ମଧାମକୁ ଆସିଥାଏ ଯେହି
ମିଥ୍ୟା ମାୟା ସଂସାରକୁ ନ ଚାହଇ ସେହି ।
ଅନିତ୍ୟ ସଂସାର ସଦା ଅଟେ ଦୁଃଖମୟ
ଲେଶେ ମାତ୍ର ସୁଖ ନାହିଁ ଜାଣ ନରରାୟ ।
ମର୍ତ୍ତ୍ୟମଣ୍ଡଳରେ ତୁମ୍ଭେ ମହାଭାଗ୍ୟଧାରୀ
କିବା ଅଛି ଦୁଃଖ ଆଉ ମନରେ ସୁମରି ।

ଚିନ୍ତା ଜଳେ ମଗ୍ନ ହେଉଅଛ କାହିଁପାଇଁ
ଅତୌର୍ଯ୍ୟ ନହୁଅ ରାଜା ଚିନ୍ତ ଲକ୍ଷ୍ମୀସାଇଁ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିଗଣ
ମୁନିଙ୍କ ବଚନ ଶୁଣି କହିଲେ ରାଜନ ।
ଦୁଃଖ କରୁନାହିଁ ରାଜ୍ୟ ବନ୍ଧୁଙ୍କ କାରଣେ
ଦେଉଳ ନ ହେବ ପୂର୍ଣ୍ଣ ଦୁଃଖ ତେଣୁ ମନେ ।
ରାଜା ମୁଖୁଁ ଏହାଶୁଣି ବ୍ରହ୍ମାଙ୍କ ନନ୍ଦନ
ହସି କହନ୍ତି ତାହାଙ୍କୁ ମଧୁର ବଚନ ।
ବ୍ରହ୍ମାଙ୍କ ସମାନ ତୁମ୍ଭେ ଅଟ ନୃପବର
ସାମାନ୍ୟ ନୁହତ ସାରା ଧରଣୀ ମଧ୍ୟର ।
ତୁମ୍ଭ କାର୍ଯ୍ୟେ ବିଘ୍ନ କରେ କାହାର ଶକତି
ସହାୟ ଅଛନ୍ତି ତୁମ୍ଭଙ୍କୁ ଦେବ ପ୍ରଜାପତି ।
ଶ୍ରୀଜଗନ୍ନାଥ ରହିବେ ଯେଉଁ ମନ୍ଦିରେ
କାହା ସାଧ ଅଛି ତହିଁ ବିଘ୍ନ କରିବାରେ ।
ଏଣୁ ତୁମ୍ଭେ ଚିନ୍ତା ଦୂର କର ହେ ରାଜନ
ଆଗରେ ଏ ବ୍ରହ୍ମପୁରୀ କର ଦରଶନ ।
କୋଟି ଚନ୍ଦ୍ର ସମାନ ଉଜ୍ଜ୍ୱଳ ତେଜ ଫୁଟେ
ହର୍ଷଦାତା କୋଟି ସୁଧାସିନ୍ଧୁ ସମ ଅଟେ ।
ଏହିମତେ ଦୁହେଁ କଥା କୁହାକୁହି ହୋଇ
ବ୍ରହ୍ମଲୋକ ନିକଟରେ ପହଞ୍ଚିଲେ ଯାଇ ।
କ୍ଷଣେ ଦୂରଠାରୁ ଦୁହେଁ କଲେ ଯେ ଶ୍ରବଣ
ବ୍ରହ୍ମର୍ଷିମାନେ କରନ୍ତି ବେଦ ଉଚ୍ଚାରଣ ।
ଅଷ୍ଟାକ୍ଷର ସୁପଦ ସୁଛନ୍ଦ ସବୁ ଗାନ
କେତେ ଇତିହାସ ଶୁଭେ କେତେ ଯେ ପୁରାଣ ।
ରାଜାଙ୍କୁ ଚାହିଁ କହନ୍ତି ବ୍ରହ୍ମାଙ୍କ ନନ୍ଦନ
ଏହି ବ୍ରହ୍ମଲୋକେ ଆସିଲଇଁ ହେ ରାଜନ ।
ସତ୍ୟଲୋକ ବୋଲିଣ ଯେ କହନ୍ତି ଏହାରେ
ଆଉ କିଛି ଲୋକ ନାହିଁ ଏହାର ଉପରେ ।
ଏହାର ଅତି ଅଳପ ଉପରେଟି ଜାଣ
ଊର୍ଦ୍ଧ୍ୱ ଖୋଳ ବ୍ରହ୍ମ ତାରେ ଅଛି ନିରୂପଣ ।
ସେହି ଖୋଳ ଉପରେ ତାହାର ଅଧଃସ୍ଥଳେ
ଶ୍ରୀବୈକୁଣ୍ଠଧାମ ଶୋଭେ ଅତ୍ୟନ୍ତ ବିରଳେ ।
ସେହି ଧାମେ ସଚ୍ଚିତ-ଆନନ୍ଦମୟ ହରି
ସବୁରି କରତା ସେଟି ଜାଣ ଦଣ୍ଡଧାରୀ ।

ଏହିରୂପେ ମୁନି ଇନ୍ଦ୍ରଦ୍ୟୁମ୍ନେ କହି କହି
ବ୍ରହ୍ମସଭା ଦ୍ୱାର ପାଶେ ପ୍ରବେଶିଲେ ଯାଇ ।
ସୁବର୍ଣ୍ଣେ ନିର୍ମିତ ପୁରୀ ମାଣିକ୍ୟେ ଖଚିତ
କେତେ ମଣି ହୀରା ମାଳା ତହିଁ ସୁଶୋଭିତ ।
ଦ୍ୱାର ପାଶେ ମଣିରେ ନିର୍ମିତ ଏକ ଘର
ଇନ୍ଦ୍ର ଆଦି ଦେବଗଣ ଛନ୍ତି ତା ଭିତର ।
ପିତୃଗଣ ମନ୍ୱନ୍ତର ଅଧିକାରୀଗଣେ
ସର୍ବେ ଛନ୍ତି ବିଧାତାଙ୍କ ଦର୍ଶନ କାରଣେ ।
ଦ୍ୱାରୀ ନିବାରଣି ହେତୁ ଯାଇ ନ ପାରନ୍ତି
ମାନିଜନ ସମ ସର୍ବେ ଠିଆ ହୋଇଛନ୍ତି ।
ଇନ୍ଦ୍ରଦ୍ୟୁମ୍ନ ସହିତ ନାରଦ ମୁନିବରେ
ଦୂରରୁ ଦେଖି ଦୁଆରୀ ପ୍ରଣମେ ସାଦରେ ।
ଦ୍ୱାରୀ ବୋଲେ ମୁନିବର କି ଭାଗ୍ୟ ମୋହର
ବହୁତ ଦିନେ ଦେଖିଲି ଚରଣ ତୁମ୍ଭର ।
ବିଧାତାଙ୍କ ସଭା ଶୋଭା ନୁହେ ତୁମ୍ଭ ବିନେ
ତୁରିତେ ପ୍ରବେଶକର ପିତୃ ସନ୍ନିଧାନେ ।
ନାରଦ ବୋଲନ୍ତି ଦ୍ୱାରୀ ଶୁଣ ସାବଧାନେ
ଦେଖ ମୋର ସଙ୍ଗେ ଏହି ରାଜା ଇନ୍ଦ୍ରଦ୍ୟୁମ୍ନେ ।
ସକଳ ଦେଶର ପତି ମହା ପୁଣ୍ୟବାନ
ବ୍ରହ୍ମାଙ୍କ ଦର୍ଶନେ ଆସିଛନ୍ତି ଏ ରାଜନ ।
ଯଦି ତୁମ୍ଭେ କହିବ ଏ ଦର୍ଶନକୁ ଯିବେ
ଏହାଶୁଣି ଦ୍ୱାରୀ କହେ କରଯୋଡ଼ି ତେବେ ।
ଶୁଣ ପ୍ରଭୁ ରାଜା ଆସିଛନ୍ତି ତୁମ୍ଭ ସାଥେ
ସାମାନ୍ୟ ନୁହନ୍ତି ଏହୁ ଜାଣ ଭଲମତେ ।
ଯେଉଁଠାରେ ଅଛନ୍ତି ସକଳ ଦେବଗଣେ
ଟିକିଏ ଥାନ୍ତୁ ଏ ସେମାନଙ୍କ ସନ୍ନିଧାନେ ।
ଆପଣ ଯାଇ ପିତାଙ୍କୁ ଜଣାନ୍ତୁ କାରଣ
ତେବେ ତାଙ୍କ ପାଶେ ଏ କରନ୍ତୁ ପ୍ରବେଶନ ।
ବ୍ରହ୍ମା ଦେବଗଣ ସାଥେ ପଛେ ଯିବେ ଏହି
ଯାହା ଉଚିତ ତା'କର ମୁଁ କି କହିବଇଁ ।
ଏବେ ଗୀତ ଗାନେ ମନ ଅଛି ଧାତାଙ୍କର
କେମନ୍ତେ ଯାଇ ମୁଁ ଜଣାଇବି ସମାଚାର ।
ମୁଁ ଯେ ତବ ଦାସ ପୁଣି ଭୃତ୍ୟ ଧାତାଙ୍କର
ଉଚିତ ନୁହଇ ମୋରେ କ୍ରୋଧ କରିବାର ।
ଏହାଶୁଣି ନାରଦ ହୋଇଲେ ହର୍ଷମନ
ଇନ୍ଦ୍ରଦ୍ୟୁମ୍ନଙ୍କୁ ରଖାଇ କଲେ ସ୍ୱେ ଗମନ ।

ପହଞ୍ଚଲେ ଯାଇ ବ୍ରହ୍ମାଙ୍କର ସନ୍ନିଧାନେ
ସାଷ୍ଟାଙ୍ଗେ ପଡ଼ି ବନ୍ଦିଲେ ପିତାଙ୍କ ଚରଣେ ।
ଇନ୍ଦ୍ରଦ୍ୟୁମ୍ନ ଆସିବା କହିଲେ ଯୋଡ଼ିକର
ଆଦେଶ କଲେ ଭେଟିବା ପାଇଁ ବେଦବର ।
ହରି ନାମ ଗାନେ ବ୍ରହ୍ମା ଆବେଶ ସେକାଳେ
କଥା ନ କହିଣ କଟାକ୍ଷରେ ଠାବେଦେଲେ ।
ଇଙ୍ଗିତେ ଆଦେଶ ପାଇ ନାରଦ ସତ୍ୱର
ଶୀଘ୍ର ଆସି ଧଇଲେ ସେ ଇନ୍ଦ୍ରଦ୍ୟୁମ୍ନ କର ।
ଇନ୍ଦ୍ର ଆଦି ଦେବଗଣ ଦେଖନ୍ତି ନୟନେ
ନାରଦଙ୍କ ସଙ୍ଗେ ରାଜା ଗଲେ ବ୍ରହ୍ମା ସ୍ଥାନେ ।
ଦୂରରୁ ବ୍ରହ୍ମାଙ୍କୁ ଦେଖି ଭକ୍ତ ନୃପବର
ସାକ୍ଷାତ ମଣିଲେ ଦାରୁବ୍ରହ୍ମ କଳେବର ।
ଧୀରେ ଧୀରେ ନରପତି କରନ୍ତି ଗମନ
ପୁନଃ ପୁନଃ ପ୍ରଣମି ସେ କରନ୍ତି ସ୍ତବନ ।
ଟଳନ୍ତେ ଚରଣ କମ୍ପେ ଶ୍ୱାସ ହୁଏ ମନେ
କିଛି ଦୂରେ ଠିଆ ହେଲେ ନାରଦ ବଚନେ ।
ପରମ ପବିତ୍ର ଗୁଣ ଇନ୍ଦ୍ରଦ୍ୟୁମ୍ନଙ୍କର
ଦୁଇ ଦଣ୍ଡ ପର୍ଯ୍ୟନ୍ତ ଶୁଣିଲେ ବେଦବର ।
ବେନି ପାରୁଶେ ସାବିତ୍ରୀ ସାରଦା ଯତନେ
ଚାମର ଢାଳୁଅଛନ୍ତି ହରଷ ବଦନେ ।
ମୂର୍ତ୍ତିମନ୍ତ ଚାରି ବେଦ କରନ୍ତି ସ୍ତବନ
କଳା କାଷ୍ଠା ନିମେଷେ ଯାଆନ୍ତି ଯୁଗଗଣ ।
ଜରା ଜନ୍ମ ମୃତ୍ୟୁ କେହିନାହିଁ ସେହିସ୍ଥାନେ
ଦେବା ଯେଉଁରୂପେ ଥାନ୍ତି ଅଛନ୍ତି ତେସନେ ।
ମନ୍ୱନ୍ତର ଆବର୍ତ୍ତନ କଳ୍ପ ଯୁଗ କ୍ଷଣ
ଯେହିରୂପେ ରହିଛନ୍ତି ନୁହନ୍ତି ଚଳନ ।
ତହୁଁ ଗୀତ ଅବସାନେ ଦେବ ପଦ୍ମଯୋନି
ରାଜାଙ୍କୁ ଚାହିଁ କହିଲେ ହସି ମର୍ମବାଣୀ ।
ଅହେ ଇନ୍ଦ୍ରଦ୍ୟୁମ୍ନ ତୁମ୍ଭେ ମହା ଭାଗ୍ୟବାନ
ହରିଙ୍କ ସେବକ ଅଟ ବୈଷ୍ଣବ ପ୍ରଧାନ ।
ଏହି ସତ୍ୟଲୋକ ଅନ୍ୟ ଜନଙ୍କୁ ଦୁର୍ଲ୍ଲଭ
ସାକ୍ଷାତେ ଦେଖିଲ ତୁମ୍ଭେ ହେ ଧରଣୀଧବ ।
ପୁଣ୍ୟବନ୍ତମାନେ ବାଞ୍ଛନ୍ତି ଯେ ଏହି ଧାମ
କଳ୍ପାବଧି ଥାନ୍ତି ଏଥି ତପୋନିଷ୍ଠଗଣ ।
ଚତୁର୍ଦ୍ଦଶ ଭୁବନରେ ପ୍ରାଣୀଛନ୍ତି ଯେତେ
ସବୁର ସମ୍ଭବ କରା ବ୍ରହ୍ମ ସୁବିଦିତେ ।

ପରବା ରାଜାଙ୍କ ମନ ଗଦ୍‌ଗଦ ଜାଣନ୍ତି
ତଥାପି ତାହାଙ୍କୁ ପ୍ରଶ୍ନ ବିଧାତା କହନ୍ତି ।
କହ ମହାରାଜା ତୁମ୍ଭେ କେଉଁ କାରଣେ
ଆଗମନ କରିଅଛ ମୋର ସନ୍ନିଧାନେ ।
ଅପ୍ରାପ୍ତି ନାହିଁ ଏ କିଛି ମୋ ଦର୍ଶନେ ଜାଣ
ତୁମ୍ଭର ମନର ଆଶା କରିବ ପୂରଣ ।
ଏହାଶୁଣି କରଯୋଡ଼ି କହେ ନରନାଥ
ଶୁଣ ପ୍ରଭୁ ତୁମ୍ଭଙ୍କୁ କି ଅବା ଅବିଦିତ ।
ସକଳତ ଜାଣ ନାଥ କରୁଣା-ହୃଦୟ
ତେବେ ପଚାରୁଛ ମୋତେ ଦୟାହେତୁ ସ୍ନେହେ ।
ନାରଦଙ୍କ ମୁଖୁଁ ତବ ଆଦେଶ ଶୁଣିଲି
ସେ ଆଜ୍ଞା ମସ୍ତକେ ଧରି ସହସ୍ର ଯଜ୍ଞ କଲି ।
ତଦନ୍ତେ ଭଗବାନ ଦାରୁ ଦେହ ଧରି
ଆବିର୍ଭାବ ହେଲେ ଆସି ଯହିଁ ନୀଳଗିରି ।
ତୁମ୍ଭର ଦୟାରେ ସେହି ପଦ୍ମନୟନଙ୍କୁ
ଦରଶନ କଲି ମୁହିଁ ଭରିଣ ନେତ୍ରକୁ ।
ଦେଉଳେକ ତାଙ୍କପାଇଁ ଆରମ୍ଭ ମୁଁ କଲି
ବିବରଣ ନିବେଦନେ ତୁମ୍ଭଙ୍କୁ ଅଇଲି ।
ଆପଣ ଯାଇଣ ଯଦି ସେହି ଦେଉଳରେ
ସ୍ଥାପନ କରିବେ ଜଗନ୍ନାଥଙ୍କୁ ଭିତରେ ।
ତେବେ ତବ ଅନୁଗ୍ରହ ମୋ ପ୍ରତି ସଫଳ
ଏହିହେତୁ ବ୍ରହ୍ମଲୋକେ ଆସିଛି କେବଳ ।
ତବ ଶ୍ରୀଚରଣପଦ୍ମ କଲି ଦରଶନ
ପ୍ରସନ୍ନ ହୋଇ ସେଠାକୁ କରନ୍ତୁ ଗମନ ।
ତୁମ୍ଭର ରୂପ ଅଟନ୍ତି ପ୍ରଭୁ ଜଗନ୍ନାଥ
ସେହି ଜଗନ୍ନାଥ ତୁମ୍ଭେ ଅଟ ଜଗନାଥ ।
ତୁମ୍ଭେ ଦୁହେଁ କେବେ ଭିନ୍ନ ନୁହ ହେ ଆପଣେ
ଏ ତତ୍ତ୍ୱ ଭଲ ଭାବରେ ମୁହିଁ ମାତ୍ର ଜାଣେ ।
ତୁମ୍ଭେ ସ୍ଥାପ୍ୟ ସ୍ଥାପକ ଜଗତ-ଅନ୍ତର୍ଯ୍ୟାମୀ
ତୁମ୍ଭେ ବେଦ୍ୟ ବେଦପ୍ରିତା ଅଖିଳର ସ୍ୱାମୀ ।
ଏହିରୂପେ ନରପତି କରଇ ସ୍ତବନ
ସେହିକାଳେ ମିଳିଲେ ଦୁର୍ବାସା ତପୋଧନ ।
ଅଷ୍ଟାଙ୍ଗ ହୋଇ ସେ ଋଷି କଲେକ ପ୍ରଣାମ
କରଯୋଡ଼ି କହନ୍ତି ବ୍ରହ୍ମାଙ୍କ ବିଦ୍ୟମାନ ।
ଶୁଣନ୍ତୁ ପ୍ରଭୁ ଦୁଆରେ ସବୁ ଦେବଗଣେ
ପିତୃ ମନ୍ୱନ୍ତର-ଅଧିକାରୀଙ୍କ ସଙ୍ଗେ ।

ଦାସୀଯୋଗେ ଜଣାଇଣ ହୋଇ ଦ୍ୱାରଠାରେ
ବହୁକାଳୁ ଛନ୍ତି ସବେ ଦୁଃଖୀଙ୍କ ପ୍ରକାରେ ।
ଆଜ୍ଞାହେଉ ଦ୍ୱାରଠାରୁ କରି ଆଗମନ
ତବ ଚରଣ ସେମାନେ କରନ୍ତୁ ଦର୍ଶନ ।
କେତେ ଯୁଗ କେତେ ବର୍ଷ ଗଲାଣି ଯେ ବହି
ପ୍ରଥମ ଦ୍ୱାରେ ସକଳେ ଛନ୍ତି ଠିଆହୋଇ ।
ଏମନ୍ତେ ସେ ଦୁର୍ବାସା ପ୍ରବେଶି କଲେ ଜଣା
ସାମାନ୍ୟ ନୁହନ୍ତି ସେହି ଋଷିମହାମନା ।
ବ୍ରହ୍ମା ଛାମୁଁକୁ ଯିବାକୁ ନୁହେଁ କା ସାହସ
ଏକମାତ୍ର ଗଲେ ତହିଁ ସେ ମହା ତାପସ ।
ଜଣାଇଁ କହନ୍ତେ ତହୁଁ ଦେବ ପଦ୍ମଯୋନି
ଦୁର୍ବାସାଙ୍କୁ ଗୁହାଁଣ କହିଲେ ମୃଦୁବାଣୀ ।

ବ୍ରହ୍ମୋବାଚ

ହସି ବୋଇଲେ କହିଲ ଯାହା ଆହେ ସନ୍ଥ
କଦାପି ନୁହଇ ଏହା ଦେବଙ୍କ ଭାରତୀ ।
କଳ୍ପନା କରି କହୁଛ ତୁମ୍ଭେ ଏ କାହାଣୀ
କମ୍ପା ସେ କହିଲେ ଏ ରାଜାରେ ଈର୍ଷାହେନ ।
ଦେଖି ବିମୋହିତ ହେଲେ ଯେତେ ଦେବଗଣେ
ଇନ୍ଦ୍ରଦ୍ୟୁମ୍ନେ ଈର୍ଷା ବହିଛନ୍ତି ଏ କାରଣେ ।
କାହିଁ ଜୀବନ୍ମୁକ୍ତ କର୍ମୀ ରାଜା ଇନ୍ଦ୍ରଦ୍ୟୁମ୍ନ
ଶ୍ରୀହରିଙ୍କ-ଭକ୍ତ ମୋର ପଞ୍ଚମ ନନ୍ଦନ ।
କାହିଁ କର୍ମଫଳ ଭୋଗୀ ଏସେ ଦେବଗଣେ
ଇନ୍ଦ୍ରଦ୍ୟୁମ୍ନ ସମ ଗୃହାନ୍ତି ସେ ଅକାରଣେ ।
ଏଥି ଆସିଅଛି ଯେତେକେ ଭକ୍ତ ଦଣ୍ଡଧାରୀ
ଆସିବାକୁ ସାଧ ନାହିଁ ଦେବଙ୍କ ସେପରି ।
ତପସ୍ୟା କରନ୍ତୁ ଆଗେ ସେହି ଦେବଗଣ
ତେବେ କରି ପାରିବେ ସେ ମୋତେ ଦରଶନ
ମୋର ଦୟାରେ ଯା ବ୍ରହ୍ମଲୋକେ ଯେ ଅଇଲେ
ଏ ବଡ଼ ଭାଗ୍ୟ ତାଙ୍କର ହେଲା ଏତେକାଳେ ।
ତଥାପି ଦୁର୍ବାସା ତୁମ୍ଭେ କଲ ହେ ଯତନ
ଏଣୁ ଆସି ସେମାନେ କରନ୍ତୁ ଦରଶନ ।
ଏହାଶୁଣି ଦୁର୍ବାସାଙ୍କ ଜ୍ଞାନ ଉପୁଜିଲା
ବିଷ୍ଣୁଭକ୍ତ ପ୍ରତି ତାଙ୍କ ଶରଧା ବଢ଼ିଲା ।
ତହୁଁ ମୁନି ସମସ୍ତଙ୍କୁ ସେଠାକୁ ଆଣିଲେ
ଦୂରନ୍ତୁ ସେ ବିଧାତାଙ୍କୁ ଦରଶନ କଲେ ।

ଦେବଗଣ ଗାୟକମାନଙ୍କ ସନ୍ନିଧାନେ
ବ୍ରହ୍ମାଙ୍କୁ ପ୍ରଣାମ କଲେ ଦୁର୍ବାସା ବଚନେ ।
ତଦନ୍ତେ ନମିଲେ ଇନ୍ଦ୍ରଦ୍ୟୁମ୍ନ-ନୃପବରେ
ବ୍ରହ୍ମାଙ୍କ ଶ୍ରୀମୁଖରେ ରାଜା ହସ୍ତ ଯୋଡ଼କରେ ।
ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ବ୍ରହ୍ମା କଥା ହେଉଛନ୍ତି
କଟାକ୍ଷରେ ଦୟାକଲେ ଦେବଗଣ ପ୍ରତି ।
ଇନ୍ଦ୍ରଦ୍ୟୁମ୍ନ ନାରଦ ଅଛନ୍ତି ସନ୍ନିଧାନେ
ରାଜାଙ୍କୁ କହନ୍ତି ବ୍ରହ୍ମା ମଧୁର ବଚନେ ।
ଦେଉଳ କଲ ଯେ ସତ୍ୟ ଅଟଇ ନରପତି
ମାତ୍ର ସେହି କାଳ ଆଉ ନାହିଁଟି ସମ୍ପ୍ରତି ।
ଅନେକ କାଳ ଅତୀତ ହୋଇଗଲା ଏଥି
ଅବନୀରେ ନାହିଁ କେହି ତୁମ୍ଭର ସନ୍ତତି ।
ଯେ ଅବଧି ଗାନ ବାଦ୍ୟ କଲ ହେ ଶ୍ରବଣ
ବହୁକାଳ ବହିଗଲା ଜାଣ ହେ ରାଜନ ।
ଆସିଥିଲ ସ୍ୱାୟମ୍ଭୁବ ମନୁ ଅଧିକାରେ
ସେ ମନୁ ସମସ୍ତ ଗତ ହୋଇଛନ୍ତି ବେଗରେ ।
ସ୍ୱାରୋଚିଷ ଦ୍ୱିତୀୟ ମନୁଙ୍କ ଅଧିକାର
ତାଙ୍କ ଆଦ୍ୟ ଯୁଗ ଏହି ହେ ସୂର୍ଯ୍ୟ କୁମାର ।
ଏକୋତ୍ତର ଦିବ୍ୟ ଯୁଗେ ଏକ ମନ୍ୱନ୍ତର
ଏତେକାଳ ଏଠାରେ ଅଛ ହେ ନୃପବର ।
ତୁମ୍ଭ ବଂଶରେ ଅନେକ ହୋଇଲେ ରାଜନ
ରାଜ୍ୟପାଳ ସେ ସକଳେ ହେଲେଣି ନିଧନ ।
ଏବେ ତୁମ୍ଭେ ବଂଶର ସମ୍ବନ୍ଧ ନୁହଇ କ୍ଷିତି
କୋଟି କୋଟି ନରପତି ହୋଇ ଗଲେ ତହିଁ ।
ସର୍ବେ ଗତ ହେଲେ ଅବଶେଷ କେହି ନାହିଁ
କେବଳ ଦେଉଳ ଆଉ ଛନ୍ତି ବଣ୍ଣସାଇଁ ।
ଏଥି ଜରା ମୃତ୍ୟୁ ନାହିଁ ରତ୍ନ-ପର୍ଯ୍ୟନ୍ତ
କାଳ ପରିଣାମ ଏଥି ନହୁଏ ନିଶ୍ଚିନ୍ତ ।
ଏଣୁ ତୁମ୍ଭେ ନ ଜାଣିଲ ଏସବୁ କାରଣ
ଅବିଳମ୍ବେ ପୃଥିବୀକି କର ହେ ଗମନ ।
ଆପଣା ସମ୍ବନ୍ଧ କରିନେବ ଦେଉଳକୁ
ପୁନରପି ଶୀଘ୍ରକରି ଆସ ଏହିଠାକୁ ।
କମ୍ପା ତୁମ୍ଭ ପରିଛ ପହଞ୍ଚ କରିବ ଗମନ
ଆଗେଯାଇ କର ପ୍ରତିଷ୍ଠାର ଆୟୋଜନ ।
ବହୁ ଆୟୋଜନ କରି କରି ତୁମ୍ଭେ ଯାଇ
ଏଥିମଧ୍ୟେ ଉପସ୍ଥିତ ହୋଇବାଲି ମୁହିଁ ।

ରାଜାଙ୍କୁ ଏମନ୍ତ କହିବାର ପ୍ରଜାପତି
ସୁଦୟା ବଶ୍ୱ ଗୁହିଁଲେ ଦେବଗଣପ୍ରତି ।
ମସ୍ତକ ନୁଆଁଇ ସର୍ବେ ହସ୍ତ ଯୋଡ଼କରେ
ସବୁର ଦୃଷ୍ଟି ବ୍ରହ୍ମାଙ୍କ ଚରଣ ଉପରେ ।
ବ୍ରହ୍ମା ବୋଇଲେ ଆସିଲ ସର୍ବେ କି କାରଣ
ଶୀଘ୍ର କହ କେଉଁ କାର୍ଯ୍ୟ କରିବ ସାଧନ ।
ଦେବଗଣ ଶୁଣି ତହିଁ ବ୍ରହ୍ମାଙ୍କ ବଚନ
ହରଷରେ କରଯୋଡ଼ି କଲେ ନିବେଦନ ।
ଶୁଣ ପ୍ରଭୁ ପୂର୍ବେ ଆମ୍ଭେ ଶ୍ରୀନୀଳକନ୍ଦରେ
ଉପାସନା କରୁଥିଲୁଁ ନୀଳମାଧବରେ ।
ଅନ୍ତର୍ଦ୍ଧାନ ହେଲେ କମ୍ପା ସେହି ଭଗବାନ
ଯଜ୍ଞଅନ୍ତେ ଦାରୁ ଦେହେ କମ୍ପା ଅଧିଷ୍ଠାନ ।
ଏହାର କାରଣ କସ ଜାଣିବାର ପାଇଁ
ଆସିଅଛୁ ପଦଆରାଧନେ ହେ ଗୋସାଇଁ ।
ପ୍ରସନ୍ନ ହୋଇ ସେଦେବ କହନ୍ତୁ କାରଣ
ସମସ୍ତଙ୍କ ଉଦବେଗ କରନ୍ତୁ ମୋଚନ ।
ଦେବଙ୍କ ମୁଖୁଁ ଏମନ୍ତ ଶୁଣି ପଦ୍ମାସନ
ସଦୟେ ବୋଇଲେ ତାଙ୍କୁ ମଧୁରେ ବଚନ ।
ଅତି ଗୁପ୍ତତତ୍ତ୍ୱ କହିବାକୁ ଅନୁଚିତ
ତଥାପି ତୁମ୍ଭେମାନେ ଯେ ହେଲ ଉପଗତ ।
ବହୁକାଳ ଏହିହେତୁ କଲ ଉପାସନ
ଏଣୁ ଅତି ଗୁପ୍ତଧର୍ମ୍ମ କରସି ଶ୍ରବଣ ।
ଦ୍ୱିପରାର୍ଦ୍ଧ ପରମାୟୁ ଜାଣ ହେ ମୋହର
ପୂର୍ବ ପରାର୍ଦ୍ଧରେ ନୀଳମାଧବ ପ୍ରଚ୍ଛର ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ କରନ୍ତି ବିଳାସ
କେବେ ନ ଛାଡ଼ନ୍ତି କ୍ଷେତ୍ର ପ୍ରଭୁ ଶ୍ରୀନିବାସ ।
ଦ୍ୱିତୀୟ ପରାର୍ଦ୍ଧ ମୋର ପ୍ରବେଶ ହେବାରେ
ଯେବଣ ପରାର୍ଦ୍ଧେ ଶ୍ୱେତବରାହ କଳ୍ପରେ ।
ସ୍ୱାୟମ୍ଭୁବ ପ୍ରଥମ ମନୁଙ୍କ ଅଧିକାର
ଆଦ୍ୟ ଦିବସର ପ୍ରାତଃକାଳ ଏ ବର୍ଷର ।
ଛେହି କାଳରେ ଶ୍ରୀହରି ଦାରୁମୂର୍ତ୍ତି ଧାରି
ଭୁବନରେ ପ୍ରକଟିବେ କରୁଣା ବିସ୍ତାରି ।
ମୋ ପରମାୟୁ ଶ୍ରୀହରି ମଣ ପରମାଣ
ପୃଥିବୀରେ ରହିବେ ଯେ ପୁରୁଷ ପ୍ରଧାନ ।
ମୁହିଁ ଦେହ ମାତ୍ର ମୋର ଆତ୍ମା ସେହି ହରି
ମୁଁ ଯେ ହରିମୂର୍ତ୍ତି ଏହା ବୁଝ ଭଲ କରି ।

ସ୍ଥାବର ଜଙ୍ଗମେ ଅନ୍ତ ଦୁହିଁଙ୍କର ବନେ
ଅନ୍ୟ ଆଉ କିଛି ନାହିଁ ଜାଣ ଦେବଗଣେ ।
କ୍ଷୀର ସମୁଦ୍ର ମଧ୍ୟରେ ଶ୍ୱେତଦ୍ୱୀପ ଧାମେ
ଅନନ୍ତ ଶଯ୍ୟାରେ ହରି ଅଛନ୍ତି ଶୟନେ ।
ଯୋଗ ନିଦ୍ରାରେ ପହୁଡ଼ିଛନ୍ତି ଭଗବାନ
ଜଗତ ଆଧାର ମୂଳ ପୁରୁଷ ପ୍ରଧାନ ।
ତାଙ୍କ ଅଙ୍ଗେ କଳ୍ପବୃକ୍ଷ ସମ ରୋମମାନ
ଶଙ୍ଖ ଚକ୍ର ଗଦା ପଦ୍ମ ଚିହ୍ନ ଅଗଣନ ।
ତାମଧ୍ୟରେ ଏକ ତରୁ ଚୈତନ୍ୟାଧିଷ୍ଠାନ
ସ୍ୱୟଂ ମିଳି ଜଳରେ ହୋଇଲା ଉପାଦାନ ।
ଅଲୌକିକ ତରୁ ଯେହି ଜାଣ ଦେବଗଣ
ଭୋଗ ଭୁଞ୍ଜିବାର ପାଇଁ ପ୍ରଭୁ କଲେ ମନ ।
ଦାରୁରୂପ ଧରି ପ୍ରଭୁ ହୋଇଲେ ପ୍ରଚୁର
ଧ୍ୟାନଯୋଗ ବିନା ମୁକ୍ତି ଦ୍ୟନ୍ତି ଅନିବାର ।
ଏହି ରାଜା ବହୁ ଜନ୍ମ ତପସ୍ୟା ଯେ କଲେ
ଭକତରେ ବଶ ହୋଇ ପ୍ରକାଶ ସେ ହେଲେ ।
ପୂର୍ବେ ମୁଁ ସୃଷ୍ଟି ଭାରରେ ହୋଇଣ ପୀଡ଼ିତ
ପ୍ରାର୍ଥନା କଲି ଯେ ପାଇଁ ଜଗତର ହିତ ।
ରାଜାର ତପସ୍ୟା ଆଉ ମୋର ପ୍ରାର୍ଥନାରେ
ଦାରୁବ୍ରହ୍ମ ହୋଇଲେ ଯେ ପ୍ରକାଶ ସେଠାରେ ।
ଦାରୁମୟ ସାକ୍ଷାତ ଆପଣେ ଭଗବାନ
ଯେଉଁରୂପ ଦେଖ, ତାହା କର ସତ୍ୟ ଜ୍ଞାନ ।
ଅଚ୍ଛିନ୍ନ ଅଛି ଶ୍ରୀଅଙ୍ଗ ଏମନ୍ତ ନ ଜାଣି
ନେତ୍ରେ ଯାହା ଦେଖେ ସେହି ରୂପ ସତ୍ୟ ମଣି ।
ଧର୍ମ୍ମ ଅର୍ଥ କାମ ମୋକ୍ଷଦାତା ଜଗନ୍ନାଥ
ଦରଶନ ମାତ୍ରେ ମୁକ୍ତି ଯାଚିଦ୍ୟନ୍ତି ସେ ତ ।
ପତିତ ପାମର ଦୁରାଚାର ଯେତେ ଜନ
ଅବଶ୍ୟ ମୁକ୍ତି ଲଭିବେ ବିଶ୍ୱାସରେ ଜାଣ ।
ଏମନ୍ତ ଅମରେ ଶୁଣି ବ୍ରହ୍ମାଙ୍କ ବଚନ
ଅମୃତ ସିଞ୍ଚିଲା ପରି ହର୍ଷ କଲେ ମନ ।
ସକଳ ଦେବତା ଚିନ୍ତା କଲେ ମନେ ମନେ
ଅନିତ୍ୟ ଦେବତ୍ୱ ତେଜି ଯିବୁଁ ସେହିସ୍ଥାନେ ।
ଜଗନ୍ନାଥ ପାଦପଦ୍ମ କରି ଆରାଧନ
କର୍ମ୍ମକୂପରୁ ସକଳେ ହୋଇବୁଁ ମୋଚନ ।
ପ୍ରେମେ ପୂର୍ଣ୍ଣ ଦେବଗଣ ନେତ୍ରୁ ନୀର ଝରେ
ତା ଦେଖି ସନ୍ତୋଷେ ବ୍ରହ୍ମା କହନ୍ତି ସଭାରେ ।

ଇନ୍ଦ୍ରଦ୍ୟୁମ୍ନେ ଦୟା ବହି ହରିଙ୍କ ପ୍ରକାଶ
ଅନେକ ବର ରାଜାକୁ ଦେବେ ଜଗଦୀଶ ।
ପ୍ରତିମାସେ ଯେଉଁ ଯେଉଁ ଯାତ୍ରା ନିରୂପଣ
ଆପଣେ ବତାଇ ଦେବେ ପ୍ରଭୁ ନାରାୟଣ ।
ରାଜାର ଦେଉଳେ ପ୍ରଭୁ ପ୍ରତିଷ୍ଠା କାରଣେ
ଆପଣେ ମୁଁ ଯିବି ତହିଁ ଜାଣ ଦେବଗଣେ ।
ତୁମ୍ଭେମାନେ ସର୍ବେ ଅବିଳମ୍ବେ ଯିବ ତଥି
ଦ୍ରବ୍ୟ ଆୟୋଜନେ ଆଗେ ଯାଆନ୍ତୁ ନରପତି ।
ସେଠାରେ ସହାୟ ହୁଅ ତୁମ୍ଭେ ହେ ସକଳେ
ଇନ୍ଦ୍ରଦ୍ୟୁମ୍ନ ସାଥେ ସର୍ବେ ଯାଅ ନୀଳାଚଳେ ।
ପ୍ରଥମ ମନୁଙ୍କ ଏବେ ଗଲା ଅଧିକାର
ଦେଉଳ ପ୍ରତିଷ୍ଠା କରି ସମ୍ବନ୍ଧ ଏହାର ।
ତେବେ ରାଜା ସବୁ କାର୍ଯ୍ୟ ହେବେ ଶକ୍ତିମାନ
ଅବନୀରେ ନାହିଁ କେହି ଏହାଙ୍କ ସନ୍ତାନ ।
ଏହି ପଦ୍ମନିଧି ମୋର ସର୍ବ ଶକ୍ତି ଧରେ
ବସ୍ତୁ ଆୟୋଜନ ହେତୁ ଯିବ କ୍ଷେତ୍ରବରେ ।
ଏତେ ବୋଲି କୁଶପାଣି ଅତି ତୋଷମନେ
ଇନ୍ଦ୍ରଦ୍ୟୁମ୍ନଙ୍କୁ ସମ୍ପଦ ଅର୍ପିଲେ ବହନେ ।
ପଦ୍ମନିଧିଙ୍କ ଲଭି ସେ ଭକ୍ତ ନୃପବର
ଆନନ୍ଦ-ସିନ୍ଧୁରେ ମଗ୍ନ ହୋଇଲେ ସତ୍ୱର ।
ବ୍ରହ୍ମଲୋକରୁ ଫେରିବା ଚେଷ୍ଟା କଲେ ନୃପ
ଧନ୍ୟ ତାହାଙ୍କର ପୁଣ୍ୟ ଧନ୍ୟ ତାଙ୍କ ତପ ।
ସେ ବିଷ୍ଣୁଭକ୍ତଙ୍କ ପାଦ ରେଣୁ କରି ଆଶ
ବୈଷ୍ଣବ ଦାସ କରେ ଏ ପୁରାଣ ପ୍ରକାଶ ।

—:*:—

## ବ୍ରହ୍ମଲୋକରୁ ଇନ୍ଦ୍ରଦ୍ୟୁମ୍ନଙ୍କର ଶ୍ରୀକ୍ଷେତ୍ର ବାହୁଡ଼ା

ଶୌନକ ଉବାଚ

ଶୌନକ ଆଦି ସକଳ ମୁନି ଆନନ୍ଦରେ
ଜୈମିନିଙ୍କୁ ପୃଚ୍ଛା କଲେ ପରମ ଆଦରେ ।
କହ କହ ଋଷିବର ଏଥିଅନ୍ତେ ପୁଣି
କେବଣ ପ୍ରସଙ୍ଗ ହେଲା ତୋଷ ହେବୁଁ ଶୁଣି ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ପବିତ୍ର ଚରିତ୍ର
ହୃଦବୋଧ କରି ସର୍ବେ ହେବୁଁ କୃତାର୍ଥ ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ଅପୂର୍ବ କଥା ମୁଁ ଏବେ କରିବି ବର୍ଣ୍ଣନ ।
ମହାରାଜା ଇନ୍ଦ୍ରଦ୍ୟୁମ୍ନ ହରଷିତ ହୋଇ
ନୟନେ ବ୍ରହ୍ମାଙ୍କ ସର୍ବ ସମ୍ପଦକୁ ଚାହିଁ ।
ଅତି ଚମତ୍କାର ମଣି ପ୍ରଫୁଲ୍ଲିତ ମନେ
ଭକ୍ତିଭାବେ ପ୍ରଣମିଲେ ବ୍ରହ୍ମାଙ୍କ ଚରଣେ ।
ମେଲାଣି ଘେନି ତାହାଙ୍କ ଆଜ୍ଞାଶିରେ ଧରି
ଦେବଗଣ ସଙ୍ଗେ ବାହୁଡ଼ିଲେ ମର୍ତ୍ତ୍ୟପୁରୀ ।
ସେ ଭକ୍ତ ରାଜନ ହୋଇ ଉତ୍କଣ୍ଠିତ ମତି
ଶ୍ରୀଜଗନ୍ନାଥ ଦର୍ଶନ ବେଗରେ ଧାଆନ୍ତି ।
ଦୂରରୁ ପ୍ରଭୁଙ୍କୁ ଦେଖି ନମସ୍କାର କଲେ
ପ୍ରେମେ ପରିପୂର୍ଣ୍ଣ ରାଜା ସ୍ତୁତି ଆରମ୍ଭିଲେ ।

**ନମୋ ବ୍ରହ୍ମଣ୍ୟ ଦେବାୟ**
**ଗୋ ବ୍ରାହ୍ମଣ ହିତାୟ ଚ ।**
**ପ୍ରଣତାର୍ତ୍ତି ବିନାଶାୟ**
**ଚତୁର୍ବର୍ଗୈକ ହେତବେ ॥**
**ହିରଣ୍ୟଗର୍ଭବପୁଷେ**
**ପର ନାବ୍ୟକ୍ତରୂପିଣେ ।**
**ବାସୁଦେବାୟ ଶୁଦ୍ଧାୟ**
**ଶୁଦ୍ଧଜ୍ଞାନ ସ୍ୱରୂପିଣେ ॥**

ଏମନ୍ତେ ପ୍ରଭୁଙ୍କୁ ନାନାମତେ ସ୍ତୁତିକରି
ପ୍ରେମ ଭକ୍ତି ଭାବେ ରାଜା ପ୍ରଣାମ ଆଚରି ।
ବୋଇଲେ ହେ ଜଗନ୍ନାଥ ଜଗତ ଆଧାର
ଅଧମ ଭୃତ୍ୟ ଜନର ଘେନ ନମସ୍କାର ।
ନମୋ ନମଃ ହେ ବ୍ରହ୍ମଣ୍ୟ ଦେବ ଚକ୍ରଧାରୀ
ଗୋ ବ୍ରାହ୍ମଣ ହିତକାରୀ ଭୃତ୍ୟ ଭୟହାରୀ ।
ଧର୍ମ୍ମ ଅର୍ଥ କାମ ମୋକ୍ଷ ଦାନେ ମହାଦାତା
ଯାହାଙ୍କ ନାଭିପଦ୍ମରୁ ଜନ୍ମିଲେ ବିଧାତା ।
ପ୍ରଧାନ ଅବ୍ୟକ୍ତ ରୂପ ଯେ କି ସର୍ବାତ୍ମ
ନିର୍ମ୍ମଳ ବିଶୁଦ୍ଧଜ୍ଞାନ ସ୍ୱରୂପ ନିଷ୍ପୃହ ।
ଏମନ୍ତ ପୁରୁଷୋତ୍ତମ ଇଷ୍ଟଦେବ ମୋର
ସୁ-ପ୍ରସନ୍ନ ହୁଅନ୍ତୁ ପ୍ରଭୁ ଅନୁଗ୍ରହ କରି ।
ଏହାପରି ବାରଂବାର କରନ୍ତି ବନ୍ଦନ
ପ୍ରଦକ୍ଷିଣ କରି ପୁଣି କଲେକ ପ୍ରଣାମ ।

ସେଠାକୁ ଆଇଲେ ଯେତେ ଅନ୍ୟ ଦେବଗଣ
ବିଧାନେ ଜଗନ୍ନାଥଙ୍କୁ କଲେ ସେ ସ୍ତବନ ।
ପ୍ରଣାମ କରି ସକଳେ ବାହାରେ ଆଇଲେ
ନୃସିଂହଙ୍କ ପାଦେ ନମି ନୀଳାଚଳେ ଗଲେ ।
ପଦ୍ମନିଧି ସହିତ ସମ୍ଭାର ବାନ୍ଧିକରି
ଉପସ୍ଥିତ ହେଲେ ଗିରି ଶିଖେ ଯାଇକରି ।
ଶ୍ରୀହରି ମନ୍ଦିର ମହା ଜ୍ୟୋତିର୍ମ୍ମୟ ତହିଁ
କିରଣରେ ଗଗନ-ମଣ୍ଡଳ ପ୍ରକାଶଇ ।
କିବା ବିନ୍ଧ୍ୟଗିରି ସୂର୍ଯ୍ୟ ପଥ ରୁନ୍ଧିବାରେ
ପରବେଶ ହେଲେ ସୁନ୍ଦର ନୀଳାଦ୍ରି ଉପରେ ।
ନାନା ମଣି ମାଣିକ୍ୟେ ଗଠିତ ଶ୍ରୀମନ୍ଦିର
ଦେଖି ଦେବଗଣ ପ୍ରେମେ ହୋଇଲେ ଅସ୍ଥିର ।
ଦେଉଳକୁ ଦେଖି ରାଜା ନିଜକୁ ପାଶୋରେ
ନୟନେ ଦେଖିଲି ପୁଣି ବହୁ କାଳପରେ ।
ଏକ ଅଦଭୁତ ମନ୍ୱନ୍ତର ଗତ ହେଲା
ଚନ୍ଦ୍ର ସୂର୍ଯ୍ୟ ସମସ୍ତଙ୍କ ଅଧିକାର ଗଲା ।
ତଥାପି ଦେଉଳ ଅଛି ପୂର୍ବର ସମାନ
ମୋରେ ଦୟା ବହି ରଖିଛନ୍ତି ଭଗବାନ ।
ଦେବଗଣଙ୍କୁ ରାଜନ କହନ୍ତି ତଦନ୍ତେ
ଏ ଦେଉଳ କଲି ମୁହିଁ ହରିଙ୍କ ନିମନ୍ତେ ।
ଦାରୁରୂପ ଧରି ଆସିଲେ ଶ୍ରୀଭଗବାନ
ଆକାଶ ବାଣୀରେ ମୋତେ କଲେ ଆଜ୍ଞା ଦାନ ।
ସେ ଆଜ୍ଞା ପାଳି ଲଗିଲି ଦେଉଳ ନିର୍ମ୍ମାଣେ
ପ୍ରତିଷ୍ଠା କାରଣେ ବ୍ରହ୍ମା ଆସିବେ ଏ ସ୍ଥାନେ ।
ସିଦ୍ଧ ବ୍ରହ୍ମର୍ଷି ସର୍ବଦେବଙ୍କ ସହିତେ
ମୋର ସଙ୍ଗରେ ମିଳିବେ ବ୍ରହ୍ମା ତୋଷ ଚିତ୍ତେ ।
ଏଣୁ ହେ ଅମରେ କରୁଛି ମୁଁ ନିବେଦନ
ଆଜ୍ଞାଦିଅ କରିବଇଁ କିବା ଆୟୋଜନ ।
ଏହାଶୁଣି ଦେବଗଣ ବିସ୍ମିତ କହିଲେ
ଆମ୍ଭେ ତା ନଜାଣୁ ବ୍ରହ୍ମା ନିଜେ ତ ବୋଇଲେ
ଯେତେକାଳେ ପୃଚ୍ଛିଲ ନାହିଁ ଆମ୍ଭଙ୍କୁ ଭାରତୀ
କିରୂପେ କହିବୁ ଏବେ ସେ ନାହାନ୍ତି ଏଥି ।
ଏହିରୂପେ ବିସ୍ମିତ ଜରନ୍ତି ସର୍ବଜନେ
ସେହିକାଳେ ପଦ୍ମନିଧି କହି ବିଦ୍ୟମାନେ ।
ଶୁଣ ନରପତି ବ୍ରହ୍ମା ଆଦେଶିଲେ ମୋତେ
ଭୂମିସାଥେ ଆସିଲି ସମ୍ଭାର କହିବାରେ ।

ଆଜ୍ଞାଦିଅ କି ଦ୍ରବ୍ୟ କରିବ ଆୟୋଜନ
ଆଜ୍ଞା ପାଇଲେ ପ୍ରସ୍ତୁତ କରିବ ବହନ ।
ପଦ୍ମନିଧି ନୃପତିଙ୍କି କହେ ଏହି ବାଣୀ
ଦେଉଳ ପ୍ରତିଷ୍ଠା ଆୟୋଜନର କାହାଣୀ ।
ସେହି ସାଧୁବୃନ୍ଦଙ୍କର ଦାସ ଅନୁଦାସ
ପୁରାଣ ପ୍ରବନ୍ଧେ ଭଣେ ବଇଷ୍ଣବ ଦାସ ।

—×—

## ଦେଉଳ ପ୍ରତିଷ୍ଠାର ଆୟୋଜନ

### ଜୈମିନି ଉବାଚ

ଏହିରୂପେ ସବେ ମିଳି କରନ୍ତି ବିଚାର
ସେହିକାଳେ ପହୁଞ୍ଚିଲେ ବ୍ରହ୍ମାଙ୍କ କୁମର ।
ବୀଣାସ୍କନ୍ଧେ ପ୍ରେମେ ଢଳ ଢଳ ମହାଯତି
ହରେ କୃଷ୍ଣ ନାମ ମୁଖେ ଗାନ କରୁଛନ୍ତି ।
ତାଳେ ତାଳେ ନାଚି ମୁନି ଆନନ୍ଦେ ବିହ୍ୱଳ
ରଚୁଛନ୍ତି ଜୟ ହରି ଗୋବିନ୍ଦ ଗୋପାଳ ।
ଜୟ ବୃନ୍ଦାବନଚନ୍ଦ୍ର ଜୟ ଜଗନ୍ନାଥ
ହେ ଦାରୁମୂରତି ପରଂବ୍ରହ୍ମ ଲକ୍ଷ୍ମୀକାନ୍ତ ।
ହଳଧର ଭଦ୍ରା ସୁଦର୍ଶନ ସାଥେ ହରି
ଜୟ ନୀଳାଦ୍ରି ମଧ୍ୟରେ ଅଛ ଅବତରି ।
ଏହିରୂପେ ହରି ଗୁଣ ଗାଇ ଆନନ୍ଦରେ
ଉପସ୍ଥିତ ହେଲେ ଇନ୍ଦ୍ରଦ୍ୟୁମ୍ନ ନିକଟରେ ।
ନାରଦଙ୍କୁ ଦେଖି ରାଜା ଉଠି ତରତରେ
ସାଷ୍ଟାଙ୍ଗେ ପଡ଼ି ନମିଲେ ଭାବ ଭକ୍ତିଭରେ ।
କନକ ଆସନେ ବିଜେକଲେ ତପୋଧନ
ଗନ୍ଧପୁଷ୍ପ ଧୂପଦୀପେ କଲେକ ଅର୍ଚ୍ଚନ ।
ନାରଦଙ୍କ ପାଦେ ପ୍ରଣମିଲେ ଦେବଗଣେ
ମନୁଷ୍ୟରୂପେ ସକଳେ ଭମନ୍ତି ସେ ସ୍ଥାନେ ।
ତହୁଁ କରଯୋଡ଼ି ରାଜା କଲେ ନିବେଦନ
ପ୍ରତିଷ୍ଠା ନିମନ୍ତେ କି କରିବି ଆୟୋଜନ ।
ପୁରୋହିତ ହିନ ମୁହିଁ କିଛି ନାହିଁ ଜାଣି
ଯେଉଁ ଯେଉଁ ଦ୍ରବ୍ୟ ଲୋଡ଼ା କହ ମହାମୁନି ।
ଏନି ପଦ୍ମନିଧି ଦେବ ତବ ଆଦେଶରେ
ଯଥାଯୋଗ୍ୟ ଦ୍ରବ୍ୟ ନିଯୋଗିବେ ବିଧାନରେ ।
ଇନ୍ଦ୍ରଦ୍ୟୁମ୍ନ ରାଜା ଜଣା କରନ୍ତେ ଏମନ
ବିଧାନ ଲେଖିଣ ମୁନି ଦେଲେ ତତକ୍ଷଣ ।
ପଦ୍ମନିଧି ହାତେ ପତ୍ର ଦେଲେ ନରପତି
ବିନମ୍ର ହୋଇ କହିଲେ ମଧୁରେ ଭାରତୀ ।
ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଆଦି ଦେବଙ୍କର
ଗନ୍ଧର୍ବ ଅପ୍‌ସର ନାଗ ସିଦ୍ଧ ଯେ କିନ୍ନର ।
ପୃଥିବୀର ରାଜାମାନେ ଯେତେ ବଡ଼ ସାନ
ଋଷି ମୁନି ଯୋଗୀ ନ୍ୟାସୀ ବୈଷ୍ଣବ ବ୍ରାହ୍ମଣ ।
ଯାର ଯେଉଁ ଯୋଗ୍ୟ ସ୍ଥାନ କର ହେ ରଚନ
ରତନ ହୀରକ ମଣି କନକ-ଭବନ ।
ଯଥାଯୋଗ୍ୟ ଆୟୋଜନ କର ପ୍ରତିଷ୍ଠାର
ବିଶ୍ୱକର୍ମା ଯେ ସହାୟ ହୋଇବେ ତୁମ୍ଭର ।
ପଦ୍ମନିଧିକି ରାଜନ କହନ୍ତେ ଏପରି
ସେକାଳେ ମୁନି ବୋଇଲେ ଶୁଣ ଦଣ୍ଡଧାରୀ ।
ଏସବୁ ସମ୍ଭାର ଛଡ଼ା ଅଛି ଆଉ କିଛି
ସାବଧାନେ କର ତାହା ହେ ସୂର୍ଯ୍ୟଙ୍କ ବଂଶି ।
ସ୍ୱର୍ଣ୍ଣମୟ ତିନି ରଥ କରାଅ ନିର୍ମ୍ମାଣ
ବହୁମୂଲ୍ୟ ରତ୍ନେ ଗଢ଼ାଇବ ଅନୁପମ !
ଜଗନ୍ନାଥ ରଥଧ୍ୱଜେ ଗରୁଡ଼ ରହିବ
ବଳଦେବ ରଥେ ତାଳଧ୍ୱଜ ବିରାଜିବ ।
ପଦ୍ମଧ୍ୱଜ ରହିବ ଯେ ସୁଭଦ୍ରା ବିମାନେ
ପ୍ରତିଷ୍ଠା କରିବ ମୁହିଁ ବ୍ରହ୍ମାଙ୍କ ବଚନେ ।
ଏହାଶୁଣି ଇନ୍ଦ୍ରଦ୍ୟୁମ୍ନ ହରଷ ହୃଦୟ
ପଦ୍ମନିଧି ଆଡ଼କୁ ଚାହିଁଲେ ନରରାୟ ।
ସେହିକାଳେ ବିଶ୍ୱକର୍ମା ମିଳିଲା ସେ ସ୍ଥାନେ
ଦିବ୍ୟ ତିନିରଥକୁ ଗଢ଼ିଲେ ଏକଦିନେ ।
ଆପଣେ ହୋଇଲେ ଚିହ୍ନ ରଥର ଉପର
ମନୋହର ରଥ ଆଉ ଶୋଭେ ପରସ୍ପର ।
ମୋତିଝରାମାନ ଝୁଲେ ସେ ରଥର ଦ୍ୱାରେ
ନାନାଚିତ୍ରମୟ ଶୋଭା ନେତ-ପତାକାରେ ।
ତାଳ ପଦ୍ମ ଗରୁଡ଼ ଶୋଭଇ ତିନିଧ୍ୱଜେ
ସ୍ତ୍ରୀ ପୁରୁଷଙ୍କ ପିତୁଳା ଠାବେ ଠାବେ ସାଜେ
ସୁନ୍ଦରୀ ଅଳସୀ କନ୍ୟା ସଖୀ ନାନା ଭଳି
ଶୁଆ ସାରି ପାରା ଆଦି ଅନେକ ପୁତ୍ତଳି ।
ଘଣ୍ଟି ଘାଗୁଡ଼ି ମାନ ଯେ ଓହ୍ଲାଇଛି କେତେ
ମକର ମୁହାଁ ନାଏକା ଓଁପିମୁକ୍ତା ବ୍ରାତେ ।
ମନୋହର ତୋରଣ କଳଶ ଫୁଲ ମାଳା
ରଥକୁ ମାନିଲେଁ କି ସୁନ୍ଦର ଝରା ଝୁଲ ।

ଜମ୍ବୁନଦ ସୁବର୍ଣ୍ଣରେ ରଥର ଗୁଣି
ସୂର୍ଯ୍ୟଙ୍କ ରଥ ପରାଏ ତେଜ ତାର ପୁଣି ।
ମେଘ ଘଡ଼ଘଡ଼ି ଧ୍ୱନି ଶୁଭେ ଚକ୍ର ସ୍ୱନ
ଦୃଢ଼ ଡୋରେ ଯୋଗୁ ତହିଁ ଦିବ୍ୟ ଅଶ୍ୱମାନ ।
କଳା ଧଳା ଲାଲ ରଙ୍ଗେ ଘୋଡ଼ାମାନେ ତହିଁ
ପବନ ପରାଏ ଗତି କରନ୍ତି ଯେ ସେହି ।
ସୁନା ଜରିମାନଙ୍କରେ ଗୁନ୍ଥାମଣି ହୀରା
ପୋହଳା ବୈଦୂର୍ଯ୍ୟ ମୋତି ଝଟକଇ ତୋରା
ତିନିରଥ ଯାକ ଦିଶେ ଅପୂର୍ବ ସାଜେଣି
ନାହିଁ ନୋହିବ ସେପରି ଶୋଭା କାହିଁ ପୁଣି ।
ରଥକୁ ଚୃହିଁ ନୃପତି ଆନନ୍ଦ ଅପାର
ପୁଲକେ ପୂରିଲା ଅଙ୍ଗ ନେତ୍ରେ ପ୍ରେମ ନୀର ।
ଭାବେ ଗଦଗଦ ହୋଇ ଅତି ଅନୁରାଗେ
କରଯୋଡ଼ି କହେ ରାଜା ନାରଦଙ୍କ ଆଗେ ।
ଆହେ ମହାମୁନିବର ବ୍ରହ୍ମାଙ୍କ ନନ୍ଦନ
ରଥ ତିନିକି ପ୍ରତିଷ୍ଠା କରନ୍ତୁ ଆପଣ ।
ଏହାଶୁଣି ମୁନିବର ହୋଇ ହରଷିତ
ସୁଲଗ୍ନ ସୁବେଳା ତିଥି କରି ନିରୂପିତ ।
ସର୍ବଶୁଭେ ଯଥାକାଳେ ପ୍ରତିଷ୍ଠା ସେ କଲେ
ରଥ ଦେଖି ସର୍ବଙ୍କ ଉତ୍ସାହ ବଢ଼େ ଭଲେ ।
ତଦନ୍ତେ ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କ ସଙ୍ଗରେ
ମହାବେଦୀରେ ମିଳିଲେ ହରଷ ମନରେ ।
ନମସ୍କାର ଅନ୍ତେ ଜଗନ୍ନାଥେ କରି ସ୍ତୁତି
ଜଣାଇଲେ କରଯୋଡ଼ି ମୁନି ନରପତି ।
ଦେବଦେବ ମହିମା ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
ମହାବେଦୀ ତେଜି ନୀଳାଦ୍ରି କି ବିଜେକର ।
ରତ୍ନବେଦୀ ପରେ ତହିଁ ରହିବେ ଗୋସାଇଁ
ମହିମା ବାନା ଉଡ଼ାଅ ପ୍ରଭୁ ଲକ୍ଷ୍ମୀସାଇଁ ।
ଏମନ୍ତେ ନୃପତିବର କଲେ ନିବେଦନ
ବୈଷ୍ଣବ ଦାସ ଶରଣ କଲା ଶ୍ରୀବଦନ ।

—୫✳୫—

## ଜଗନ୍ନାଥଦେବଙ୍କ ରଥ ବିଜୟ

ଜୈମିନି ଉବାଚ

ଏଥିଅନ୍ତେ ମୁନିମାନେ ଶୁଣ ସାବଧାନେ
ଶ୍ରୀଜଗନ୍ନାଥଙ୍କ ରଥ ବିଜୟ ଯେସନେ ।
ପ୍ରଭୁଙ୍କୁ ପ୍ରାର୍ଥନା କରି ଇନ୍ଦ୍ରଦ୍ୟୁମ୍ନ ରାୟ
ପାଟଡ଼ୋରି ଅଣାଇଲେ ସୁନାଜରିମୟ ।
ଚୃରିମୂର୍ତ୍ତିଙ୍କର କଟି କଲେକ ବନ୍ଧନ
ବେଦୀରୁ ପହଣ୍ଡି ମଣାଇଲେ ତହିଁ ପୁଣ ।
ବ୍ରାହ୍ମଣମାନେ ଟାଣନ୍ତି କରି ଘନ ଘନ
ହଲାଇ ପାରିଲେ ନାହିଁ ବିପ୍ରେ କଦାଚନ ।
ମହା ଗରୁଆ ଅଟନ୍ତି ଦାରୁବ୍ରହ୍ମ ମୂର୍ତ୍ତି
ତିଳେହେଲେ ଚକାବଇଠିରୁ ନ ଚଳନ୍ତି ।
ଗମ ଗମ ଝାଳ ବହେ ବିପ୍ରଙ୍କର ଦେହୁ
ଟାଣି ଟାଣି ନ ହଲନ୍ତି ବଳୀୟାରବାହୁ ।
ବହୁଶ୍ରମ ପାଇ ବସି ପଡ଼ିଲେ ବ୍ରାହ୍ମଣେ
ତଳକୁ ବଦନ ପୋତି ରହିଲେ ସେମାନେ ।
ତାଦେଖି ରାଜନ ହେଲେ ବିସ୍ମୟ ମାନସ
ନାରଦ ମୁନିଙ୍କି ତହୁଁ ପୁଚ୍ଛିଲେ ସନ୍ଦେଶ ।
କହନ୍ତୁ ହେ ତପୋଧନ ଏଥିର କାରଣ
ଜାଣିବାପାଇଁକି କରୁଅଛୁ ମୁଁ ଜଣାଣ ।
ଏହାଶୁଣି ମୁନିବର କହନ୍ତି ଯେ ହସି
ଶୁଣ ଶୁଣ ନରପତି କହୁଛୁ ବିଶେଷି ।
ଶ୍ରୀଜଗନ୍ନାଥ ମୂରତି ଜାଣ ବିଶ୍ୱମ୍ଭର
ଝୁଲାଇ ହଲାଇବାକୁ ଶକତି କାହାର ।
ଏତେ କହି ମୁନିବର ବେନିକର ଯୋଡ଼ି
ଜଣାଇଲେ ଜଗନ୍ନାଥେ ପଦ୍ମପାଦେ ପଡ଼ି ।
ଦେବଦେବ ମହିମା ବିଶ୍ୱପତି ମହାବାହୁ
ନୀଳାଦ୍ରି କି ରଥେ ବସି ବିଜେ ଆଜ୍ଞାହେଉ ।
ଏମନ୍ତେ ଜଣାଇ ମୁନି ଶ୍ରୀଜଗନ୍ନାଥଙ୍କୁ
କହିଲେ ଅନାଇଁ ସେହି ବ୍ରାହ୍ମଣମାନଙ୍କୁ ।
ବିଳମ୍ବରେ କାର୍ଯ୍ୟନାହିଁ ଆହେ ବିପ୍ରଗଣ
ଶ୍ରୀହରିଙ୍କି ନେଇ ଚଳ ରଥକୁ ବହନ ।
ମୁନିଙ୍କ ଆଦେଶ ପାଇ ପୁଣି ଦ୍ୱିଜଗଣ
ପାଟଦଉଡ଼ିକି ଧରି କଲେ ଆକର୍ଷଣ ।
ଅତି ସହଜରେ ଟାଣି ବ୍ରହ୍ମାଣ୍ଡନାଥଙ୍କୁ
ପହଣ୍ଡି ବିଜେସେ କରି ନେଲେ ସେ ରଥକୁ ।
ପ୍ରକୃତରେ ଯେ ପ୍ରଭୁ ଅଚଳ ମହାମେରୁ
ଭକ୍ତ ଭାବନାକୁ ସେହୁ ନ ହୁଅନ୍ତି ଗରୁ ।
ବିଜେ ଚୃରୁ ସୋପାନ ରଥ ଉପରକୁ
ପାଏଣ୍ଡା ପକାଇ ନେଲେ ଶ୍ରୀଦାରୁବ୍ରହ୍ମଙ୍କୁ ।

ଝୁଲାର ମାଣି ମୁରୁଳାମାନ ସୁ-ଘଟନେ
ଠାକୁରଙ୍କ ଶ୍ରୀମୁଖରେ ପାରନ୍ତି ସୁମନେ ।
ଚହଣି ବିଜେ ବେଳରେ ଦାରୁବ୍ରହ୍ମ ମୂର୍ତ୍ତି
ତାହାଙ୍କ ଚରଣଘାତେ ଛିଣ୍ଡେ ମାଣି ଚତି ।
ବଜ୍ର ସମ ଶ୍ରୀହରିଙ୍କ ଚରଣ ଆଘାତ
ତହିଁକି ତାହା ଶବଦ ଅତି ଅଲୌକିତ ।
ଝୁଲାର ମୁରୁଳା ସବୁ ହୁଏ ଛିନ୍ନ ଭିନ୍ନ
ଯେହ୍ନେ ତୁଳାରାଶି ଉଡ଼ି ଉଡ଼ାନ୍ତେ ଗଗନ ।
ପ୍ରଥମରେ ବଡ଼ ଠାକୁରଙ୍କୁ ଘେନିଗଲେ
ତଦନ୍ତେ ସୁଭଦ୍ରା ମୂର୍ତ୍ତି ବିଜେ କରାଇଲେ ।
ପଛରେ କଳାଶ୍ରୀମୁଖ ସୁଦର୍ଶନ ସାଥେ
ବିଜୟ କଲେ ଯାଇଣ ନନ୍ଦିଘୋଷ ରଥେ ।
ଡାକ ପଡ଼ଇ ଶ୍ରୀଦେବ ମଣିମା ମଣିମା
ଜୟ ଜଗନ୍ନାଥ ହରି ଗୁହାରି ଶୁଣିମା ।
ଜୟ ଜୟ ବଳଭଦ୍ର ପ୍ରଭୁ ହଳପାଣି
ଜୟ ଜୟ ଭଦ୍ରା ଦେବୀ ଲକ୍ଷ୍ମୀ ସାମନ୍ତାଣୀ ।
ଜୟ ଜୟ ସୁଦର୍ଶନ ଚକ୍ର ମହାତେଜ
ଜୟ ଜୟ ମହାପ୍ରଭୁ ବଳୀୟାରଭୁଜ ।
ଏହିମତେ ଜୟ ଧ୍ୱନି କଲେ ସର୍ବେ ମିଳି
ନର ନାରୀମୁଖେ ହରିବୋଲ ହୁଳହୁଳି ।
ତିନି ରଥକୁ ଟାଣିଲେ ନୀଳାଦ୍ରି ଦାଣ୍ଡରେ
କେତେ ପୁଷ୍ପ ବୃଷ୍ଟି ହୁଏ ସେକାଳେ ଶୂନ୍ୟରେ ।
କି କହିବି ସେକାଳର ରଥଚଳା ଶୋଭା
ତ୍ରିଭୁବନ ପ୍ରାଣୀଙ୍କର ଅତି ମନ ଲୋଭା ।
ଲୀଳା ଭିଆଣେ ଶ୍ରୀହରି କରନ୍ତି ବିଜୟ
ଦରଶନେ ପ୍ରାଣୀଙ୍କର ଘୁଞ୍ଚେ ତାପ ଭୟ ।
ଭକତଙ୍କ ଭାବରଙ୍ଗା ପ୍ରଭୁ ଚକାଡ଼ୋଳା
ଭକ୍ତ ଭାବେ ନିରନ୍ତର ହୋଇଥାନ୍ତି ଭୋଳା ।
ଚକ୍‌ଚକ କଳାଶ୍ରୀମୁଖ ଦିଶେ ଦାଉ ଦାଉ
ସୁକାନ୍ତିରେ ଇନ୍ଦ୍ର-ନୀଳମଣି ସମ କାହୁଁ ।
ଶ୍ୱେତ ପଦ୍ମଦଳ ଜିଣି ନୟନ ଯୁଗଳ
ଶ୍ରୀକର ପାପୁଲି ନିନ୍ଦେ କୋକନଦ-ଦଳ ।
ଶ୍ରବଣ ଯୁଗଳେ ଶୋହେ ମକର କୁଣ୍ଡଳ
ଝଲମଲ ତେଜରେ ମଣ୍ଡଇ ଗଣ୍ଡସ୍ଥଳ ।
ତିଳ ଫୁଲ ଜିଣି ନାସା ତହିଁ ଗଜମୋତି
କମ୍ବୁ କଣ୍ଠ ଗୁଞ୍ଜମାଳ ମୁକୁତାର ପନ୍ତି ।

କଟି ତଟରେ ମେଖଳା ରତନ କଙ୍କିଣୀ
ରଥଗତି କାଳେ ସେହୁ ବାଜେ କିଣି କିଣି ।
ତହିଁକି ପୀତବସନ ଝଟକଇ ଡୋର
ମଞ୍ଜୁ ମଞ୍ଜୀର ଚରଣେ ସେ ଦୁଃଖ ପାଶୋର !
ଏମନ୍ତେ ବିଜୟେ ରଥେ ଶଙ୍ଖ ଚକ୍ରଧାରୀ
ପ୍ରତିଷ୍ଠା ଅନ୍ତେ ହୋଇବେ ନୀଳାଦ୍ରି ବିହାରୀ ।
ମହାବେଦୀଠାରୁ କ୍ରମେ କ୍ରମେ ତିନି ରଥ
ନୀଳଗିରି ସନ୍ନିଧିନେ ହେଲେ ଉପସ୍ଥିତ ।
ଜୈମିନି ବୋଲନ୍ତି ମୁନି ଶୁଣ ସାବଧାନେ
ରଥେ ଦାରୁବ୍ରହ୍ମ ମୂର୍ତ୍ତି ଅଇଲେ ଏସନେ ।
ନାନା ବାଦ୍ୟ ନାଟ ଗୀତ ହୁଅଇ ସେକାଳେ
ଦେଉଳ ନିକଟେ ପ୍ରବେଶିଲେ ଶୁଭ ବେଳେ ।
ତହୁଁ ବିଶ୍ୱକର୍ମା ଇନ୍ଦ୍ରଦ୍ୟୁମ୍ନଙ୍କ ବଚନେ
ନିର୍ମ୍ମାଣିଲେ ଗୃହମାନ ରତନ କାଞ୍ଚନେ ।
ବଡ଼ ବଡ଼ ଗୃହ ସବୁ ଅତି ମନୋହର
ଦେବଙ୍କ ଦୁର୍ଲ୍ଲଭ ସେ ନୟନ ଅଗୋଚର ।
ସକଳ ଗୃହ ଏମନ୍ତେ ନିର୍ମ୍ମାଣି ସାରିଲେ
ସଭାର ଦ୍ରବ୍ୟ ସମସ୍ତ ତହିଁ ସମ୍ପାଦିଲେ ।
ଅସୁମାରି ଘୃତ ଭାଣ୍ଡ ଯଜ୍ଞ କାଷ୍ଠମାନ
ରାଶି ରାଶି କୁଶବିଡ଼ା ପର୍ବତ ସମାନ ।
ଭକ୍ଷ୍ୟ ଭୋଜ୍ୟ ଉପହାର ଅନେକ ପ୍ରକାର
ପରିପୂର୍ଣ୍ଣ କଲେ ଶୁଭେ ସକଳ ଭଣ୍ଡାର ।
ପୂର୍ବେ ଯଜ୍ଞ କାଳେ ହୋଇଥିଲା ଯେଉଁପରି
ତହୁଁ ବଳି ଦ୍ରବ୍ୟମାନ ଗୃହ ଗଲା ପୂରି ।
ତଦନ୍ତେ ହକାରି ରାଜା ଶ୍ରେଷ୍ଠ ବିପ୍ରଗଣେ
ଦେଉଳ ପ୍ରତିଷ୍ଠା କାର୍ଯ୍ୟେ କଲେ ନିଯୋଜନେ ।
ଏଥି ମଧ୍ୟେ ଚମତ୍କାର ଘଟଣା ଯା ଶୁଣ
ଯେକାଳେ ନୃପତି ଗଲେ ବ୍ରହ୍ମାଙ୍କ ସଦନ ।
ଗାଲ ମାଧବ ନାମେ ଯେ ଏକ ନରପତି
ସମସ୍ତେଙ୍କ ଅଧିକାରୀ ହୋଇଲା ସେ ତଥି ।
ଇନ୍ଦ୍ରଦ୍ୟୁମ୍ନ କୀର୍ତ୍ତି ଦେଉଳରେ ଚୂନ ଦେଇ
ମାଧବ ପ୍ରତିମା ଏକ ବସାଇଲା ତହିଁ ।
ଇଚ୍ଛା ଅନୁସାରେ ସେବା ନୀତି ଖଞ୍ଜିଦେଲା
ସେବକ ବିପ୍ର ହସ୍ତରେ ପୂଜା କରାଇଲା ।
ଏମନ୍ତେ ଦେଉଳକୁ ଯେ ଅଧିକାର କରି
ପୂଜାକରେ ସେ ଗାଲ ମାଧବ-ଦଣ୍ଡଧାରୀ ।

ଦେଉଳ ନିର୍ମାଣକର୍ତ୍ତା ରାଜା ଇନ୍ଦ୍ରଦ୍ୟୁମ୍ନ
ଲୋକ ମୁଖରୁ ସେ ବାର୍ତ୍ତା କଲେକ ଶ୍ରବଣ ।
ପୂର୍ବରୁ ଗାଲ ମାଧବ ବିଶ୍ବର ମାନସେ
ଦେଉଳେ ନିର୍ମାଣି ଥିଲା ଶ୍ରୀମନ୍ଦିର ପାଶେ ।
ବଡ଼ ଦେଉଳରୁ ନେଇ ମାଧବ ମୂରତି
ସେ ଦେଉଳେ ରଖାଇଲେ ଭକ୍ତ ନରପତି ।
ଦୂତ ମୁଖୁଁ ଶୁଣିପାରି ସେ ଗାଲ ମାଧବ
ଅତି କୋପଭରେ ହୋଇ ଅଇଲା ସେ ଠାବ ।
ନିଜର ସୈନ୍ୟଙ୍କୁ ସାଜି ମତ୍ତ ଗରବରେ
ପ୍ରବେଶିଲା ନୀଳାଦ୍ରିରେ ଯୁଦ୍ଧ କରିବାରେ ।
ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ଐଶ୍ବର୍ଯ୍ୟକୁ ଦେଖି
ବିସ୍ମୟ ଅନ୍ତରେ ତାର ମୁଖଗଲା ଶୁଖି ।
କି ଯୁଦ୍ଧ କରିବ ଲାଜେ ପୋତିଲା ବଦନ
ସବାନ୍ଧବେ ଇନ୍ଦ୍ରଦ୍ୟୁମ୍ନେ ମାଗିଲା ଶରଣ ।
ଆଶ୍ବାସନା କରି ତାକୁ ଇନ୍ଦ୍ରଦ୍ୟୁମ୍ନ ରାୟ
ସଧୀରେ କହିଲେ ରାଜା ନକର ହେ ଭୟ ।
ପ୍ରଭୁଙ୍କ ସେବା ତୁମ୍ଭରେ କରି ସମର୍ପଣ
ପୁଣି ବ୍ରହ୍ମଲୋକ ମୁହିଁ କରିବି ଗମନ ।
ଏହା ଶୁଣି ସେ ଗାଲ ମାଧବ ନରପତି
ବାଞ୍ଛା ପୂର୍ଣ୍ଣ ହେଲା ଜାଣି ହର୍ଷ କଲା ମତି ।
ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କର ଶ୍ରୀଛାମୁଁରେ
କରଯୋଡ଼ି ଉଭାରି ରହିଲା ଭକ୍ତିଭରେ ।
ଭୃତ୍ୟ ପଣେ ରହିଲେ ସେ ରାଜା ବିଦ୍ୟମାନେ
ଇନ୍ଦ୍ରଦ୍ୟୁମ୍ନ ତାହା ଦେଖି ସନ୍ତୋଷ ବିଧାନେ ।
ଯେବେ ଯାହା ଆଦେଶନ୍ତି ଇନ୍ଦ୍ରଦ୍ୟୁମ୍ନ ତାରେ
ସେହି କାର୍ଯ୍ୟ ଗାଲ ରାଜା ସାବଧାନେ କରେ ।
ଏହିରୂପେ ଠୁଳ କଲେ ସକଳ ସମ୍ଭାର
ଇନ୍ଦ୍ରଦ୍ୟୁମ୍ନଙ୍କ ଐଶ୍ବର୍ଯ୍ୟ ଅତି ଚମତ୍କାର ।
ଶ୍ରୀଦାରୁବ୍ରହ୍ମମୂର୍ତ୍ତିଙ୍କ ପାଦପଦ୍ମେ ଆଶ
କହଇ ହରି ବୋଲାଆ ବଇଷ୍ଣବ ଦାସ ।



## ଦେବଗଣଙ୍କ ସହିତ ବ୍ରହ୍ମାଙ୍କ ନୀଳାଦ୍ରି ଆଗମନ

ଶୌନକ ଉବାଚ

ଶୌନକ ମୁନି ପୁଚ୍ଛନ୍ତି ଜୈମିନିଙ୍କି ଚାହିଁ
ତଦନ୍ତେ କି ହେଲା ଋଷି କହ ହେ ବୁଝାଇ ।
ପରମ ବୈଷ୍ଣବ ସେ ଯେ ଇନ୍ଦ୍ରଦ୍ୟୁମ୍ନ ରାୟ
କି କି କାର୍ଯ୍ୟ କଲେ କରି ନୀଳାଦ୍ରି ବିଜୟ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିବର
କହୁଛି ତୁମ୍ଭ ଆଗେ ମୁଁ ଦିବ୍ୟ ସମାଚାର ।
ଇନ୍ଦ୍ରଦ୍ୟୁମ୍ନ ମହାରାଜା ହରଷ ବଦନେ
ବସିଛନ୍ତି ରତ୍ନମୟ ରାଜ ସିଂହାସନେ ।
ଚଉଦିଗେ ଘେରିଛନ୍ତି ସର୍ବ ଭକ୍ତଗଣ
ସେ ମଧ୍ୟରେ ମହାରାଜା ଇନ୍ଦ୍ରଙ୍କ ସମାନ ।
ଅଙ୍ଗ ତେଜେ ଦିଗ ଦିଶୁଅଛି ଦୀପ୍ତିମୟ
ସଭାସ୍ଥଳୀ ବିରାଜୁଛି ସୁଧର୍ମ୍ମା ପରାୟ ।
ଏହିରୂପେ ଛନ୍ତି ରାଜା ଭକ୍ତଙ୍କ ସହିତେ
ଆକାଶେ ଦୁନ୍ଦୁଭି ଶବ୍ଦ ହେଲା ଆଚମ୍ବିତେ ।
ମୃଦଙ୍ଗ ମୁରଜ ବୀଣା ବେଣୁ କରତାଳ
ସୁମଧୁରେ ବାଜେ ଢକ୍କା ଝାଞ୍ଜରି କଂସାଳ ।
ବାଜଇ ଜୟ କାହାଳୀ ମଙ୍ଗଳ ମହୁରି
ଅତି ମନୋହର ସ୍ବରେ ବାଜେ ଭେରି ତୁରୀ ।
ଐରାବତ ଆଦି କରି ହସ୍ତୀଙ୍କ ଗର୍ଜ୍ଜନ
ଚଉଦିଗେ ଜୟ ଧ୍ବନି ପୁଷ୍ପ ବରଷଣ ।
ମନ୍ଦ ମନ୍ଦ ହୋଇ ବହେ ମଳୟ ପବନ
ସ୍ବର୍ଗଗଙ୍ଗା ଜଳ ବିନ୍ଦୁ କରନ୍ତି ସିଞ୍ଚନ ।
ଦିବ୍ୟ ମାଲ୍ୟ ଧୂପାଦିର ସୁଗନ୍ଧ ମହକେ
ଧରଣୀ ଝଲମି ଉଠେ ଜୟ ଜୟ ଡାକେ ।
ବିମାନେ ବସି ଆସିଲେ ସର୍ବ ଦେବଗଣ
ମଧୁର ମଧୁର ଶୁଭେ କିଙ୍କିଣୀ ନିସ୍ବନ ।
ମହା ତେଜ ପ୍ରକାଶିଲା ଗଗନ ମଣ୍ଡଳ
ଦେଖୁ ଦେଖୁ ଦୀପ୍ତିମୟ ହେଲା ଧରାତଳ ।
ନୟନ ମୁଦିଲେ ସର୍ବ ଅବନୀର ଜନେ
ସେ ତେଜକୁ ଚାହିଁ ନ ହୁଅଇ ଦରଶନେ ।

ଏକାଳରେ ଛନ୍ତି ସର୍ବେ ଊର୍ଦ୍ଧ୍ୱମୁଖ କରି
ପ୍ରଜାପତି ଆସିବା ଦେଖନ୍ତି ନେତ୍ର ଭରି ।
ପରମ ଆନନ୍ଦେ ସର୍ବେ ଦର୍ଶନ କରନ୍ତି
ଅପୂର୍ବ ବିମାନପରେ ବ୍ରହ୍ମା ବସିଛନ୍ତି ।
ସ୍ୱର୍ଣ୍ଣବର୍ଣ୍ଣ ହଂସମାନେ ବହନ୍ତି ସେ ରଥ
ଦେବଗଣ ଚାମର ଢାଳନ୍ତି ଅବିରତ ।
ଜାହ୍ନବୀ ଯମୁନା ଜଳେ ବ୍ୟାପ୍ତ କଳେବର
ଦୁଇପାଶେ ଚନ୍ଦ୍ର ସୂର୍ଯ୍ୟ ଦଣ୍ଡ ଛତ୍ରଧର ।
ମନ୍ଦପବନେ ଚଳଇ ଛତ୍ରର ବସନ
ଗୌତମାଦି ବ୍ରହ୍ମଋଷି କରନ୍ତି ସ୍ତବନ ।
ରଥମଧ୍ୟେ ପ୍ରଜାପତି ବସି ହରଷିତେ
ଦେଖି ରାଜା ଇନ୍ଦ୍ରଦ୍ୟୁମ୍ନ ଦେବଗଣ ସାଥେ ।
ଜୟ ଜୟ ଶବଦରେ କରନ୍ତି ବନ୍ଦନ
ବାରମ୍ବାର ନରପତି କରଇ ପ୍ରଣାମ ।
ଅପ୍‌ସରାମାନେ ନାଚନ୍ତି ବ୍ରହ୍ମାଙ୍କ ସମ୍ମୁଁରେ
ହାହା ହୁହୁ ଗନ୍ଧର୍ବାଦି ଗାଆନ୍ତି ସୁସ୍ୱରେ ।
ସିଦ୍ଧ ବିଦ୍ୟାଧରମାନେ ବୀଣାବେଣୁ କରେ
ଗାଆନ୍ତି ବ୍ରହ୍ମାଙ୍କ ଗୁଣ ଅତି ସୁମଧୁରେ ।
କରଯୋଡ଼ି ବ୍ରହ୍ମଋଷି ତପସ୍ୱୀଗଣ
ଭକ୍ତିଭାବେ ବିଧାତାଙ୍କୁ କରନ୍ତି ସ୍ତବନ
ସାବିତ୍ରୀ ଗାୟତ୍ରୀ ଚର୍ବବାକ୍ୟର ପ୍ରବନ୍ଧେ
ବ୍ରହ୍ମାଙ୍କୁ ତୋଷନ୍ତି ଦୁହେଁ ପରମ ଆନନ୍ଦେ ।
ଅନ୍ୟ କାର ସାଧଅଛି ବ୍ରହ୍ମାଙ୍କୁ ତୋଷଣେ
ଏହିରୂପେ ପ୍ରଜାପତି ଅଇଲେ ବିମାନେ ।
ନାରଦଙ୍କ ସାଥେ ସିଦ୍ଧ ବିଦ୍ୟାଧରଗଣ
ପଥ ଦେଖାଇ ଆଗରେ କରନ୍ତି ଗମନ ।
ସୃଷ୍ଟିକରତା ଆପଣେ ପ୍ରଭୁ ପଦ୍ମଯୋନି
ଏମନ୍ତ ସମାରୋହରେ ଅଇଲେ ଅବନୀ ।
ଦେଖି ଇନ୍ଦ୍ରଦ୍ୟୁମ୍ନ ଆଉ ଯେତେ ଭକ୍ତଗଣ
ସମ୍ଭ୍ରମେ ଭୂମିରେ ପଡ଼ି ବନ୍ଦିଲେ ଚରଣ ।
ସେକାଳର ଶୋଭା ଯାହା କେ ବର୍ଣ୍ଣି ପାରିବ
ଆନନ୍ଦସିନ୍ଧୁରେ ମଗ୍ନ ଭକ୍ତଗଣ ସର୍ବ ।
ସେହି ଶ୍ରୀହରି ଭକ୍ତଙ୍କ ପଦରଜେ ଆଶ
ଭାଷା ପ୍ରବନ୍ଧେ ଭଣଇ ବଇଷ୍ଣବ ଦାସ ।

—:*:—

## ବ୍ରହ୍ମାଙ୍କର ନୀଳାଦ୍ରି ଅବତରଣ

### ଜୈମିନି ଉବାଚ

ଏଣୁଅନ୍ତେ କହନ୍ତି ଜୈମିନି ତପୋଧନ
ସାବଧାନେ ଶୁଣ ଆହେ ସର୍ବ ମୁନିଗଣ ।
ଦେଖୁ ଦେଖୁ ନାନାରତ୍ନ ସୁବର୍ଣ୍ଣ ସେକ୍ଷଣ
ଶ୍ରୀନୀଳାଚଳକୁ ବୋଲି ପଡ଼ିଲା ସୋପାନ ।
ପ୍ରଜାପତିଙ୍କ ବିମାନଠାରୁ ତଳଯାଏଁ
ବିଚିତ୍ର ମଣି ପାବଚ୍ଛ ଅତି ଶୋଭାପାଏ ।
ବାମ ଦକ୍ଷିଣ ଦିଗ ଯେ ଆଉ ପରସର
ସୋପାନ ପୃଷ୍ଠ ଦିଶଇ ମହା ଚମତ୍କାର ।
ବିମାନରୁ ଚଉମାଥ ଓହ୍ଲାଇବା ପାଇଁ
ଅବଲମ୍ବେ ବିଶ୍ୱକର୍ମା ଦେଲି ନିରମାଇଁ ।
ତଦନ୍ତେ କମଳାସନ ଆନନ୍ଦ ମାନସେ
ବିମାନରୁ ଉତୁରିଲେ ସେ ପାବଚ୍ଛ ଦେଶେ ।
ଆଗରେ ଗନ୍ଧର୍ବ ରାଜ ହରଷ ମନରେ
ପଥ କଢାଏ ରତନ ବେତ୍ରଧରି କରେ ।
ପ୍ରତି ପାବଚ୍ଛରେ ପାଦଦେଇ କୁତୂହଳେ
ଅବତରନ୍ତି ଆନନ୍ଦେ ଦେବଗଣ ମେଳେ ।
ଦୁର୍ବାସା ନାରଦମୁନି ଛନ୍ତି ବେନିପାଶେ
ବ୍ରହ୍ମାଙ୍କ ହସ୍ତକୁ ଧରି ଓହ୍ଲାନ୍ତି ହରଷେ ।
କଟାକ୍ଷେ ଯେ ଦିଗେ ବ୍ରହ୍ମା ଦିଅନ୍ତି ଅନାଇଁ
ସେଦିଗେ କୁସୁମ ବୃଷ୍ଟି ତାର ସୀମା ନାହିଁ ।
କ୍ରମେ କ୍ରମେ ପହଞ୍ଚିଲେ ଦେଉଳ କତିରେ
ଦେଖି ମନେ ମନେ ଧାତା କେତେ ପ୍ରଶଂସିତେ
ଜିଣି ସେ ଦେଉଳ ଇନ୍ଦ୍ରଧନୁର କିରଣ
ଜକ ଜକ ଝଲମଲ କାନ୍ତି ମନୋରମ ।
ଗୃହମାନ ତହିଁ ଚଉପାଶେ ଧାଡ଼ି ଧାଡ଼ି
ବହୁଶ୍ରମେ ବିଶ୍ୱକର୍ମା ଅଛି ଯେ ନିବାଡ଼ି ।
ରତ୍ନମୟ ସ୍ତମ୍ଭମାନ ଅପୂର୍ବ ସୁନ୍ଦର
ଉଚ୍ଚ ଅଟ୍ଟାଳି ମଣ୍ଡପ ଜଗତି ଅପାର ।
ସକଳ ସମ୍ଭାରେ. ପୂର୍ଣ୍ଣ ପ୍ରତି ଗୃହମାନ
ଦେଖି ପରମ ସନ୍ତୋଷ ଚତୁର ଆନନ
ଆନନ୍ଦ ସାଗର ମାରେ ମଜ୍ଜି ଗଲେ ବିଧି
ଦରିଦ୍ରଜନ ଯେସନେ ଲଭେ କୋଟିନିଧି ।
ଇନ୍ଦ୍ରଦ୍ୟୁମ୍ନଙ୍କୁ ବହୁତ ପ୍ରଶଂସି ଲାଗିଲେ
ଦେଉଳକୁ ଚାହିଁ ଚମତ୍କାର ଯେ ମଣିଲେ ।

ଏହିରୂପେ ପ୍ରଜାପତି କଲେ ଆଗମନ
ଏଥିଅନ୍ତେ ସମାଚାର ମୁନିମାନେ ଶୁଣ ।
ଦେବ ବ୍ରହ୍ମଋଷି ଆଉ ଯେତେ ରାଜାମାନେ
କରପୁଟ ଅଞ୍ଜଳି ରଖି ବନ୍ଦିଲେ ଚରଣେ ।
ଯେଉଁ ନଗରକୁ ବିଧାତା ଭାଳନ୍ତି ନୟନ
ସେ ନଗରେ ସ୍ତୁତି କରନ୍ତି କୋଟି କୋଟି ଜନ
ଇନ୍ଦ୍ରଦ୍ୟୁମ୍ନ ପଡ଼ିଲେ ବ୍ରହ୍ମାଙ୍କ ପାଦତଳେ
ସେ ପଦ ଧୋଇଲେ ରାଜା ନିଜନେତ୍ର ଜଳେ
ଚରଣେ ନମି ରାଜନ ବ୍ରହ୍ମାଙ୍କୁ ନିରେଖି
ବିନୟ ବଚନେ କହେ ହୋଇ ମହାସୁଖୀ ।
ଅଙ୍ଗୁଳି ନିର୍ଦ୍ଦେଶ କରି ତହୁଁ ପ୍ରଜାପତି
ମଧୁରେ କୋମଳ ବାଣୀ ରାଜାଙ୍କୁ କହନ୍ତି ।
ଅଭୟ ହସ୍ତକୁ ରାଜା ମସ୍ତକରେ ଦେଇ
ପରମ ସନ୍ତୋଷେ ବୋଇଲେ ସେ ବେଦସାଇଁ
ହେ ରାଜନ ପରମ-ଭକତ ହରିଙ୍କର
ତୁମ୍ଭଭାଗ୍ୟ କେବା କହିପାରେ କି ପ୍ରକାର ।
ଯହିଁରେ କି ବଶ କଲ ସପ୍ତ ଲୋକଗଣେ
ସକଳେ ଏକବେ ଦେଖ ତୁମ୍ଭର କାରଣେ ।
ଚନ୍ଦ୍ର ସୂର୍ଯ୍ୟ ଅନଳ ବରୁଣ ବୃହସ୍ପତି
କୁବେର ପବନ ଇନ୍ଦ୍ର ଗ୍ରହ ଯୋଗତିଥି ।
ବ୍ରହ୍ମଋଷି ସିଦ୍ଧ ଯକ୍ଷ ଗନ୍ଧର୍ବ କିନ୍ନର
ଦେଖ ଅପ୍ସର ମଣ୍ଡଳ ତୁଲେ ବିଦ୍ୟାଧର ।
ସର୍ବେ ସର୍ବଶୁଭେ ଆସି ହୋଇଛନ୍ତି ଜୁଣ୍ଡ
ଧନ୍ୟ ଧନ୍ୟ ତୁମ୍ଭ କୀର୍ତ୍ତି ଭରିଲା ବ୍ରହ୍ମାଣ୍ଡ ।
ଇନ୍ଦ୍ରଦ୍ୟୁମ୍ନଙ୍କୁ ଏମନ୍ତେ କହି ପ୍ରଜାପତି
ଜଗନ୍ନାଥ ରଥ ଆଗେ ଶୀଘ୍ର କଲେ ଗତି ।
ସାଷ୍ଟାଙ୍ଗେ ଭୂମିରେ ପଡ଼ି କଲେ ନମସ୍କାର
ଉଠିରଥ ପ୍ରଦକ୍ଷିଣ କଲେ ଚାରିଥର ।
ଆନନ୍ଦ ସାଗରେ ବୁଡ଼ି ଦେହ ରୋମାଞ୍ଚିତେ
ଗଦଗଦ ସ୍ୱରେ ସ୍ତବ ଆରମ୍ଭିଲେ କେତେ ।
ଜୟ ଜୟ ଜଗନ୍ନାଥ କରୁଣା ସାଗର
ଜୟ ଜୟ ଆଦିମୂଳ ପ୍ରଭୁ ଦାମୋଦର ।
ଏମନ୍ତେ ଚାରିମୂର୍ତ୍ତିଙ୍କି କ୍ରମେ ସ୍ତୁତିକରି
ପ୍ରଣାମ ଅନ୍ତେ ଉଠିଲେ ନୀଳାଦ୍ରି ଉପରି ।
ଦେଉଳ ଦେଖିଣ ବ୍ରହ୍ମା ପ୍ରଶଂସି ରାଜାକୁ
ଯଥାଯୋଗ୍ୟ ସ୍ଥାନେ ବସାଇଲେ ସମସ୍ତଙ୍କୁ ।

ତ୍ରିଲୋକବାସୀମାନଙ୍କୁ ବସାଇ ଆସନେ
ଆପଣେ ବସିଲେ ମଧ୍ୟେ ହରଷିତ ମନେ ।
ଶାନ୍ତିପୁଷ୍ଟି ହେତୁ ଭରଦ୍ୱାଜ ମୁନିବରେ
ବ୍ରହ୍ମାଙ୍କ ଆଦେଶେ ରାଜା ବରିଲେ ସାଦରେ ।
ପ୍ରତିଷ୍ଠା ବିଧିରେ ପୂଜ୍ୟ ଯେଉଁ ଦେବଗଣେ
ସ୍ୱୟଂରୂପେ ସର୍ବେ ପୂଜା ଘେନିଲେ ସେ ସ୍ଥାନେ
ତହୁଁ ମହାଧୀର ଭରଦ୍ୱାଜ ମୁନିବର
କର୍ମ ଆରମ୍ଭିଲେ ଆଦ୍ୟ ମଙ୍ଗଳ ରୂପର ।
ତଦନ୍ତେ ନୃପତି ଇନ୍ଦ୍ରଦ୍ୟୁମ୍ନ ହରଷରେ
ବ୍ରହ୍ମାଆଦି ଦେବଙ୍କୁ ପୂଜିଲେ ଭକ୍ତିଭରେ ।
ପ୍ରଥମରେ ସାଙ୍ଗୋପାଙ୍ଗେ ପୂଜି ପ୍ରଜାପତି
ତ୍ରୈଲୋକ୍ୟବାସୀଙ୍କି ପୂଜାକଲେ ମହାମତି ।
ମଧ୍ୟେ ବ୍ରହ୍ମା ଚୌଦିଗେ ତ୍ରୈଲୋକ୍ୟବାସୀମାନେ
ପୂଜା ଘେନିଲେ ସକଳେ ଆନନ୍ଦିତ ମନେ ।
ଦେହଧାରୀ ବ୍ରହ୍ମରୂପ ପ୍ରଭୁ ଜଗତ୍ପତି
ସାକ୍ଷାତ ଦେଖି ସକଳେ ଲଭିଲେ ସୁଗତି ।
ଶ୍ରୀହରି ଦେହ ସ୍ୱରୂପ ଶୋଭା ଶ୍ରୀମନ୍ଦିର
ପ୍ରତିଷ୍ଠା କରିଣ ଭରଦ୍ୱାଜ ମୁନିବର ।
ବ୍ରହ୍ମାଙ୍କୁ ବୋଇଲେ କର ହରିଙ୍କି ସ୍ଥାପନ
ଏତେକହି ଉଠିଲେ ସେ ମହାତପୋଧନ ।
ତହୁଁ ପ୍ରଜାପତି ସର୍ବମଙ୍ଗଳ ଭିଆଇ
ରଥ ନିକଟେ ଚଳିଲେ ହରଷିତ ହୋଇ ।
ସଙ୍ଗରେ ନାରଦ ଆଦି ବ୍ରହ୍ମଋଷିଗଣେ
ବିଦ୍ୟାବନ୍ତ ବିପ୍ର ରାଜା ନର ନାଗମାନେ ।
ମଙ୍ଗଳ ଉଚିତ ରାଗ ମଧୁର ସ୍ୱରରେ
ଗାଆନ୍ତି ଗନ୍ଧର୍ବେ ଗୀତ ଅତି ମନୋହରେ ।
ଅପ୍ସର କିନ୍ନରମାନେ ନାଚନ୍ତି ହରଷେ
ବିପ୍ରମାନେ ବେଦଗାନ କରନ୍ତି ବିଶେଷେ ।
ମୁରଜ କାହାଳୀ ଶଙ୍ଖ ଭେରୀ ବୀଣାତାନ
ରାଗତାଳେ ମିଶି ବାଜେ ସୁମଧୁର ସ୍ୱନ ।
ବ୍ରହ୍ମାଙ୍କ ସହିତେ ଯେତେ ଦେବତା ମଣ୍ଡଳ
ରଥ ଉପରେ ଉଠିଲେ ହୋଇ କୁତୁହଳୀ ।
ରଥୁଁ ଦାରୁବ୍ରହ୍ମଙ୍କୁ ଓହ୍ଲାଇ ଯତନେ
ଚାରି ସୋପାନେ ପହଣ୍ଡି କଲେ ସାବଧାନେ ।
ପାର୍ଶ୍ୱଭୁଜ ଶିର ପଦଧରି ପ୍ରଭୁଙ୍କର
ଧଳକଳା ବେଢ଼ି ବସାଇ ତୁଳିକା ଉପର ।

ଧୀରେ ଧୀରେ ନେଲେ ଶ୍ରୀମନ୍ଦିର ସନ୍ନିଧାନେ
କଳ୍ପତରୁ କୁସୁମ ବୃଷ୍ଟି ହେ ଘନ ଘନେ ।
ଚନ୍ଦ୍ର ସୂର୍ଯ୍ୟ ରତ୍ନଛତ୍ର ଟେକନ୍ତି ଶିରେ
ବ୍ରହ୍ମା ସ୍ତବଗାଉଛନ୍ତି ରହି ଶ୍ରୀସମ୍ମୁଖରେ ।
ଜୟ ପ୍ରଭୁ ଜଗନ୍ନାଥ ସର୍ବପାପହାରୀ
ଜୟ ବାଞ୍ଛା ଫଳଦାତା ଦାରୁଦେହଧାରୀ ।
ସଂସାରେ ନିମଗ୍ନ ଜନେ ତାର ସ୍ୱଲୀଳାରେ
ହେ କୃପାନିଧାନ ବନ୍ଦେ ତବ ଶ୍ରୀପଦ୍ମରେ ।
ହେ ଦୁଃଖୀ ଦରିଦ୍ରଙ୍କର ପରମ ଆଶ୍ରୟ
ଅଚ୍ୟୁତ ଅନନ୍ତ ଜୟ ପୁରୁଷ ଅବ୍ୟୟ ।
ବୀଣା ଯନ୍ତ୍ରେ ସୁସ୍ୱରେ ନାରଦ ମୁନିବର
ପ୍ରଭୁଙ୍କର ଗୁଣ ଗାଉଛନ୍ତି ମନୋହର ।
ଧୂପଦୀପମାନ ଧରି ଦେବତା ମଣ୍ଡଳୀ
ଧୂପିତ କରନ୍ତି ସର୍ବେ ହୋଇ କୁତୁହଳୀ ।
ଦୁଇ ପାରୁଶେ ଅମରେ ଚାମର ଢୁଳନ୍ତି
କେହି କେହି ଛତ୍ର ଆଡ଼ାଣୀକି ଧରିଛନ୍ତି ।
ଏହିରୂପେ ମହାସମାରୋହେ ସର୍ବେ ମିଳି
ପହଣ୍ଡି ବିଜେ କରାନ୍ତି ହରି ହରି ବୋଲି ।
ବଡ଼ଠାକୁର ଯେ ବଳଭଦ୍ରଙ୍କୁ ଆଗରେ
ବିଜୟେ କରାନ୍ତି ନାଗ ନର ଯେ ଅମରେ ।
ସୁଭଦ୍ରା ସୁଦର୍ଶନଙ୍କୁ ତେସନେ ନିଅନ୍ତି
ପଛରେ କଳାଶ୍ରୀମୁଖ ବିଜେ କରୁଛନ୍ତି ।
ଗହ ଗହ ହରିଧ୍ୱନି କମ୍ପେ ତ୍ରିଭୁବନ
ବଡ଼ ଦେଉଳକୁ ବିଜେ ଜଗତ ମୋହନ ।
ଘନ ଘନ ପୁଷ୍ପ ବୃଷ୍ଟି ହୁଏ ସେହିକାଳେ
ମହା ମହୋତ୍ସବ ଲାଗି ଅଛି ନୀଳାଚଳେ ।
ତିନି ଭୁବନର ପ୍ରାଣୀ ହୋଇଛନ୍ତି ମେଳ
ହରିଧ୍ୱନି ସଙ୍ଗେ ଦେଉଛନ୍ତି କରତାଳ ।
ଭାଇ ଭଉଣୀଙ୍କ ସଙ୍ଗେ ଜଗତ ନାୟକ
ସର୍ବ ଶୁଭେ ଆପଣେ ଯେ ହେବେ ଅଭିଷେକ ।
ଭକ୍ତବତ୍ସଳ ପ୍ରଭୁ ଶ୍ୱେତ ପଦ୍ମଡ଼ୋଳା
ଭକ୍ତମାନଙ୍କ ଭାବରେ ହୋଇଛନ୍ତି ଭୋଳା ।
ସେ ଦେବ ମହିମା ତାଙ୍କ ପଢ଼େ ବାରମ୍ବାର
ଦେଉଳ ଦୁଆରେ ବିଜେ ବ୍ରହ୍ମାଣ୍ଡ ଠାକୁର ।
ବାଦ୍ୟନାଦେ ଉଲ୍ଲସଇ ଅବନୀ ମଣ୍ଡଳ
ମାନବ ରୂପେ ଅମରେ ଗହଳ ଚହଳ ।
ଧନ୍ୟ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କ କୀରତି
ଏମନ୍ତେ ଦେବତାମାନେ ପ୍ରଶଂସା କରନ୍ତି ।
ଶ୍ରୀଜଗନ୍ନାଥଙ୍କ ପାଦପଦ୍ମେ କରି ଆଶ
ପୁରାଣ ପ୍ରବନ୍ଧେ ଭଣେ ବଇଷ୍ଣବ ଦାସ ।

—:*:—

## ଦେଉଳ ପ୍ରତିଷ୍ଠା ବିଧାନ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସାଧୁ ମୁନିଗଣ
ପ୍ରତିଷ୍ଠା ବିଧାନ କଥା ସୁଧା ରସାୟନ ।
ଦେଉଳ ଦୁଆରେ ରତ୍ନ ମଣ୍ଡପ ସୁନ୍ଦର
ପଦ୍ମରାଗ ମଣିରେ ଯେ ସ୍ତମ୍ଭ ମନୋହର ।
ଅଭିଷେକ ହେତୁ ବସାଇଲେ ଦେବଗଣେ
ହେମ ଦର୍ପଣ ସମ୍ମୁଖେ ଧଇଲେ ଯତନେ ।
ପୂର୍ଣ୍ଣ ରତ୍ନ କୁମ୍ଭ ପଲ୍ଲବାଢ଼୍ୟ ତୀର୍ଥ ଜଳେ ।
ନିଜେ ବ୍ରହ୍ମା ଅଭିଷେକ କଲେ କୁତୁହଳେ ।
ଲକ୍ଷ୍ମୀ ସୂକ୍ତେ ବିଷ୍ଣୁ ସୂକ୍ତେ ସେହି ଅଭିଷେକେ
ଅଭିଷେକ କାର୍ଯ୍ୟ ଶିଖାଇଲେ ସର୍ବଲୋକେ ।
ଗନ୍ଧ ମାଲ୍ୟେ ଅପୂର୍ବ ଶୋଭନ୍ତି ଦେବଗଣେ
ଆରତି କଲେ ଯେ ବ୍ରହ୍ମା ଉଚିତ ବିଧାନେ ।
ରତ୍ନ ସିଂହାସନେ ବସାଇଲେ ପଞ୍ଚ ପର
ପ୍ରାର୍ଥନା କରନ୍ତି ବ୍ରହ୍ମା ଯୋଡ଼ି ବେନିକର ।

### ବ୍ରହ୍ମୋବାଚ

**ଅଶେଷ ଜଗଦାଧାର ସର୍ବଲୋକ ପ୍ରତିଷ୍ଠିତ ।**
**ସୁ ପ୍ରତିଷ୍ଠାଖିଳ ବ୍ୟାପିନ୍ ପ୍ରାସାଦେ ସୁସ୍ଥିରୋ ଭବ ॥**
**ତ୍ୱୟି ପ୍ରତିଷ୍ଠିତେ ନାଥ ବିଶ୍ୱଂ ସର୍ବେ ପ୍ରତିଷ୍ଠିତାଃ ।**
**ତବାଜ୍ଞୟାତ୍ତ୍ରୈଲୋକ୍ୟଂ ପୂର୍ଣ୍ଣା ଚ ତବ ପ୍ରସାଦତଃ ॥**

ତୁମ୍ଭେ ପ୍ରଭୁ ଅଟ ସର୍ବଜଗତ ଆଧାର
ତୁମ୍ଭଠାରୁ ଲୋକସବୁ ହୋଇଲେ ସୁସ୍ଥିର ।
ନିର୍ମଳ ତୁମ୍ଭର ଗୁଣ ତୁମ୍ଭେ ସର୍ବାଶ୍ରୟ
ଦେଉଳେ ସୁସ୍ଥିର ହୋଇ ରହ ଦୟାମୟ ।
ଆମ୍ଭେ ସର୍ବେ ସ୍ଥିର ହେବୁଁ ତୁମ୍ଭର ସୁସ୍ଥିରେ
ଏଣୁ ସ୍ଥିରେ ବିଜେକର ଏହି ଶ୍ରୀମନ୍ଦିରେ ।
ଏହି ପ୍ରତିଷ୍ଠା ହେ ନାଥ ତବ ଆଦେଶନେ
ତୁମ୍ଭର ପ୍ରସାଦେ ପୂର୍ଣ୍ଣ ହେଲା ଶୁଭକ୍ଷଣେ ।

ଏହିରୂପେ ସ୍ଥାପନ କରିଣ ଜଗନ୍ନାଥେ
ତାହାଙ୍କ ହୃଦୟ ଛୁଇଁ ସାବଧାନ ମତେ ।
ମନ୍ତ୍ରବୀଜ ସହସ୍ର ଜପିଲେ ପଦ୍ମାସନ
ପ୍ରେମେ ପୂର୍ଣ୍ଣ କଳେବର ସଜଳ ନୟନ ।
ବୈଶାଖର ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ
ପୁଷ୍ୟା ନାମେ ନକ୍ଷତ୍ର ସଂଯୋଗ ହେଲା ତାରେ ।
ତହିଁ ପୁଣି ଗୁରୁବାର ସୁନ୍ଦର ଶୋଭନ
ସେହି ଦିନ ପ୍ରତିଷ୍ଠା ହୋଇଲେ ନାରାୟଣ ।
ମହାପୁଣ୍ୟ ସେ ଦିବସ ସର୍ବ ପାପହାରୀ
ସ୍ନାନ ଦାନ ତପହୋମ ଅକ୍ଷୟ ଆଚରି ।
ସେ ଦିନ ସେ ରାମକୃଷ୍ଣ ଭଦ୍ରା ସୁଦର୍ଶନେ
ଭକ୍ତିଭାବେ ଦର୍ଶନ କରନ୍ତି ଯେଉଁ ଜନେ ।
ସର୍ବ ପାପରୁ ସେହି ହୋଇଣ ଉଦ୍ଧାର
ମୁକ୍ତିଭାଗୀ ହୋନ୍ତି ଅନ୍ୟ ନାହିଁଟି ବିଚାର ।
ବୈଶାଖ ମାସରେ ଶୁକ୍ଳ ଅଷ୍ଟମୀର ଦିନେ
ଗୁରୁ ପୁଷ୍ୟା ଯୋଗ ତହିଁ ହୁଅନ୍ତ ଯେ କ୍ଷଣେ ।
ସେହିଦିନ କରେ ଯେବା ଶ୍ରୀହରି ଅର୍ଚ୍ଚନ
କୋଟି ଜନ୍ମ ପାପ ତାର ହୁଏ ବିଧ୍ୱଂସନ ।
ସକଳ ବନ୍ଧନରୁ ସେ ମୁକ୍ତ ହୋଇଯାଏ
ଅନ୍ତେ ବୈକୁଣ୍ଠକୁ ଚଳେ ଆନନ୍ଦ ହୃଦୟେ ।

ଏହିକଥା ଶ୍ରବଣେ ଅଶେଷ ତାପ ହରେ
ସର୍ବ କାମନା ପୂରଇ ସ୍ମରଣ ଯେ କରେ ।
ଭକ୍ତିଭାବେ ଶୁଣି ଜନେ ହରି ଗୁଣ ଗାଥା
କେବେ ନ ପାଇବ ଭବ ଯନ୍ତ୍ରଣାରେ ବ୍ୟଥା ।
ବାତୁଳାର ବାକ୍ୟ ବୋଲି ନକର ହେଳନ
ନିଜଗୁଣ ଔଷଧ ନ ତେଜେ କଦାଚନ ।
ଶ୍ରୀମହାପ୍ରସାଦ ଯଦି କାକ ମୁଖୁଁ ପଡ଼େ
ସେ ଉଚ୍ଛିଷ୍ଟ ପ୍ରାଣୀଙ୍କି ତାରିବା ଶକ୍ତି ଲୋଡ଼େ ।
ତେସନେ ଯଦିବା ମୁହିଁ କରିଛୁ ବର୍ଣ୍ଣନ
ନିଜର କଳ୍ପିତ ନୁହେ ଋଷିଙ୍କ ବଚନ ।
ହରି କଥା ଗୁଣ ନ ତେଜଇ କଦାଚନ
ସାଧୁଙ୍କ ମୁଖ ବାକ୍ୟ ଏ ଅମୃତ ନନ୍ଦନ ।
ଏଣୁ ସୁ-ଶ୍ରବଣ କର ରଖିଣ ବିଶ୍ୱାସ
ଯା କହୁ ବର୍ଣ୍ଣିଲ ବ୍ୟାସମୁନିଙ୍କ ଆଭାଷ ।
ଉତ୍କଳ ଖଣ୍ଡ ସଂସ୍କୃତ ଗ୍ରନ୍ଥ ସାରୋଦ୍ଧାରେ
ଶ୍ରୀଜଗଦୀଶ ପୁରାଣ ବୋଲି ନାମ ଧରେ ।
ଶ୍ରୀକ୍ଷେତ୍ର ଖଣ୍ଡ ଯେ ଏହି ସୁଧାମୟ ରସ
ସମ୍ପୂର୍ଣ୍ଣ ହେଲା ଏଠାରେ ଜାଣ ହେ ବିଦୁଷ ।
ଏ ଅନ୍ତେ ମହିମା ଖଣ୍ଡ କରିବି ପ୍ରକାଶ
କୃତାଞ୍ଜଳି ଭାବେ ଭଣେ ବଇଷ୍ଣବ ଦାସ ।

( ଇତି ଶ୍ରୀକ୍ଷେତ୍ର ଖଣ୍ଡ ସମ୍ପୂର୍ଣ୍ଣ )

# ଜଗନ୍ନାଥ ପୁରାଣ

## ❋ ମହିମା ଖଣ୍ଡ ❋

### ବନ୍ଦନା

ଜୟ ଶ୍ରୀପୁରୁଷୋତ୍ତମ ପ୍ରଭୁ ଜଗନ୍ନାଥ
ଦାରୁବ୍ରହ୍ମ ରୂପେ ବିଜେ ରାମ ଭଦ୍ରାସାଥ ।
ସର୍ବଦା ନୀଳକନ୍ଦରେ ହେ ରମାବିଳାସ
ନିତ୍ୟ ଲୀଳା ଖେଳାମାନ କରୁଛ ପ୍ରକାଶ ।
ମସ୍ତକେ ମୁକୁତା ଝରା ଟାହିଆ ଯେ ଶୋଭା
ଚୂଳେ ରତ୍ନ ଝୁମ୍ପା ଅତି ଚମତ୍କାର ଶୋଭା ।
ରତ୍ନ ଜଡ଼ିତ କର୍ଣ୍ଣଟ କାନ୍ତି ଝଲ ମଲ
ମୋତି ଅଳକାପନ୍ତିରେ ଲଲାଟ ମଞ୍ଜୁଳ ।
ନୀଳ କପୋଳେ ରସାଣ ସୁନାଚିତା ଶୋହେ
କଳା ମେଘରେ ବିଜୁଳି ଖେଳିଲି ପରାୟେ ।
ମଝରେ କସ୍ତୁରୀ ମଣି ଆଭା କି ସୁନ୍ଦର
ଶ୍ୱେତପଦ୍ମ ନେତ୍ରେ କଳାଡୋଳା ମନୋହର ।
ସୁସଜ୍ଜ ନାସା ପୃଷ୍ଠରେ ମୁକୁତା ବସଣୀ
ଶ୍ରୀରଙ୍ଗ ଅଧର ଜବା ମାଣିକ୍ୟକୁ ଜିଣି ।
ସେ ଦରହାସ ଅଧର ଉପମା ଏସନ
କଳା ମେଘେ ଲୁଚିଅଛି କି ବାଳଅରୁଣ ।
କରୁଣା କଟାକ୍ଷ ଛଟା ସେ ପଦ୍ମଲୋଚନେ
ଆସ ଆସ ବୋଲି ଡାକୁଅଛି ଭକ୍ତଜନେ ।
ସେ କଳା ବଦନଟି ଏମନ୍ତ ଶୋଭାଦିଶେ
କୋଟିଚନ୍ଦ୍ର ସୂର୍ଯ୍ୟ ଲକ୍ଷ୍ୟ ନ ହୋଇବେ ଲେଶେ ।
ମକର କୁଣ୍ଡଳ ନାନା ରତନେ ଜଡ଼ାଉ
ବେନି ଶ୍ରୁତିମୂଳେ ବିରାଜଇ ଦାଉ ଦାଉ ।
ହୃଦୟେ ମୁକୁତା ମାଳା ଝଟକଇ କାନ୍ତି
କାଳିନ୍ଦୀ ଗର୍ଭରେ କି ଖେଳନ୍ତି ହଂସପନ୍ତି ।
କି ଅବା ନୀଳ ଗଗନେ ତାରକା ମଣ୍ଡଳୀ
ପନ୍ତି ପନ୍ତି ହୋଇଛନ୍ତି ପ୍ରକାଶିତ ଝଳି ।
ଇନ୍ଦ୍ରନୀଳ କବାଟ କି ସେ ବିସ୍ତାର ବକ୍ଷ
ତହିଁ ଆଭରଣ ନାନା ରତନେ ପଦକ ।
ଏମନ୍ତ ଉପମା ତହିଁ ହୁଅଇ ଘଟଣ
ସନ୍ଧାକର ବସିଅଛନ୍ତି କି ଗ୍ରହଗଣ ।
ମୋତି କେଟକେଟ ବାହେ ରତ୍ନ ବାଜୁବନ୍ଧ
ରତ୍ନ କେୟୂର କଙ୍କଣ ବଳୟ ପସନ୍ଦ ।
କନକ ହୀରକ ଖଡ଼ୁ କରମୂଳେ ସାଜେ
ରତ୍ନ ମୁଦ୍ରିକା ଅଙ୍ଗୁଳିମାନଙ୍କେ ବିରାଜେ ।
ଶଙ୍ଖଚକ୍ର ଗଦା ପଦ୍ମ ଶୋହେ ଭୁଜଚାର
ପତିତଙ୍କ ପାଇଁ ଅଛ ସେ ବାହୁ ବିସ୍ତାରି ।
ଅପାର କରୁଣା ଯାଚୁଅଛ ଦୟାନିଧି
ଶରଣ ପଞ୍ଜର ଆର୍ତ୍ତତ୍ରାଣ ପଦ ସିଦ୍ଧି ।
ନୂଆ ପୀତ ବାସ କୁମ୍ଭା କାନ୍ଥେଣି ଶୋଭଇ
ରତ୍ନ ଓଡ଼ିୟାଣୀ ଭକ୍ତମନ ନିଏ ମୋହି ।
ବୈକୁଣ୍ଠ ମୋହନମଣି ହେ କମଳାବର
ଅପୂର୍ବ ବେଶକୁ ଦେବ କିବା ପଟାନ୍ତର ।
ରତ୍ନ ଜଡ଼ିତ ନୂପୁର ବଳା ବେନିପାଦେ
ରତ୍ନସିଂହାସନ ପରେ ବିଜେ ଆନନ୍ଦେ ।
କୋଟି ମଦନ ମୋହନ ସୁଲାବଣ୍ୟ ଠାଣି
ହସହସ ମୁଖ ଭକ୍ତଙ୍କର ମନ ଜାଣି ।
ଏମନ୍ତ ରୂପକୁ ଯେ ଦର୍ଶନ କରୁଥିବ
ତାହା ମନ ଆଉ କେଉଁ ରୂପକୁ ରସିବ ।
ଶ୍ରୀପାଦପଦ୍ମେ ବନ୍ଦଇ ହେ କଳାଶ୍ରୀମୁଖ
ଅନୁଭବୁ ଥିବ ଏହି ଦରଶନ ସୁଖ ।
ଆନ କିହିଁରେ ମୋହର ନାହିଁ ଅଭିଳାଷ
ନୀଳାଞ୍ଚଳପୁରେ ଭକ୍ତ ବୈଷ୍ଣବ ଦାସ ।

—❋—

## ଜଗନ୍ନାଥଙ୍କର ନୃସିଂହ ମୂର୍ତ୍ତି ଧାରଣ

ଶୌନକ ଉବାଚ

ଏଥୁ ଅନନ୍ତରେ ସେ ଶୌନକ ମୁନିବର
ପୁଚ୍ଛା କଲେ ଜୈମିନିଙ୍କୁ କରି ସମାଦର ।
ହେ ମହାତ୍ମା ବ୍ୟାସଙ୍କର ଶିଷ୍ୟ ତପୋଧନ
ବୈଷ୍ଣବ କୁଳତିଳକ ଶିବଙ୍କ ସମାନ ।
ଦେଉଳ ପ୍ରତିଷ୍ଠା କଥା ବଖାଣିଲ ଯାହା
ଶୁଣି ଆନନ୍ଦ ଲଭିଲୁଁ ଆହେ ପୁଣ୍ୟ ଦେହା
ଏହାପରେ ସମାଚାର କି ହେଲା କେମନ୍ତ
ବିସ୍ତାରି କହିବା ହେଉ ବିଜ୍ଞ ତପୋବନ୍ତ ।
ଶୌନକ ମୁନିଙ୍କ ମୁଖୁଁ ଏ ବଚନ ଶୁଣି
ଆନନ୍ଦମନେ ବଖାଣି ବସିଲେ ଜୈମିନି ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିବର
ଅପାର କ୍ଷମତା ଅଟେ ଜଗନ୍ନାଥଙ୍କର ।
ଲୀଳା ବିଧୃତ ଶ୍ରୀଦାରୁବ୍ରହ୍ମ କଳେବର
ଦେବମାନବଙ୍କ ଯା ମହିମା ଅଗୋଚର ।
ଏମନ୍ତ ପ୍ରଭୁ କରୁଣା କଟାକ୍ଷ ପ୍ରକାଶେ
ଭକ୍ତ ଜନମାନଙ୍କର ଶିର ଦୁଃଖ ନାଶେ ।
ଭକ୍ତଭାବେ ଭୋଳ ହୋଇ ମହା ଆନନ୍ଦରେ
ଆପଣେ ବିଜୟ କଲେ ଶ୍ରୀନୀଳକନ୍ଦରେ ।
ଶୁଣ ସେହି ପ୍ରଭୁଙ୍କର ଚମତ୍କାର ବାଣୀ
ମନ୍ତ୍ର ବୀଜ ହୃଦୟେ ଜପନ୍ତେ କୁଶପାଣି ।
ନୃସିଂହ ମୂରତି ଧଇଲେ ଶ୍ରୀଜଗନ୍ନାଥ
ଭୟଙ୍କର ରୂପ ଦେଖି ଲାଗେ ଆଚମ୍ବିତ ।
ଲହ ଲହ ଜିହ୍ୱା ଦେଖି ମାଡ଼େ ମହାଭୟ
କାଳ ଅଗ୍ନି ରୁଦ୍ର ସତେ ହେଲେକି ଉଦୟ ।
ବହୁ ମୁଖ ନେତ୍ର କର ପଦ ବହୁ କର୍ଣ୍ଣ
ଦେଖି ତ୍ରାସେ ତ୍ରିଭୁବନ କମ୍ପେ ଘନ ଘନ ।
ବ୍ୟଗ୍ରହୋଇ ନାରଦ ପିତାଙ୍କୁ ପଚାରିଲେ
କିମ୍ପା ଜଗନ୍ନାଥ ଏହି ମୂର୍ତ୍ତିକି ଧଇଲେ ।
ବ୍ରହ୍ମା ବୋଇଲେ ଶ୍ରୀଦାରୁବ୍ରହ୍ମ ଭଗବାନେ
କାଷ୍ଠ ବୋଲି ଅବଜ୍ଞା କରିବେ ମୂଢ଼ମାନେ ।
ସେହି କାରଣେ ମୁଁ ଜପିଲଇଁ ମନ୍ତ୍ରବର
ଦାରୁବ୍ରହ୍ମ ରୂପ ହେଲେ ମୂର୍ତ୍ତି ନୃସିଂହର ।
ଏତେ ବୋଲି ବ୍ରହ୍ମା କରି ବନ୍ଦିତ ସ୍ତବନ
ନରସିଂହ ମନ୍ତ୍ର ଗୋଟି କଲେକ ଲିଖନ ।
ଇନ୍ଦ୍ରଦ୍ୟୁମ୍ନେ ପ୍ରବେଶ କରାଇ ତହିଁ ମାଝ
ଦୀକ୍ଷା କରାଇଲେ ଶ୍ରୀନୃସିଂହ ମନ୍ତ୍ରରାଜ ।
ବତିଶ ଅକ୍ଷର ମନ୍ତ୍ର ପ୍ରଣବ ସହିତ
ମନ୍ତ୍ର ପାଇ ମହାରାଜା ଦେଖନ୍ତି ତୁରିତେ ।
ଶାନ୍ତ ଦେହ ନରସିଂହ ବକ୍ଷରେ କମଳା
ଦୁଇକରେ ଶଙ୍ଖଚକ୍ର ହୃଦେ ବନମାଳା ।
କମଳ ବତିଶ ଦଳେ ଯୋଗ ପୀଠାସନେ
ବସିଛନ୍ତି ଅଟ୍ଟହାସେ ହରଷ ବଦନେ ।
ମନ୍ତ୍ରର ଅକ୍ଷର ମଧ୍ୟ ସେହି ପଦ୍ମଦଳ
ମନ୍ତ୍ରର ପ୍ରଣବ ମଧ୍ୟେ କର୍ଣ୍ଣିକା ଉଜ୍ଜ୍ୱଳ ।
କେ ତୃପ୍ତ ହେବ ନିରେଖି ଶ୍ରୀମୁଖମଣ୍ଡଳ
ଜଟାରେ ମଣ୍ଡିତ ମୁଖ ଅତ୍ୟନ୍ତ ମଞ୍ଜୁଳ ।
ରତନ ଭୂଷଣେ ବିଭୂଷିତ ସର୍ବ ଅଙ୍ଗେ
ତହିଁ ଅନନ୍ତ ମସ୍ତକେ ଛତ୍ରଧରେ ରଙ୍ଗେ ।
ସହସ୍ରେକ ଫଣାଛତ୍ର ଆକାର କରିଣ
ମହାନନ୍ଦେ ଛନ୍ତି ହଳ ମୂଷଳ ଧରିଣ ।
ଦେଖି ନରପତି କହେ ବ୍ରହ୍ମାଙ୍କ ଚରଣେ
ଜଗନ୍ନାଥଙ୍କ ଏରୂପ ଦେଖେ କି କାରଣେ ।
ପୂର୍ବେ ଶୁଣି ଦାରୁ ମୂର୍ତ୍ତି ଧଇଲେ ଶ୍ରୀହରି
ପ୍ରତିଷ୍ଠା ଠାରୁ କାହିଁକି ପ୍ରଭୁ ଅନ୍ୟପରି ।
ମାୟା କି ପ୍ରକୃତ ଏହା କହ ପ୍ରଜାପତି
ଯୋଗ୍ୟ ଯଦି ଜାଣ ମୋରେ ବୁଝାଅ ସମ୍ପ୍ରତି ।
ବ୍ରହ୍ମା ବୋଇଲେ ହେ ରାଜା ଶୁଣ ସାବଧାନେ
ଆଦ୍ୟ ମୂର୍ତ୍ତି ଶ୍ରୀନୃସିଂହ ଦେବ ନାରାୟଣେ ।
ପ୍ରକାଶିଲେ ସେ ମୂର୍ତ୍ତି ତୁମରେ ଦୟାକରି
ଏହି ଦାରୁବ୍ରହ୍ମ ଚାରି ବେଦ ମୂର୍ତ୍ତିଧାରୀ ।
ଋକବେଦ ବଳଭଦ୍ର, ସାମ ନାରାୟଣ
ଯଜୁର୍ବେଦ ସୁଭଦ୍ରା, ଅଥର୍ବ ସୁଦର୍ଶନେ ।
ଏଣୁ ମହାରାଜ ଶୁଣ କହୁଛି ଉପାୟେ
ମୋକ୍ଷଘରେ ଯିବ ସେବ ଏହି ଦାରୁ ପାୟେ ।
ଏହି ନୀଳାଚଳେ କରି ଏହାଙ୍କ ଅର୍ଚ୍ଚନ
ପାଇବ ପରମଗତି ଜାଣ ହେ ରାଜନ ।
ତୁମ୍ଭ ଇଷ୍ଟଦେବ ନରସିଂହ ମହାକାୟ
ଏହାଙ୍କୁ [illegible] ତୁମ୍ଭେ [illegible] ଅନ୍ୟ ଠାୟେ ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ମୁନି ଶୁଣ ମନଦେଇ
ଏହିରୂପେ ପଦ୍ମଯୋନି ଇନ୍ଦ୍ରଦ୍ୟୁମ୍ନ କହି ।
ଆପଣା ହୃଦୟେ ରଖି ନୃସିଂହ ଆକାର
ପ୍ରବପର ସୃଷ୍ଟି ରୂପ କଲେ ସେ ଈଶ୍ୱର ।
ଯେଉଁ ଚାରି ମୂର୍ତ୍ତିଙ୍କି ରଥରୁ ଆଣି ଥିଲେ
ସେହି ରୂପଙ୍କୁ ସମସ୍ତ ଦରଶନ କଲେ ।
ଦ୍ୱାଦଶ ଅକ୍ଷରେ ପୂଜାକଲେ ବଳରାମେ
ପୁରୁଷ ସୂକ୍ତେ ପୂଜିଲେ ଦେବ ନାରାୟଣେ ।
ଲକ୍ଷ୍ମୀ ମନ୍ତ୍ରେ ସୁଭଦ୍ରା ଦେବୀଙ୍କି ପୂଜା କଲେ
ଅଷ୍ଟାଦଶାକ୍ଷରେ ସୁଦର୍ଶନଙ୍କୁ ପୂଜିଲେ ।
ପଜାସାରି ଜଗନ୍ନାଥ କଲେ ନିବେଦନ
ଶୁଣିମା ହେଉ ମଣିମା ଜଗତ ଜୀବନ ।
ଜଣାଣ କରୁଛି ମୁହିଁ ଶ୍ରୀମୁଖଁରେ ଏବେ
ଦିବ୍ୟ ଶବ୍ଦେ ଆଜ୍ଞାହେଉ ରାଜନେ ସୁଲଭେ ।
ଦେବଦେବ ଜଗତନାଥ ପତିତପାବନ
ସହସ୍ର ଜନମ ଭକ୍ତି କରି ଏ ରାଜନ ।
ଶେଷେ ତବ ପାଦପଦ୍ମ କଲା ଦରଶନ
ତୁମ୍ଭ ଦର୍ଶନ ଅଟଇ ମୁକ୍ତିର କାରଣ ।
ଯଦ୍ୟପି ଭକତ ଯୋଗେ ସେବିଲା ତୁମ୍ଭରେ
ସେହି ଆଜ୍ଞାକର ଭକ୍ତି ଯୋଗେ ସେବିବାରେ ।
ଦେଶ କାଳ ବ୍ରତ ଆଦି ନାନା ଉପଚାର
କେମନ୍ତେ ସେବିବ କହି ବ୍ରହ୍ମାଣ୍ଡ ଠାକୁର ।
ତବ ମୁଖ କମଳ ଗଳିତ ଆଜ୍ଞାମୃତ
ସେହି ରସ ପାନେ ତୃଷ୍ଣା ଯୁକ୍ତ ଅବିରତ ।
ଏଣୁ ଆହେ ଜଗନ୍ନାଥ କରେ ନିବେଦନ
ସାକ୍ଷାତେ କରନ୍ତୁ ଆଜ୍ଞା ଶୁଣୁ ଏ ରାଜନ ।
ଏମନ୍ତେ ଶ୍ରୀହରି ଶୁଣି ବ୍ରହ୍ମାଙ୍କ ବଚନ
ଅତ୍ୟନ୍ତ ଆନନ୍ଦ ମନେ ହେଲେ ସୁ-ପ୍ରସନ୍ନ ।
ସେହି ଦାରୁ ଦେହେ ହସି ହସି ଲକ୍ଷ୍ମୀସାଇଁ
ଗମ୍ଭୀର ସ୍ୱରେ କହିଲେ ରାଜା ମୁଖଚାହିଁ ।
ଶୁଣ ମହାରାଜା ତୁମ୍ଭ ଭକତି କାରଣ
ତୁମ୍ଭଠାରେ ଭଲେ ମୁହିଁ ହୋଇଲି ପ୍ରସନ୍ନ ।
ତୁମ୍ଭବିନେ କା'ଶକ୍ତି ଏ ଧନ ଉପାର୍ଜନେ
ବରଦେଲା ଦୃଢ଼ଭକ୍ତି ଆଜି ମୋ ଚରଣେ ।
ମୋ ଦେଉଳ ହେତୁ କରି ବିଲକ୍ଷଣ ଯତନ
କୋଟି କୋଟି ଧନ ବ୍ୟୟ କଲ ହେ ରାଜନ ।
ଭାଙ୍ଗିଲେ ଦେଉଳ ସୁଦ୍ଧା ସ୍ଥାନ ନ ତେଜିବି
ଯୁଗେ ଯୁଗେ ତୁମ୍ଭର ଏ କୀର୍ତ୍ତି ରୁହାଇବି ।
ସମ୍ପୂର୍ଣ୍ଣ ବିଶ୍ୱାସ ଏଥି କରି ନରଧବ
କାଳାନ୍ତରେ ଅନ୍ୟ ଯେବା ଦେଉଳ ହୋଇବ ।
ସେହି ତବ କୀର୍ତ୍ତି ବୋଲାଇବ ସୁନିଶ୍ଚିତେ
ବସତି କରିବି ତହିଁ ସଦା ତୁମ୍ଭ ହିତେ ।
ସତ୍ୟ ସତ୍ୟ ସତ୍ୟ ଏହା ଜାଣ ହେ ରାଜନ
ଦେଉଳ ପ୍ରତିମା ଯଦି ଭାଙ୍ଗେ କାଳେ ପୁଣ ।
ତେବେ ନ ତେଜିବି ମୁହିଁ ତୁମ୍ଭର ଏ ସ୍ଥାନ
ଏହି ଦାରୁ ଦେହେ ଏଥି କରିବି ବିଶ୍ରାମ ।
ଦ୍ୱିତୀୟ ପରାର୍ଦ୍ଧ ପୁଣି ବ୍ରହ୍ମାଙ୍କ ଯାବତ
ଏହି ସ୍ଥାନେ ଏହି ଦେହେ ରହିବି ତାବତ ।
ସ୍ୱାୟମ୍ଭୁବ ମନୁର ଦ୍ୱିତୀୟ ଚତୁର୍ଯୁଗେ
ସତ୍ୟର ପ୍ରଥମ ଜ୍ୟେଷ୍ଠ ଅମାବାସ୍ୟା ଯୋଗେ ।
ସେହି ଦିନ ତୁମ୍ଭ ଅଶ୍ୱମେଧ ହେଲା ପୂର୍ଣ୍ଣ
ଜ୍ୟେଷ୍ଠ ପୂର୍ଣ୍ଣିମାରେ ମୁହିଁ ହେଲି ଅବତୀର୍ଣ୍ଣ ।
ସେହି ମହାପୁଣ୍ୟ ଦିନ ମୋର ଜନ୍ମତିଥି
ମନେ ରଖିଥାଅ ଆହେ ଭକ୍ତ ନରପତି ।
ଗୋଟିଏ ସ୍ନାନ ମଣ୍ଡପ ମୋ ପାଇଁ କରିବ
ସେହି ସ୍ନାନ ବେଦୀ ଅତି ମନୋହର ହେବ ।
ପହଣ୍ଡି ବିଜେ କରାଇ ମୋର ମୂର୍ତ୍ତି ଚାରି
ସେ ସ୍ନାନ ବେଦୀକି ନେବ ସମାରୋହ କରି ।
ସର୍ବ ଶୁଭ ଲଗ୍ନେ ବାସ ଜଳ ଯୋଗାଡ଼ିବ
ଆନନ୍ଦ ଉତ୍ସବେ ମୋତେ ସ୍ନାନ କରାଇବ ।
ବିଧି ମତେ ଉପଚାରେ ଅଧିବାସ କରି
ମହାପୂଜା ଆରମ୍ଭ କରିବ ଦଣ୍ଡଧାରୀ ।
ପୂଜିତ ହୋଇଣ ମୁହିଁ ସେ ପୂର୍ଣ୍ଣିମା ଦିନେ
କୋଟି ଜନ୍ମାର୍ଜ୍ଜିତ ପାପ ନାଶିବି ବିହନେ ।
ସର୍ବତୀର୍ଥ ସର୍ବଯଜ୍ଞ ସର୍ବଦାନ ଫଳ
ସେଦିନ ଯେ ଦେଖେ ମୋତେ ମିଳଇ ସକଳ ।
ବଟର ଉତ୍ତରେ ସର୍ବତୀର୍ଥମୟ କୂପ
ସ୍ନାନ ହେତୁ ଆଗେ ଦେଖିଥିଲଇଁ ହେ ଭୂପ ।
ପଛନ୍ତେ ହୋଇଲା ଅବତାର ଏହି ସ୍ଥାନେ
ସେ କୂପ ମୁଦି ହୋଇଛି ବାଲୁକା ପରଶେ ।

ଉତ୍ତର କରିଛନ୍ତି କୂପ ଆଛେ ନରସାଇଁ
ସ୍ନାନ କରାଇବ ମୋତେ ସେହି ଜଳ ନେଇ ।
ଚତୁର୍ଦ୍ଦଶୀ ଦିନ କୂପ ସଂସ୍କାର କରିବ
କ୍ଷେତ୍ରପାଳ ଦିଗପାଳ ରକ୍ଷକେ ପୂଜିବ ।
ସୁଘଣ୍ଟା କାହାଳୀ ଶଙ୍ଖ କରାଇ ବାଦନ
ସୁବର୍ଣ୍ଣ କୁମ୍ଭରେ ଜଳ କାଢ଼ିବେ ବ୍ରାହ୍ମଣ ।
ଜ୍ୟେଷ୍ଠ ପୂର୍ଣ୍ଣିମାରେ ଅତିପ୍ରାତଃ ଅବସରେ
ବ୍ରହ୍ମା ଆଉ ରାମ ସୁଭଦ୍ରାଙ୍କ ସଙ୍ଗେମୋରେ ।
ସ୍ନାନ କରାଇବ ଶୁଭେ ହରଷିତ ମନେ
ନାନା ଉପଚାରେ ପୂଜା କରିବ ବିଧାନେ ।
ଯେଉଁମାନେ ଏହି ବିଧି ବିଧାନ ପାଳିବେ
ଅନ୍ତକାଳେ ନିଶ୍ଚୟ ସେ ମୋ ଧାମ ପାଇବେ ।
ସ୍ନାନକର୍ମମୋର ଯେବା କରିବେ ଦର୍ଶନ
କେବେ ନ ପାଇବେ ସେହୁ ଶରୀର ବନ୍ଧନ ।
ଈଶାନ ଭାଗରେ ବଡ଼ମଞ୍ଚ ତିଆରିବ
ଯତ୍ନେ ଚନ୍ଦ୍ରାତପ ଟାଣି ଶୋଭା କରାଇବ ।
ଅଗୁରୁ ଚନ୍ଦନ ଜଳ ସିଞ୍ଚିବ ସେସ୍ଥାନେ
ଚକାବଇଠିରେ ମୋତେ ବସାଇ ଯତନେ ।
ନାନା ବାଦ୍ୟ ନାଦେ ହରିଧ୍ୱନି ସହିତରେ
ସ୍ନାନ କରାଇବ ମୋତେ ବେଦବିଧାନରେ ।
ଦକ୍ଷିଣ ମୁଖରେ ମୁହିଁ କରନ୍ତେ ଗମନ
ସେହିକାଳେ ଯେହୁ ମୋତେ କରିବେ ଦର୍ଶନ ।
ମନମଧ୍ୟେ ସେ କରିବେ ଯେଉଁ ଅଭିଳାଷ
ଅନାୟାସେ ସେହିଫଳ ପାଇବେ ଅବଶ୍ୟ ।
ତହୁଁ ପଞ୍ଚଦଶ ଦିନକାଳ ପର୍ଯ୍ୟନ୍ତେ
ନରନାରୀମାନେ କେହି ନ ଦେଖିବେ ମୋତେ ।
ଗୃହଭିତ୍ତି ଭିତରେ ମୁଁ ବିରହ ଜ୍ୱରରେ
ମୁଖ ମାଡ଼ିଣ ଶୋଇବି ଅଣସର ଘରେ ।
ପନ୍ଦର ଦିବସ ଗତ ହୁଅନ୍ତେ ହେ ନୃପ
ଛୁଟିଯିବ ମୋର ଅଙ୍ଗୁ ସେ ବିରହ ତାପ ।
ଆଷାଢ଼ ମାସର ଅମାବାସ୍ୟା ତିଥି ଦିନ
ଉତ୍ତର ହୋଇବ ମୁହିଁ ଉଠି ହେ ରାଜନ ।
ଉକ୍ତ ଅମାବାସ୍ୟା ବୋଲି ଜାଣିବେ ସକଳେ
ଦେଖିବେ ମୋର ଚତୁର୍ଦ୍ଧାମୂର୍ତ୍ତି ଚର୍ମଡୋଳେ ।
ମୋ ନୟନ ଜଳେ ଅଙ୍ଗ ମ୍ଳାନ ହୋଇଥିବ
ତେଣୁ ନବଯୌବନେ କରାଇବ ନେତ୍ରୋତ୍ସବ ।
ନାନା ଉପଚାରେ ବଢ଼ାଇବ ଯେବାବିଧି
କହିଲେଟି ତୁମ୍ଭ ଆଗେ ଅହେ ନୃପନିଧି ।
ଜ୍ୟେଷ୍ଠ ପୂର୍ଣ୍ଣିମାରେ ଯେଉଁ ଉତ୍ସବ କରିବ
ଦେବସ୍ନାନ ସେହୁ ବୋଲି ଜାଣିବେ ସରବ ।
ଏମନ୍ତେ କମଳାମୁଖ ଇନ୍ଦ୍ରଦ୍ୟୁମ୍ନେ କହି
ମଉନ ହୋଇଲେ ପ୍ରଭୁ ଦେଖୁ ଦେଖୁ ତହିଁ ।
ଭକତ ବତ୍ସଳ ଜଗନ୍ନାଥ ଦୀନବନ୍ଧୁ
ଭକ୍ତ ଲାଗି ଉତ୍କଳାନ୍ତ ମହିମାର ସିନ୍ଧୁ ।
ସେହି ଚକାଡୋଳାଙ୍କର ଚରଣ ସାରସ
ମରତେ ଆଶ୍ରିତ ଭଣେ ବୈଷ୍ଣବ ଦାସ ।

—×—

## ଶ୍ରୀ ଜଗନ୍ନାଥଙ୍କର ଅନ୍ୟାନ୍ୟ ଯାତ୍ରା ବିବରଣ

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ଶ୍ରୀଜଗନ୍ନାଥଙ୍କ ସର୍ବ ଯାତ୍ରା ବିବରଣ ।
ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କି ପ୍ରଭୁ ଲକ୍ଷ୍ମୀପତି
ସୁପ୍ରସନ୍ନ ହୋଇ ଆଜ୍ଞା ଦେଲେ ବହି ପ୍ରୀତି ।
ଶ୍ରୀହରି ବୋଇଲେ ଶୁଣ ଭକ୍ତଦଣ୍ଡଧାରୀ
ପ୍ରଧାନ ପ୍ରଧାନ ଯାତ୍ରା ଯେ ଅଟେ ମୋହରି ।
ତୁମ୍ଭ ଆଗରେ ଏବେ ମୁଁ କରୁଛି ପ୍ରକାଶ
ଯେଉଁ ଯାତ୍ରା ଯେଉଁକାଳେ ପାଳିବ ନରେଶ ।
ଗୁଣ୍ଡିଚା ନାମେ ମୋ ଯାତ୍ରା ପରମ ପାବନୀ
ରଥଯାତ୍ରା ନାମେ ଖ୍ୟାତ ହେବ ସେ ଅବନୀ ।
ସାବଧାନେ ମହା ମହୋତ୍ସବ ତିଆଇଣ
ଗୁଣ୍ଡିଚା ଯାତ୍ରାକୁ ଭଲେ କରିବ ରାଜନ ।
ମାଘ ଶୁକ୍ଳପଞ୍ଚମୀ ଚଇତ୍ର ଶୁକ୍ଳାଷ୍ଟମୀ
ଏହି ଦୁଇଦିନ ଏ ମୋ ଯାତ୍ରାମଧ୍ୟେ ଗଣି ।
ବିଶେଷେ ଆଷାଢମାସେ ଦ୍ୱିତୀୟା ପୁଷ୍ୟାରେ
ମୋର ମହାପ୍ରୀତି ହେବ ଗୁଣ୍ଡିଚା ଯାତ୍ରାରେ ।
ନକ୍ଷତ୍ର ବନ୍ଧନ ଯଦି ହୁଏ ସେହି ଦିନ
ତଥିରେ ଦ୍ୱିତୀୟା ଯାତ୍ରା ଜାଣ ହେ ରାଜନ ।
ଆଷାଢ଼ର ଶୁକ୍ଳପକ୍ଷେ ଦ୍ୱିତୀୟା ପୁଷ୍ୟାରେ
ମହା ସମାରୋହେ ରଥେ ବସାଇବ ମୋତେ ।

ବଳଭଦ୍ର ସୁଦର୍ଶନ ସୁଭଦ୍ରାଙ୍କ ସଙ୍ଗେ
ଚଳନ୍ତି ବିଜେସୁ କରାଇବ ଅନୁରାଗେ ।
ବୈଜୟନ୍ତୀ ଅଣାଇବ ପାଏନ୍ଦା ପକାଇ
ନାନାବାଦ୍ୟ ନାଦେ ବସୁନ୍ଧରା ଉଚ୍ଛୁଳାଇ ।
ଯତ୍ନେ ଗୁରବାନ୍ଧ ରଥେ ନେବ ସେହିମାର୍ଗେ
ଘଣ୍ଟା କାହାଳୀ ମୃଦଙ୍ଗ ବାଜୁଥିବ ରଙ୍ଗେ ।
ମହାମହୋତ୍ସବ କରି ଘୋଷିବ ବ୍ରାହ୍ମଣେ
ମୋହର କୈବଲ୍ୟ ବଢାଇବ ସର୍ବଜନେ ।
ଗୁଣ୍ଡିଚା ମନ୍ଦିର ନାମ ପୂର୍ବରୁ ମୋ ସ୍ଥିତି
ଅଶ୍ୱମେଧ ସହସ୍ରେକ ଯହିଁ କଲ ଖ୍ୟାତି ।
ଯହିଁ ମହାବେଦୀ ମୋର ପରମ ଶୋଭନ
ସର୍ବ ପ୍ରଥମରେ ରାଜା କଲସେ ନିର୍ମାଣ ।
ତାହାଠାରୁ ବଳି ଆଉ ପୁଣ୍ୟସ୍ଥାନ ନାହିଁ
ପଞ୍ଚାଶତ ବର୍ଷ ଯଜ୍ଞ କରିଅଛ ଯହିଁ ।
ଶଙ୍ଖନାଭି ମଧ୍ୟେ ଅତି ପ୍ରୀତିକର ସ୍ଥାନ
କାହିଁ ଅଛନାହିଁ ତାହାପରି ହେ ରାଜନ ।
ନରସିଂହ କ୍ଷେତ୍ରବୋଲି ତାର ନାମ ଜାଣ
ଯେଣୁ ମୋର ସେହିମୂର୍ତ୍ତି କରିଛ ସ୍ଥାପନ ।
ବ୍ରହ୍ମାଙ୍କର ଅନୁରୋଧେ ତୁମ୍ଭର ଭକ୍ତିରେ
ବସତି କଲି ମୁଁ ଏହି ନୀଳ ପର୍ବତରେ ।
ମହା ଆନନ୍ଦମୟ ସେ ଅଟେ ଏହି ସ୍ଥାନ
ନରସିଂହ କ୍ଷେତ୍ରେ ମହାବେଦୀକା ତେସନ ।
ମୋର ଜନ୍ମସ୍ଥାନ ସେହି ଅତି ରମଣୀୟ
ବହୁକାଳ ତହିଁ ଥିଲି ଧରି ଏହି କାୟ ।
ମୋ ଦେହକୁ ପଦ୍ମଯୋନି ଅତ୍ୟନ୍ତ ଆଦରେ
ସ୍ଥାପନ କଲେକ ଆଣି ଏମନ୍ତ ମନ୍ଦିରେ ।
ତାଙ୍କ ଅନୁରୋଧ ପୁଣି ତୁମ୍ଭ ଭକ୍ତିଭାବେ
ରହିଲି ମୁଁ ରତ୍ନମୂରତିରେ ଏହିଠାବେ ।
ନବଦିନ ଯିବ ମୁହିଁ ଗୁଣ୍ଡିଚାର ଘରେ
ଯେଣୁ ସେହିଠାରୁ ଆସିଛୁ ଏ ଶ୍ରୀମନ୍ଦିରେ ।
ତହିଁ ତୁମ୍ଭ ସରୋବର ସର୍ବ ତୀର୍ଥମୟ
ସପ୍ତଦିନ ତାର ତୀରେ ରହିବ ନିଶ୍ଚୟ ।
ତଥିପାଇଁ ସେବାମୋତେ କରିବେ ଦର୍ଶନ
ମୋହର ଧାମ ପାଇବେ ସେ ସତ୍ୟ ଏ ବଚନ ।
ସାର୍ଦ୍ଧ ତିନିକୋଟି ତୀର୍ଥ ଅଟେ ତ୍ରିଭୁବନେ
ତବ ସରୋବରେ ନିତ୍ୟ ମୋର ସମାଗମେ ।

ତହିଁ ସ୍ନାନକରି ଯେଉଁ ଭାଗ୍ୟବନ୍ତ ଜନେ
ଭକ୍ତିଭାବେ ମୋ ରୂପ ଦେଖିବେ ନବଦିନେ ।
ଜନନୀ ଜଠର କ୍ଲେଶ ନ ପାଇବେ ପୁଣି
ସତ୍ୟ ସତ୍ୟ କହୁଅଛି ଜାଣ ନୃପମଣି ।
ଦଶମୀ ଦିବସେ ତହୁଁ ରଥ ପରେ ଚଢ଼ି
ଦକ୍ଷିଣ ମୁଖରେ ମୁହିଁ ଆସିବି ବାହୁଡ଼ି ।
ସେହିକାଳେ ମୋତେ ଯେହୁ କରିବେ ଦର୍ଶନ
ଅଶ୍ୱମେଧ ଫଳ ନିଶ୍ଚେ ଲଭିବେ ସେ ଜନ ।
ଇନ୍ଦ୍ରର ସମାନ ଭୋଗ ଭୁଞ୍ଜିବେ ଅବଶ୍ୟ
ଅନ୍ତିମକାଳେ ଲଭିବେ ମୋ ପଦ ସାରସ ।
ପୁନର୍ବାର ଆଜ୍ଞା ମୋର ଶୁଣସି ରାଜନ
ଆବର ଯେତେକ ମୋର ଯାତ୍ରା ବିବରଣ ।
ମୋ ଶୟନ ପାର୍ଶ୍ୱ ପରିବର୍ତ୍ତନ ଉତ୍ଥାନ
ଏ ତିନି ଯାତ୍ରା ଯତନେ କରିବ ରାଜନ ।
ଆବରଣ ଯାତ୍ରା ମାର୍ଗଶିରେ ଭିଆଇବ
ପୌଷମାସ ପୂର୍ଣ୍ଣିମାରେ ଅଭିଷେକ ହେବ ।
ମାଘରେ ମକର ଯାତ୍ରା ବସନ୍ତ ପଞ୍ଚମୀ
ମହାମହୋତ୍ସବରେ କରିବ ନୃପମଣି ।
ଫଗୁଣେ ଫଗୁଦୋଳ ମୋ କରିବ ଯତନେ
ଦକ୍ଷିଣ ମୁଖରେ ଝୁଲାଇବ ବେଦୀସ୍ଥାନେ ।
ଦୋଳଉତ୍ସବ ମୋହର ଯେ ଜନ ଦେଖିବେ
ବ୍ରହ୍ମହତ୍ୟା ଆଦି ପାତକରୁ ମୁକୁଳିବେ ।
ଦର୍ଶନ ପୂଜନ ପ୍ରଣାମରେ ପ୍ରାଣୀମାନେ
ଅଶ୍ୱମେଧ ଯଜ୍ଞଫଳ ପାଇବେ ଅନ୍ତିମେ ।
ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନେ
ଉତ୍ସବ ଭିଆଇ ମୋତେ ପୂଜିବ ଯତନେ ।
ବୈଶାଖ ଶୁକ୍ଳତୃତୀୟା ଦିନଠାରୁ ଜାଣ
ମୋର ଚନ୍ଦନ ଉତ୍ସବ କରିବ ଭିଆଣ ।
ଏକବିଂଶ ଦିନଯାଏଁ ମୋହର ଅଙ୍ଗରେ
ବାସଚନ୍ଦନ ଚର୍ଚ୍ଚିତ କରିବ ରଙ୍ଗରେ ।
ସମାରୋହେ କରିବ ମୋ ଚନ୍ଦନ ଉତ୍ସବ
ବାରମାସେ ତେରଯାତ୍ରା ଏମନ୍ତେ କରିବ ।
ପ୍ରତ୍ୟେକ ଯାତ୍ରା ମୋହର ରାଜବର୍ଗ ଦାତା
ଏହାଜାଣି ସମାଦରେ କରିବ ସର୍ବଥା ।
ଏହିପରି ମହାବାହୁ ବ୍ରହ୍ମାଣ୍ଡ ଠାକୁର
ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କି ଦେଲେ ଆଜ୍ଞାବର ।

ଏ ପ୍ରସଙ୍ଗ ଯେଉଁଜନ ମନଦେଇ ଶୁଣେ
ସର୍ବ କାମନା ପୂରଇ ବ୍ୟାସଙ୍କ ବଚନେ ।
ଏମନ୍ତେ ଜୈମିନି ଋଷି ମୁନି ମଣ୍ଡଳରେ
ପ୍ରକାଶ କଲେ ପରମ ଆନନ୍ଦ ମନରେ ।
ଶ୍ରୀଜଗନ୍ନାଥ ପୁରାଣ ସୁଧାନ୍ତୁ ମଧୁର
କର୍ଣ୍ଣମୁଖେ ପାନକର ସର୍ବ ନାଶନର ।
ସକଳ କଳୁଷ ନାଶ ହୋଇବ ନିଶ୍ଚୟ
ମରଣ କାଳକୁ ନଥିବଟି ଯମଭୟ ।
ବଳୀସ୍ତାରଭୁଜ ଚକାଡୋଳାଙ୍କ ଚରଣ
ଦୁଃଖୀ ବଇଷ୍ଣବ ଦାସ ମାଗଇ ଶରଣ ।

—×—

## ବ୍ରହ୍ମା ଓ ଦେବଗଣଙ୍କର ସ୍ୱସ୍ଥାନେ ଗମନ

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ମୁନିମାନେ
ଏହି ବର ଦେଲେ ପ୍ରଭୁ ସେହି ଇନ୍ଦ୍ରଦ୍ୟୁମ୍ନେ ।
ଈଷତ ହସି ବଦନେ ବ୍ରହ୍ମାଙ୍କୁ କହନ୍ତି
ହେ ଚତୁରାନନ ଶୁଣ ମୋହର ଭାରତୀ ।
ତୁମ୍ଭ ପ୍ରୀତିରେ ସକଳ ଦେଲି ସମାପନ
ତୁମ୍ଭର ମୋହର ଭେଦ ନାହିଁ କଦାଚନ ।
ତୁମ୍ଭ ଇଚ୍ଛା ଯାହା ତାହା ସମ୍ମତ ମୋହର
ଅଭିଳାଷ ପୂର୍ଣ୍ଣକଲି ଭଲେ ମୁଁ ତୁମ୍ଭର ।
ଯେଉଁ କାଳେ ଥିଲା ମୋର ମାଧବ ମୂରତି
ସେକାଳେ କହିଲ ଯେଉଁ ପ୍ରାର୍ଥନା ଉକତି ।
ତାହା ପୂର୍ଣ୍ଣ ହେତୁ ହେଲି ଏହି ଅବତାର
ମୋତେ ଦେଖି ପ୍ରାଣୀମାନେ ପାଇବେ ନିସ୍ତାର ।
ଦର୍ଶନ ପୂଜନ କରି ସର୍ବ ଜନଗଣ
ଅନ୍ତକାଳେ ଲଭିବେ ସେ ମୋହର ଚରଣ ।
ନେମେ ତୁମ୍ଭ ସହ ସର୍ବେ ପାଇବେ ଯେ ମୋରେ
ନିଶ୍ଚୟ କରି ଏ କଥା କହିଲି ତୁମ୍ଭରେ ।
ତୁମ୍ଭେ ଇନ୍ଦ୍ରଦ୍ୟୁମ୍ନ ସଙ୍ଗେ ମିଳି ଏହି ସ୍ଥାନେ
ଅପୂର୍ବ କୀର୍ତ୍ତି ସ୍ଥାପିଲ ଏ ମର୍ତ୍ତ୍ୟ ଭୁବନେ ।
ଯୁଗେ ଯୁଗେ ଏ କୀରତି ଧ୍ୱଂସ ନ ହୋଇବ
ମୋର ପ୍ରିୟ ସ୍ଥାନ ଏହି କଳ୍ପେ କଳ୍ପେ ଥିବ ।
କଳ୍ପବଟ ରହିଥିବ ସଦା ଏହି ପରି
ପ୍ରଳୟରେ କ୍ଷୟ ନ ହୋଇବ ଏହି ପୁରୀ ।
ଯାହା ବାଞ୍ଛି ପ୍ରାଣୀମାନେ ଏଠାରେ ସେବିବେ
ଅବଶ୍ୟ ସେ ଅଭିଳାଷ ଫଳକୁ ପାଇବେ ।
ଏବେ ସତ୍ୟ ଲୋକେ ଯାଅ ଘେନି ଦେବଗଣେ
ସ୍ୱର୍ଗରେ ସୁଖେ ରହନ୍ତୁ ଦେବେ ସଦାଦିନେ ।
ତବ ପରମାୟୁ ପୂର୍ଣ୍ଣ ହୋଇବ ଯାବତ
ନିଶ୍ଚୟ ଏ ନୀଳାଦ୍ରିରେ ରହିବ ତାବତ ।
ତହୁଁ ସଙ୍ଗେ ଘେନି ବ୍ରହ୍ମା ସୁର ସିଦ୍ଧଗଣ
ଜଗନ୍ନାଥଙ୍କ ଚରଣେ କରି ସେ ବନ୍ଦନ ।
ନିଜ ନିଜ ଆଳୟକୁ ସୁଖେ ଚଳିଗଲେ
ପ୍ରତିଜ୍ଞାରୂପ ଶ୍ରୀହରି ଧଇଲେ ସେକାଳେ ।
ସୁସ୍ଥିର ହୋଇରହିଲେ ଦେଉଳ ଭିତରେ
ଜଗତ ଆନନ୍ଦଦାତା ଚତୁର୍ଦ୍ଧା ରୂପରେ ।
ସକଳତୀର୍ଥ ଧାମକୁ ସଙ୍ଗେ ଘେନିକରି
ଶ୍ରୀନୀଳକନ୍ଦରେ ବିଜେ ଆପଣେ ଶ୍ରୀହରି ।
ବିଷ୍ଣୁଭକ୍ତ ଦୃଢ଼ ବ୍ରତ ଧର୍ମାତ୍ମା ରାଜନ
ବ୍ରହ୍ମାଙ୍କର ଅନୁବ୍ରଜ କଲେ ତଦନ୍ତେଣ ।
ପ୍ରସନ୍ନେ ବ୍ରହ୍ମା କହିଲେ ଇନ୍ଦ୍ରଦ୍ୟୁମ୍ନ ପ୍ରତି
ଭଗବାନ ଯାହା ଆଜ୍ଞାକଲେ ହେ ନୃପତି ।
ସେହିସବୁ ଯାତ୍ରାମାନ କରିବ ବିଧାନେ
ତହିଁରେ ତୋଷ ତାଙ୍କ ପ୍ରସନ୍ନ କାରଣେ ।
ଏବେ ଆପଣା ସଦନେ କରସି ଗମନ
ଏତେକହି ବ୍ରହ୍ମା ଗଲେ ନିଜ ନିକେତନ ।
ବ୍ରହ୍ମାଙ୍କ ଆଦେଶେ ରାଜା ବାହୁଡ଼ିଲେ ପୁରେ
ସେହି ଆଦେଶକୁ ଧରି ନିଜ ମସ୍ତକରେ ।
ବିଧିମତେ ବହୁ ଉପଚାରେ ମହାରାଜା
ଦୃଢ଼ ଭକ୍ତିଭାବେ କଲେ ଜଗନ୍ନାଥେ ପୂଜା ।
ନାରଦ ସହିତ ରାଜା ପରମ ଶ୍ରୀମାନ
ଦେବସ୍ନାନ ଯାତ୍ରାଆଦି କଲେ ସମାଧାନ ।
ଏ କଥା ଯେବଣ ଜନ ଶ୍ରଦ୍ଧାମନେ ଶୁଣେ
ଜଗନ୍ନାଥଙ୍କର କୃପା ଲଭେ ସେ ତକ୍ଷଣେ ।
ମୁଁ ସେ ବ୍ୟାସଙ୍କ କୃପାରୁ କହିଲି ଏସନ
ଶୁଣିଲଟି ମୁନିମାନେ ହୋଇ ସାବଧାନ ।
ଏମନ୍ତେ ଜୈମିନି ବଖାଣିଲେ ମୁନିମେଳେ
ସକଳ ତାପସ ଶୁଣି ଆନନ୍ଦ ଲଭିଲେ ।

ଏ ପୁରାଣ ଅଟଇ ସୁଧାସାର ସୁକଥନ
ମନକର୍ଣ୍ଣ ଦେଇ ସର୍ବେ କର ହେ ଶ୍ରବଣ ।
ଗଳିତ ନିର୍ମାଲ୍ୟ କାକ ମୁଖରୁ ପଡ଼ିଲେ
ସାଧୁଜନ ତ୍ୟାଗ ନକରନ୍ତି କେବେହେଲେ ।
ଏହାଜାଣି ଏ ପୁରାଣ କରହେ ଶ୍ରବଣ
ହରିଗୁଣ ହେତୁ ଏହା ପରମ ପାବନ ।
ବିଦ୍ୟା ବୁଦ୍ଧିହୀନ ମୁହିଁ ଅଧମ ପାମର
ଯାହା ଲେଖାଇଲେ ହରି କଲି ତା ଗୋଚର ।
ସାଧୁଜନମାନଙ୍କର କଣାଦାସ ମୁହିଁ
ଭଣେ ବଇଷ୍ଣବ ଦାସ ଶକ୍ତି ରମାସାଇଁ ।

—X—

## ଶ୍ୱେତ ରାଜାଙ୍କୁ
## ସେବା ସମର୍ପଣ କରି
## ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକେ ଗମନ

ଜୈମିନି ଉବାଚ

ଏଥୁ ଅନନ୍ତରେ ଯେ ଜୈମିନି ଋଷିବର
ମୁନିସମାଜେ କହିଲେ ହରିବ୍ୟ ସମାଚାର ।
ଶୁଣ ଆହେ ମୁନିଗଣ ହୋଇ ଏକମନ
ଅପୂର୍ବ କଥନ ଏବେ କରିବ ବର୍ଣ୍ଣନ ।
ବରିପାଇ ଇନ୍ଦ୍ରଦ୍ୟୁମ୍ନ ଶ୍ରୀବଡ଼ଦେଉଳେ
ସେହିଦିନୁ ଯାହା ମହୋତ୍ସବ କରାଇଲେ ।
ପ୍ରଭୁଙ୍କର ଆଜ୍ଞାମତେ ଯେ ଭକ୍ତ ରାଜନ
ବିଧାନେ ବତାନ୍ତି ସେବା ନୀତି କାର୍ଯ୍ୟମାନ ।
ନାନା ଉପଚାରେ ରାଜା ଧୂପ ଅବକାଶେ
ମନଯୋଗ ଦେଇଥାନ୍ତି ପରମ ହରଷେ ।
କାୟମନୋବାକ୍ୟେ ସେବା ଚଳାନ୍ତି ନୃପତି
ଯେସନେ ଜଗନ୍ନାଥଙ୍କର ହେବ ମହାପ୍ରୀତି ।
ଗାଲମାଧବ ରାଜା ଯେ ଉତ୍ତମ ଭକତ
ଶ୍ୱେତନାମେ ବିଖ୍ୟାତ ଯେ ଉଦାସୀ ଅତ୍ୟନ୍ତ ।
ଦେବତାଙ୍କ ପ୍ରବେଶନ୍ତେ ଜାଣି ଇନ୍ଦ୍ରଦ୍ୟୁମ୍ନ
ସେହି ଶ୍ୱେତ-ନୃପତିଙ୍କ ଡକାଇ ବହନ ।
ନେତ୍ରେ ଅଶ୍ରୁନୀରେ ନେତ୍ର ଥନ ଥନ କରି
ମଧୁର ସ୍ୱରେ କହନ୍ତି ନୃପତି-କେଶରୀ ।
ଶୁଣ ହେ ଶ୍ୱେତ ରାଜନ ମୋହର ବଚନ
ତୁମ୍ଭଙ୍କୁ କଲି ପ୍ରଭୁଙ୍କ ସେବା ସମର୍ପଣ ।
ସାବଧାନ ହୋଇ ସେବାନୀତି ଚଳାଇବ
କୌଣସି ବିଷୟେ ଯେସନେ ହେଳା ନ ହୋଇବ ।
ଯୋଗ୍ୟ ଅଟ ଯେଣୁ ଜଗନ୍ନାଥଙ୍କ ସେବାକୁ
ଆଜଠାରୁ ସେବାଭାର ଅର୍ପିଲି ତୁମ୍ଭଙ୍କୁ ।
ପ୍ରତିଦିନ ଚନ୍ଦନଧୂପ ପାଞ୍ଚ ଅବକାଶ
ବିଧାନେ ସକଳ କାର୍ଯ୍ୟ କରିବ ନରେଶ ।
ମଙ୍ଗଳ ଅର୍ଚ୍ଚନଠାରୁ ଆରମ୍ଭ କରିଣ
ବଡ଼ସିଂହାର ପହୁଡ଼ କାଳ ପର୍ଯ୍ୟନ୍ତେଣ ।
ଷୋଳ ଉପଚାରେ ପୂଜାବିଧି ବତାଇବ
ଷାଠିଏ ପଉଟି ଅନ୍ନ ଊଣା ନ କରିବ ।
ଗୁରୁ ପଉଟି ବ୍ୟଞ୍ଜନ ଖଞ୍ଜିଅଛୁ ମୁହିଁ
ନାନା ପିଠାପଣା ପରମାନ୍ନ ଖଞ୍ଜା ତହିଁ ।
ବାଲ୍ୟଭୋଗ ଆଦିକରି ଯୋଗାଣ ବିଧାନ
ସକଳ ନିର୍ବାହିବ ଦେଇ ମନପ୍ରାଣ ।
ଯେତେ ପରଶ୍ରମେ ଅବତାର ହେଲେ ହରି
କିଛୁ ଅଜଣା ତୁମ୍ଭଙ୍କୁ ନାହିଁ ଦଣ୍ଡଧାରୀ ।
ଏଣୁ ସମର୍ପିଲି ସେବା ଯୋଗ୍ୟପାତ୍ର ଜାଣି
ସାବଧାନେ ସବୁ କରିବଟି ନୃପମଣି ।
ଏତେବୋଲି କାତରେ କାନ୍ଦଇ ଭକ୍ତରାଯ୍ୟ
ନୟନ ଯୁଗଳୁ ବହିଯାଏ କେତେ ଲୁହ ।
ଜଗନ୍ନାଥଙ୍କର ବିରହ ଯେ ଗୁରୁତର
ସେ ଖେଦ କଥା ବର୍ଣ୍ଣନେ ଅଟଇଁ ଦୁଷ୍କର ।
ବେନିକର ଯୋଡ଼ି ଜଗନ୍ନାଥଙ୍କ ଅଗ୍ରତେ
ସ୍ତୁତିକରି ସେକାଳେ ପଡ଼ିଲେ ଭୂମିଗତେ ।
ପୁଣି ଦଣ୍ଡବତ କରି କରଯୋଡ଼ି କହେ
ତୁମ୍ଭ ବିରହ ନିମିଷେ ମୋ ଦେହ ନସହେ ।
ଏହିଆଜ୍ଞା ଦିଅମୋତେ ବ୍ରହ୍ମାଣ୍ଡ ଗୋସାଇଁ
ତବ ପାଦପଦ୍ମ ସେବା ନଛାଡ଼ିବ ମୁହିଁ ।
ଏହିମତେ ସ୍ତବକରି ସେ ଇନ୍ଦ୍ରଦ୍ୟୁମ୍ନନ
ମେଲଣି ହୋଇଲେ ନେତ୍ର କରି ଥନ ଥନ ।
ଶ୍ୱେତ ରାଜାଙ୍କୁ ସକଳ କହିଲେ ବୁଝାଇ
ସେବାଧନ ସମର୍ପିଲେ ତୋଷେ ନରସାଇଁ ।
ଲୟ ଜଗନ୍ନାଥ ହରି ମୁଖରେ ଉଚ୍ଚାରି
ବ୍ରହ୍ମଲୋକକୁ ଚଳିଲେ ଭକ୍ତ ଦଣ୍ଡଧାରୀ ।
ଇନ୍ଦ୍ରଦ୍ୟୁମ୍ନେ ଦେଖି ବ୍ରହ୍ମା ହର୍ଷ ହେଲେ ମନେ
ଜଗନ୍ନାଥ ସେବାକଥା ପଚାରିଲେ ଯତନେ ।

ସକଳ କଥା କହିଲେ ଇନ୍ଦ୍ରଦ୍ୟୁମ୍ନ ତହିଁ
ଶୁଣି ପରମ ଆନନ୍ଦ ଯାବନ୍ତିଙ୍କ ମାଳି ।
ଜଗନ୍ନାଥଙ୍କର ପ୍ରସଙ୍ଗରେ ସେହି ବେନି
ମହାସୁଖେ ବଞ୍ଚିଲେ ସେ ଦିବସ ରଜନୀ ।
ଏଣେ ଶ୍ୱେତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଦେଶେ
ଭକ୍ତିଭାବେ ରହି ପୁରୁଷୋତ୍ତମ ନିବାସେ ।
ଜଗନ୍ନାଥଙ୍କର ସେବା କରଇ ପ୍ରଚୁର
ଛତିଶ ନିଯୋଗେ ଖଟନ୍ତି ଯେ ନିରନ୍ତର ।
ଏକଦିନ ସେହି ଶ୍ୱେତ ନୃପତି ଶେଖର
ଜଗନ୍ନାଥଙ୍କ ଦର୍ଶନେ ଚଳିଲା ସତ୍ୱର ।
ପ୍ରବେଶ ହୋଇଲା ଯାଇ ଦେଉଳ ଦୁଆରେ
ବାଇଶ ପାବଚ୍ଛ ଉଠିଗଲା ଆନନ୍ଦରେ ।
ଚନ୍ଦନ ଅର୍ଗଳ ଆଗେ ଗରୁଡ଼ ପଛରେ
ଠିଆହୋଇ ସ୍ତୁତି କଲା ନାନା ପରକାରେ ।
ପ୍ରଣାମ ଆଚରି ଭକ୍ତିଭାବେ ନୃପବର
ଜଗନ୍ନାଥଙ୍କ ଶ୍ରୀମୁଖେ ରହେ ଯୋଡ଼କର ।
ଧ୍ୟାନମାର୍ଗେ ପ୍ରଭୁଙ୍କୁ ସେ କରେ ଦରଶନ
ପୂଜାର ସମ୍ଭାର ଦେଖି ବିସ୍ମୟ ତା ମନ ।
ଅନେକ ସୁନା ଥାଳରେ ବହୁ ଉପହାର
ମହାଲକ୍ଷ୍ମୀଙ୍କର ପାକ ଅତି ଚମତ୍କାର ।
ସୁପକ୍ୱ ସୁସ୍ୱାଦୁ ନାନାବିଧ ଫଳମାନ
ଆମ୍ବ ଜାମୁ ପଣସ ଖର୍ଜୁର ମନୋରମ ।
କଦଳୀ ନଡ଼ିଆ ଆତ କମଳା ସପୁରି
କରମଙ୍ଗା ନାରଙ୍ଗ ସହିତେ ସାରି ସାରି ।
ଦ୍ରାକ୍ଷା ତାଳଫଳ ଇକ୍ଷୁ ବାତାପୀ ଜମ୍ବିର
ଟଭା ନିଚୁ କ୍ଷୀରକୋଳି ବାଦାମ କେଶର ।
ଡାଳିମ୍ବ ଶ୍ରୀଫଳ ସୀତାଫଳ ଆଦିକରି
ପାଚିଲା ଫଳମାନ ଯେ ଅଛି ଅସୁମାରି ।
ନାନା ପ୍ରକାରେ ମିଷ୍ଟାନ୍ନ ମହକେ ସୁବାସ
କ୍ଷୀରି ଖେଚଡ଼ି ଓଦଆଅନ୍ନ ଯେ ପାୟସ ।
ଦୁଗ୍ଧ ଅମୃତ କର୍ପୂର କେଳି ମନୋହର
ସର ଲବଣୀ ଅଧାମ ଦଧି ନେନାବରି ।
ପାରିଜାତ ଖଜା ଗଜା ଡାଳିମ୍ବା କାକରା
ଗୋଟିକା ଘନ ଆବର୍ତ୍ତି ଗୋରସ ପସରା ।
ଚନ୍ଦ୍ରକାନ୍ତ କଦମ୍ବା ଆରିସା ସରପୁଲି
ନାଡ଼ୀ ବଡ଼ୀ ଖଣ୍ଡଖଜା ଜୁଆଳ ରସାବଳୀ ।
ପାପଡ଼ୀ ମଠ ସୁଆଳୀ ନେନାଡ଼ ଗାଜିଆ
ଟିକି ମୋତିଚୁରଲଡ଼ୁ ମୁଗ ସାନ୍ତୁଆ ।
ସିଂହାଳି ଖଇଚୁରଲ ଯେ ଚନ୍ଦ୍ରକଳା
ରାଜଭୋଗ ରସଗୋଲା ତିଳଲଡ଼ୁ ଗୋଦା ।
ଏହିମତେ ବହୁତ ଯେ ମିଷ୍ଟାନ୍ନ ସମ୍ଭାର
ଘୃତପକ୍ୱ ସୁବାସିତ ପଦାର୍ଥ ଅପାର ।
ସୁବର୍ଣ୍ଣ ଥାଳିମାନଙ୍କେ ଥୋଇଅଛି ପୂର୍ଣ୍ଣ
ତା ଚଉପାଶେ ବଢ଼ାଯେ ବିବିଧ ବ୍ୟଞ୍ଜନ ।
ଛପନ ଭୋଗ ପ୍ରଭୁଙ୍କ ଅମୃତ ମୁଣୋହିଁ
ତାର ସୁବାସରେ ଶ୍ରୀଗମ୍ଭୀରା ଚହଟଇ ।
ଯତନେ ଶ୍ରୀହରିପ୍ରିୟା କରନ୍ତି ପାକ
ଅମୃତ ନିନ୍ଦିତ ସ୍ୱାଦୁ ଅଦଣିଆ ପାକ ।
ଶାକ ସୁକୁତା ଦହିକଡ଼ି ସୂର୍ଯ୍ୟକାନ୍ତ
ପ୍ରଭୁଙ୍କ ଶ୍ରୀମୁଖେ ବଢ଼ାଅଛି ପନ୍ତ ପନ୍ତ ।
ଦୁଧ ପେଡ଼ା ମାଲପୁଆ ପୁରି ଯେ ଆବର
ଅମାଲୁ ଏଣ୍ଡୁରି ମଣ୍ଡାପିଠା ମନୋହର ।
କୁଷ୍ମାଣ୍ଡ ବଟିକା ଭଜା ସନ୍ତୁଳା ବେସର
ରାଇ ରାଇତା ଯେ ମଧୁରୁଚି ଖଣ୍ଡସାର ।
ଆମ୍ବିଳ ଶାକରା ଆଦି ବିବିଧ ବ୍ୟଞ୍ଜନ
ରାନ୍ଧି ଅଛନ୍ତି କମଳା ଜାଣି ପ୍ରଭୁମନ ।
ମୁଦ୍ଗସୂପ ବଡ଼ିସୂପ ଅନେକ ପ୍ରକାର
ଏମନ୍ତେ କେତେ ବା ନାମ କହିବି ତାହାର ।
ଆମ୍ରତକ ଆଗୁର ଯେ ତେନ୍ତୁଳିର ରସେ
ବାଢ଼ିଛନ୍ତି ଠାକୁରାଣୀ ମାନସ ଉଲ୍ଲାସେ ।
ଗହମ ରୁଟି ସହିତେ ଅନେକ ପିଷ୍ଟକ
ସାରି ସାରି ବାଢ଼ିଛନ୍ତି ଦେବୀ ଅନ୍ନପକ୍ୱ ।
ଦଧିଅନ୍ନ ପରମାନ୍ନ ଶାଳିଅନ୍ନ ପନ୍ତି
ଶରଧାରେ ସିଦ୍ଧସୂତା ତହିଁ ବାଢ଼ିଛନ୍ତି ।
ଯୋଗାଡ଼ି ଅଛନ୍ତି ଦେବୀ କେତେଭଳି ପଣା
ପଇଡ଼ପାଣି ସଜାଡ଼ିଛନ୍ତି ଅକଳଣା ।
କର୍ପୂର ଚନ୍ଦନ ମିଶା ସୁବାସିତ ନୀର
ସୁବର୍ଣ୍ଣ ଝଞ୍ଜରେ ପୂର୍ଣ୍ଣ ମିଶ୍ରିତ ପଣାର ।
ଖିଆପେଡ଼ା ମାଖନ ମିଶିରି ଲଡ଼ୁଦାନା
ଗୁନ୍ଦା ଗହମ କେଳି ସରଭଜା ଛେନା ।
ଖଣ୍ଡଖଇ ହୁଡ଼ୁମ୍ବ ଦୋଭଜା ଘସାଚୂଲା
ଦୂର୍ବାଚୂଡ଼ା ଘୃତଚୂଡ଼ା ମୁକୁନ୍ଦ ଉଖୁଡ଼ା ।

ଏମନ୍ତେ ଯେ ଅଦ୍ଭୁତିଆ ପଦାର୍ଥ ଅଶେଷ
ଦେଖି ଶ୍ୱେତ ନରପତି ପରମ ହରଷ ।
ପୂଜାର ସମ୍ଭାରମାନ ଦେଖନ୍ତେ ନୟନେ
ଧ୍ୟାନକରି ମହାରାଜା ଭାବେ ମନେ ମନେ ।
ଯେଉଁ ଜଗନ୍ନାଥେ ସନ୍ଧ୍ୟାକରି ଦେବଗଣ
ବାହ୍ୟ ଉପଚାରେ କରି ନପାରେ ପୂଜନ ।
ଯୋଗୀମାନେ ଯାହାଙ୍କୁ ମାନସ ଉପଚାରେ
ସର୍ବଦା ହୃଦୟ ମଧ୍ୟେ ପୂଜନ୍ତି ସାଦରେ ।
ନରଦ୍ରବ୍ୟ କି ଗ୍ରହଣ ହୁଏ ତାହାଙ୍କର
ଏହିରୂପେ ଶ୍ୱେତ ରାଜା କରଇ ବିଚାର ।
ଭାବି ଭାବି ମହାରାଜା କରଇ ଦର୍ଶନ
ଜନକ ଆସନେ ବସି ପ୍ରଭୁ ନାରାୟଣ ।
ଭୋଜନ କରୁଅଛନ୍ତି ପରମ କୌତୁକେ
ପରଶୁ ଅଛନ୍ତି ଲକ୍ଷ୍ମୀ ଠାକୁରାଣୀ ସୁଖେ ।
ଦିବ୍ୟମାଲ୍ୟ ଅଳଙ୍କାର ଲକ୍ଷ୍ମୀଙ୍କ ଦେହରେ
ମିଶ୍ରିଛନ୍ତି ନୀଳ ପାଟଶାଢ଼ୀ ମନୋହରେ ।
ଅମୂଲ୍ୟ ନୂପୁର ପାଦେ ବାଜେ ରୁଣଝୁଣ
ସେହି ସୁମଧୁର ସ୍ୱନେ ଶ୍ରୀଗମ୍ଭୀର ପୂର୍ଣ୍ଣ ।
ମନ୍ଥରଗାମିନୀ ଦେବୀ ପରମ ଆଦରେ
ଷଡ଼ରସ ପରଶନ୍ତି ଗତିକରି ଧୀରେ ।
ଚାରିଦିଗେ ଯେତେ ସବୁ ପ୍ରତିମୂର୍ତ୍ତିଗଣ
ଶ୍ରୀଜଗନ୍ନାଥଙ୍କ ସଙ୍ଗେ କରନ୍ତି ଭୋଜନ ।
ତାଦେଖି କୃତାର୍ଥ ମଣେ ଶ୍ୱେତ ନୃପବର
ଚକ୍ଷୁପେଇ ସେହିରୂପ ଦେଖେ ମନୋହର ।
ସେହିଦିନଠାରୁ ରାଜା ଦୃଢ଼ଭକ୍ତି କରି
ଆତ୍ମ-ସମର୍ପଣ କରି ସେବିଲା ଶ୍ରୀହରି ।
ଅକାଳେ କେ ନ ମରନ୍ତି ମଲେ ମୁକ୍ତ ହୋନ୍ତି
ଏହିହେତୁ ତପକଲା ଶ୍ୱେତ ନରପତି ।
ମନ୍ତ୍ର ଜପକରି ନୃସିଂହଙ୍କୁ ଆରାଧିଲା
ଶତେକ ବରଷ ଅନ୍ତେ ଦର୍ଶନ ପାଇଲା ।
ଯୋଗାସନେ ବସି ପ୍ରଭୁ ଲକ୍ଷ୍ମୀଙ୍କ ସହିତ
ଦିବ୍ୟ ଅଳଙ୍କାରେ ସବୁ ଅଙ୍ଗ ବିଭୂଷିତ ।
ନିର୍ମଳ ସ୍ଫଟିକ ଜିଣି ଶ୍ରୀଅଙ୍ଗ ବରନ
ମୃଦୁ ମୃଦୁ ହାସଯୁକ୍ତ ଶ୍ରୀଚନ୍ଦ୍ରବଦନ ।
ଚୌଦିଗେ ସ୍ତବ କରନ୍ତି ଦେବତା ମଣ୍ଡଳୀ
ଦେଖିଣ ହୋଇଲା ରାଜା ମହା କୁତୁହଳୀ ।

ପ୍ରସୀଦ ପ୍ରସୀଦ ବୋଲି ପଡ଼େ ଭୂମିତଳେ
ଅ-ନିବାରେ ଅଶ୍ରୁଧାରା ନୟନ ଯୁଗଳେ ।
ତପସ୍ୟାରେ କ୍ଷୀଣ ତାକୁ ଦେଖି ନାରାୟଣ
ଆଶ୍ୱାସ କରି କହିଲେ ଗମ୍ଭୀର ବଚନ ।
ଆଜ୍ଞାକଲେ ହେ ରାଜନ ମାଗ ତୁହି ବର
ତା ଶୁଣି ନୃପତି କହେ ଯୋଡ଼ି ଦୁଇକର ।
ଯଦି ବରଦେବେ ପ୍ରଭୁ ଲକ୍ଷ୍ମୀ ପ୍ରାଣଧନ
ମୋ ରାଜ୍ୟରେ ନୁହେ ଯେମନ୍ତେ ଅକାଳ ମରଣ
କାଳେ ମଲେ ମୁକତି ପାଇବେ ସୁନିଶ୍ଚିତ
ଏହିବର ଦେଇ ପ୍ରଭୁ କର ମୋର ହିତ ।
ସାରୂପ୍ୟ ପାଇ ରହିବି ତବ ସନ୍ନିଧାନ
ଏତିକି ପ୍ରାର୍ଥନା ମୋର ହେ ଜଗନ୍ମୋହନ ।
ଶ୍ୱେତରାଜାର ଏମନ୍ତ ପ୍ରାର୍ଥନାକୁ ଶୁଣି
ହସି ହସି ଗମ୍ଭୀରେ କହିଲେ ଚକ୍ରପାଣି ।
ତୋ ରାଜ୍ୟେ ରହିଣ ମୋର ପ୍ରସାଦ ଭୁଞ୍ଜିବ
ଅକାଳମରଣ ତାର କଦାପି ନ ହେବ ।
ସହସ୍ର ବରଷ ତୁହି କର ରାଜ୍ୟଭୋଗ
ମୋ ପ୍ରସାଦ ଭୁଞ୍ଜି କ୍ଷୀଣ କର ପାପ ରୋଗ ।
ନିର୍ମଳ ହୃଦେ ପାଇବୁ ସାରୂପ୍ୟ ମୋହର
ମୋର ସମୀପରେ ସ୍ଥିତି ହୋଇବ ତୋହର
ବଟମୂଳେ ଅଛୁ ମୁହିଁ ଶ୍ୱେତ ଗଙ୍ଗାତୀର ।
ସେଠାରେ ନିବାସ ତୋର ହେବ ନୃପବର
ଧରିବୁ ତୁ ମୂର୍ତ୍ତି ଶୁଦ୍ଧ ସ୍ଫଟିକ ସମାନ
ଭୂ-ଲୋକେ ହୋଇବ ଶ୍ୱେତମାଧବ ତୋ ନାମ ।
ଯେବଣ ଜନେ ତୋ ଆଗେ ଶୀବନ ତେଜିବେ
ନିଶ୍ଚୟ ସେ ପ୍ରାଣୀ ମୋର ଚରଣ ଲଭିବେ ।
ଏତେକହି ଜଗନ୍ନାଥ ମଉନ ହୋଇଲେ
ରତ୍ନସିଂହାସନେ ସ୍ଥିର ହୋଇ ବିରାଜିଲେ ।
ଦଣ୍ଡବତ ହୋଇ ଶ୍ୱେତରାଜା ତତକ୍ଷଣ
ଆପଣା ନଗରେ ଗଲା ଚିନ୍ତି ନାରାୟଣ ।
ପ୍ରତିଦିନ ଭୁଞ୍ଜି ସୁଖେ ଶ୍ରୀମହାପ୍ରସାଦ
ଶ୍ରୀଜଗନ୍ନାଥଙ୍କ ଭାବେ ହୁଏ ଗଦଗଦ ।
ମହାପ୍ରସାଦର ଅଟେ ମହିମା ଅପାର
କେ ଅବା କହିପାରିବ ଶକ୍ତିଅଛି କାର ।
ଲକ୍ଷ୍ମୀଠାକୁରାଣୀ ଯାହା ସ୍ୱହସ୍ତରେ ନିତି
ପାକ ନିର୍ମାଣ କରନ୍ତି ଠାକୁରଙ୍କ ପ୍ରତି ।

ସେହିପରି ମହାପ୍ରସାଦ ଅମୃତ ନନ୍ଦନ
ତାର ତତ୍ତ୍ୱ ଜାଣିବାକୁ କେବା ଅଛି ଜନ ।
ଏମନ୍ତେ ଜୈମିନି ଋଷି ମୁନି ମଣ୍ଡଳୀରେ
ବଖାଣ କଲେ ଏକଥା ଆନନ୍ଦ ମନରେ ।
ଆହେ ସୁଜ୍ଞଜନମାନେ ଶୁଣ ମୋର ଭାଷ
ଶ୍ରୀମହାପ୍ରସାଦେ ରଖ ମର୍ମରୁ ବିଶ୍ୱାସ ।
ଦାରୁବ୍ରହ୍ମ ଜଗନ୍ନାଥ ଦେବଙ୍କ ଚରଣେ
ବୈଷ୍ଣବ ଦାସ ଶରଣ ମାଗେ ଅନୁକ୍ଷଣେ ।

—ঃ*ঃ—

## ଶ୍ରୀମହାପ୍ରସାଦ ତତ୍ତ୍ୱ

### ଶୌନକ ଉବାଚ

ଏଥିଅନ୍ତେ ମହାତମା ଶଉନକମୁନି
ପୁଚ୍ଛିଲେ ଯେ ଜୈମିନିଙ୍କୁ ଶ୍ରଦ୍ଧାଭାବ ଘେନି ।
ବୋଇଲେ ଆହେ ସର୍ବଜ୍ଞ ସର୍ବଶାସ୍ତ୍ରବେତ୍ତା
କହ ଏବେ ଶ୍ରୀମହାପ୍ରସାଦ ତତ୍ତ୍ୱକଥା ।

### ଜୈମିନି ଉବାଚ

ଜୈମିନି କହନ୍ତି ଜଗନ୍ନାଥ ପଦଧ୍ୟାୟୀ
ଶ୍ରବଣ କରସି ମୁନି ଏକ ମନ ହୋଇ ।
ଉତ୍ତମ ପ୍ରଶ୍ନ କଲନ୍ତି ମୋ ଆଗେ ଆପଣ
କହୁଅଛି ସେହି କଥା ସାବଧାନେ ଶୁଣ ।
ଆପେ କରନ୍ତି କମଳା ପାକର ବିଧାନ
ସାକ୍ଷାତେ ଶ୍ରୀଜଗନ୍ନାଥ କରନ୍ତି ଭୋଜନ ।
ପରମ ଅମୃତମୟ ସେ ମହାପ୍ରସାଦ
ତାହାସମ କିଛି ନାହିଁ ତ୍ରିଭୁବନ ମଧ୍ୟ ।
ଅପାର ମହିମା ଧରେ ସେ କୈବଲ୍ୟ ରାଶି
ମସ୍ତକେ ଘେନିଲେ ସର୍ବ ପାପ ହୁଏ ଧ୍ୱଂସି ।
ନୟନେ ଦେଖିବା ମାତ୍ରେ ହରଇ ଯମ ଭୟ
ସ୍ମରଣ ମାତ୍ରକେ ବ୍ରହ୍ମହତ୍ୟା ଦୋଷ କ୍ଷୟ ।
ମଦିରା ପାନାଦି ଦୋଷ ନାଶେ ତତକ୍ଷଣେ
ମାନସ ପାପ ଘୁଞ୍ଚଇ କେବଳ ଆଘ୍ରାଣେ ।
ଦୃଷ୍ଟି ପାପ ନାଶଇ ପ୍ରସାଦ ଦର୍ଶନରେ
ବାକ୍ୟ ପାପ ଶତ୍ରୁ ପାପ ନାଶେ ଭକ୍ଷଣରେ ।
ଇନ୍ଦ୍ରିୟ କୃତ ପାତକ ନାଶଇ ଛୁଇଁଲେ
ଶରୀର ତାପ ବିନାଶେ ଗାତ୍ରେ ବୋଳିଦେଲେ ।

ପରମ ପବିତ୍ର ଯେ ଶ୍ରୀହରି ନିବେଦିତ
ପିତୃ ଦେବ କାର୍ଯ୍ୟେ ଯେହୁ ଦେଲେ ନିଯୋଜିତ ।
ମହାତୃପ୍ତ ହୋଇ ସେହି ପିତୃ ଦେବଗଣ
ବୈକୁଣ୍ଠ ଧାମକୁ ସୁଖେ କରନ୍ତି ଗମନ ।
ଏମନ୍ତ ପବିତ୍ର ବସ୍ତୁ ନାହିଁ ତ୍ରିଭୁବନେ
ନର ରୂପେ ଭୋଜନ କରନ୍ତି ଦେବଗଣେ ।
ଚଣ୍ଡାଳ କୁକୁର କିମ୍ବା କାକ ମୁଖୁଁ ସେବେ
ଶ୍ରୀମହାପ୍ରସାଦ ଅନ୍ନ ଖସିପଡ଼େ କେବେ ।
ପ୍ରଭୁଙ୍କ ଅଧରାମୃତ ସୁ-ପବିତ୍ର ମଣି
ଦେବଗଣ ଗୋଟାଇ ଭୁଞ୍ଜନ୍ତି ସେହିକ୍ଷଣି ।
ତିନିଲୋକେ ଦୁର୍ଲ୍ଲଭ ଅଟଇ ଶ୍ରୀମହାପ୍ରସାଦ
ବିଚାର ପାଞ୍ଚିଲେ ଘଟେ ମହା ଅପରାଧ ।
ଶ୍ରୀମହାପ୍ରସାଦଙ୍କର ଏମନ୍ତ ବଡ଼ାଇ
ଚଣ୍ଡାଳ ହସ୍ତୁ ବ୍ରାହ୍ମଣେ ଖାଆନ୍ତି ଝଡ଼ାଇ ।
ସ୍ୱର୍ଗ ସୁଖ ତ୍ୟାଗ କରି ସର୍ବ ଦେବଗଣ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ କରନ୍ତି ଭ୍ରମଣ ।
ଶ୍ରୀମହାପ୍ରସାଦ ସେବା କରିବାର ପାଇଁ
ଯେ ସାହା ମନ ମଧ୍ୟରେ ଥାଆନ୍ତି ଲୋଭାଇ ।
ଶ୍ରୀହରିଙ୍କର ଯେ ମହା ଅଭିମାନ ଏଥି
କେବା ମାନ୍ୟ କରେ କେବା ଅମାନ୍ୟ କରନ୍ତି ।
ଅମାନ୍ୟ କରିବା ପ୍ରାଣୀ ଲଭେ ଯମଦଣ୍ଡ
ନରକ କୁଣ୍ଡରେ ପଡ଼ି ହୁଏ ଲଣ୍ଡ ଭଣ୍ଡ ।
ସାମାନ୍ୟ ଅନ୍ନ ଭାବିଲେ ଶ୍ରୀମହାପ୍ରସାଦେ
ଅମଙ୍ଗଳ ଘୋଟେ ଆସି ପଡ଼ଇ ବିପଦେ ।
ହରି ଅର୍ଦ୍ଧାଙ୍ଗିନୀ ଲକ୍ଷ୍ମୀ କରନ୍ତି ରନ୍ଧନ
ସୁଧାମୟ ଭୋଗ ଭୁଞ୍ଜନ୍ତି ଶ୍ରୀନାରାୟଣ ।
ସେହି ଯେ ଉଚ୍ଛିଷ୍ଟ ଭୋଗ ସର୍ବପାପ ହରେ
ମହୀରେ ଏମନ୍ତ ବସ୍ତୁ ନାହିଁ କେଉଁଠାରେ ।
ଯେତେ ପ୍ରାୟଶ୍ଚିତ୍ତ ଅଛି ଧରଣୀ ମଣ୍ଡଳେ
ମହାପ୍ରସାଦର ସମ କାହିଁ ଯେ ନ ମିଳେ ।
ସର୍ବ ପ୍ରାୟଶ୍ଚିତ ସାର ଶ୍ରୀମହାପ୍ରସାଦ
ସେବନ କଲେ ପାତକ ଦୂର ହୁଏ ରଦ ।
ଲକ୍ଷ୍ମୀଙ୍କ ସମ୍ପର୍କେ ଯେତେ ପାକକାରୀ ଜନ
ପାକ ଯା କରନ୍ତି ଦୁଷ୍ଟ ନୁହେ କଦାଚନ ।
ବିଷ୍ଣୁଙ୍କ ସେହି ପ୍ରସାଦ ଚଣ୍ଡାଳ ଛୁଇଁଲେ
ଦୋଷ ନାହିଁ ମହିମା ନ ଯାଏ କେଉଁକାଳେ ।

ବୃକ୍ଷ ଆବର ନୀବା ବସ୍ତ୍ର ଆଦିକରି
ପ୍ରସାଦ ଭୋଜନେ କିଛି ନିୟମ ନ ଅଛି ।
ଦରିଦ୍ର କୃପଣ ଧନୀ କିବା ଗୃହୀଜନ
ବେଶୀ ପ୍ରଦେଶୀ ଭିଖାରୀ କିବା ଧନବାନ ।
କାହା ଅଭିମାନ ନାହିଁ ପ୍ରସାଦ ଭୋଜନେ
ଯେ ସେ ମତେ ଭୁଞ୍ଜିଲେ ପାତକ ଯାଏ କେଣେ ।
ଶ୍ରୀମହାପ୍ରସାଦ ସେବନ କଲେ ବିଶ୍ୱାସରେ
ସର୍ବରୋଗ ନାଶେ ପୁତ୍ର ପୌତ୍ର ବୃଦ୍ଧି କରେ ।
ଶ୍ରୀମହାପ୍ରସାଦ ଭୁଞ୍ଜିଲେଟି ଭକ୍ତିଭରେ
ବନ୍ଧ୍ୟା ଆପୁ ଶୁଭଦଏ ଦରିଦ୍ରତା ହରେ ।
ସ୍ୱୟଂ ଶ୍ରୀମୁଖରେ କହିଛନ୍ତି ନାରାୟଣ
ପଣ୍ଡିତମାନେ ଅଭିମାନେ ଯେ କରେ ନିନ୍ଦନ ।
ମହାପ୍ରସାଦର ନିନ୍ଦା ମୁଁ ସହି ନ ପାରେ
ଆପଣେ ମୋ ପ୍ରସାଦକୁ ଦଣ୍ଡବତ କରେ ।
ମୋତେ ନିନ୍ଦାକଲେ ଦୋଷ ନ ଧରିବି ମନେ
ମୋ କୈବଲ୍ୟ ନିନ୍ଦା ନ ସହିବି କଦାଚନେ ।
କୈବଲ୍ୟକୁ ଦଣ୍ଡବତ ନକରେ ଯେ ଜନ
କୁମ୍ଭୀପାକରେ ପଡ଼ଇ ଅନ୍ତେ ସେ ଦୁର୍ଜନ ।
ପ୍ରସାଦ ବିକା କିଣାରେ ନାହିଁ ଯେ ବାରଣ
ଚଣ୍ଡାଳ ବିକଲେ କିଣି ଭୁଞ୍ଜିବ ବ୍ରାହ୍ମଣ ।
ନିୟମ କରି ଭୁଞ୍ଜିଲେ ମୋହର ପ୍ରସାଦ
ବୈକୁଣ୍ଠେ ରହିବ ଅନ୍ତେ ତୁଟାଇ ପ୍ରମାଦ ।
ବାସି ହୋଇଥିଲେ ସୁଦ୍ଧା ଶ୍ରୀକୈବଲ୍ୟ ମୋର
ତାହା ଭୁଞ୍ଜିଲେ ମୁକତି ପାନ୍ତି ନାରୀନର ।
ବହୁଦୂର ନେଲେ ମୋହର ପ୍ରସାଦ
କେବେହେଁ ସେହି ପ୍ରସାଦ ନୁହଇ ଅଶୁଦ୍ଧ ।
ସର୍ବଦା ବିଶୁଦ୍ଧ ଅଟେ ପ୍ରସାଦ ମୋହର
ଅଚିରେ ବିନାଶ କରେ ମହାପାପ ଘୋର ।
ମୋ ପ୍ରସାଦ ଗଙ୍ଗାଜଳ ମାରି ନ ହୁଅଇ
ସାଦରେ ଭୁଞ୍ଜିବେ ନରେ ଯହିଁ ତହିଁ ନେଇ ।
ଦର୍ଶନ ସ୍ପର୍ଶନ ଭୋଜନରେ ପାପ ନାଶେ
ସର୍ବ ସମ୍ପଦ ମିଳଇ ଭୁଞ୍ଜିଲେ ବିଶ୍ୱାସେ ।
ଏମନ୍ତେ କହି ଅଛନ୍ତି ଆପଣେ ଶ୍ରୀହରି
ଶ୍ରୀମହାପ୍ରସାଦ ଏଣୁ ମୁକ୍ତି ଦାନକାରୀ ।
ବୈଦିକ ଅଗ୍ନିରେ ପାକ କରନ୍ତି କମଳା
ମହା ଆନନ୍ଦେ ଭୁଞ୍ଜନ୍ତି ପ୍ରଭୁ ଚକାଡୋଳା ।

ଜଗତ ଜନନୀ ମହାଲକ୍ଷ୍ମୀ ଠାକୁରାଣୀ
ମାକଣାଶାଳରେ ରନ୍ଧନ କରନ୍ତି ଗୃହିଣୀ ।
ଯେହ୍ନେ ସେ ଅମୃତ ପାକ ବାସ ମନୋହର
ଭୁଞ୍ଜନ୍ତି ଶ୍ରୀଜଗନ୍ନାଥ ଯୁଗ ଯୁଗାନ୍ତର ।
କେତେ ଯୁଗ କେତେ ମନ୍ୱନ୍ତର ବହିଯାଏ
ଶ୍ରୀମନ୍ଦିରରେ ଭୁଞ୍ଜୁ ଥାନ୍ତି ଦେବରାୟେ ।
ଏଣୁ ଜାଣି ଥାଅ ଏହି ଶ୍ରୀକ୍ଷେତ୍ର ସମାନ
ସପ୍ତ ଦ୍ୱୀପ ଧରା ମଧ୍ୟେ ନାହିଁ ପୁଣ୍ୟ ସ୍ଥାନ ।
ଲକ୍ଷ୍ମୀ ଠାକୁରାଣୀ ସେହି ବ୍ରହ୍ମ ସନାତନେ
ଅତି ଯତନକରି ନିତ୍ୟ ଭୁଞ୍ଜାନ୍ତି ଆପଣେ ।
ସେହି ଉଚ୍ଛିଷ୍ଟକୁ କହି ଶ୍ରୀମହାପ୍ରସାଦ
ମୁକ୍ତିର କାରଣ ତାହା ଏଥିନାହିଁ ବାଦ ।
ପୁଣ୍ୟ ହୀନ ମାନବର ବିଶ୍ୱାସ ନ ହୁଏ
ଭାଗ୍ୟବନ୍ତ ପ୍ରାଣୀ ସେବା କରି ସୁଖୀହୁଏ ।
ଶ୍ରୀମହାପ୍ରସାଦ ତତ୍ତ୍ୱ କେବା ପାରେ କହି
ଦେବଙ୍କୁ ଯା ଅଗୋଚର ଆହେ ତପୀସାଇଁ ।
ବ୍ୟାସଙ୍କ କୃପାରୁ କିଛି କରୁଛି ବଖାଣ
ସାବଧାନ ହୋଇ ସର୍ବେ ମନ ଦେଇ ଶୁଣ ।
କଳି ଯୁଗେ ପ୍ରାଣୀମାନେ ହୋଇନ୍ତି ପାପାତୁର
ପରଦ୍ରୋହୀ ପରହିଂସା ପରଶ୍ରୀକାତର ।
ପରନାରୀ ପାରେ ରତ ପରଧନହାରୀ
ପର ଅହିତ ଚାହାନ୍ତି ପର ନିନ୍ଦାକାରୀ ।
ପ୍ରଜାଙ୍କୁ ପୀଡ଼ନ୍ତି ଦୁଷ୍ଟ ରାଜ ଏ ନରତ
ଧର୍ମ୍ମ କର୍ମ୍ମ ଛାଡ଼ି କରି ଗ୍ରହଣେ ସେ ରତ ।
ଧର୍ମ୍ମ ପତ୍ନୀ ତେଜି କରନ୍ତି ଯେ ପରଦାର
ତତ୍ତ୍ୱଜ୍ଞାନ ହୀନ ବଣ ପଶୁ ପରକାର ।
ବ୍ରାହ୍ମଣେ ଆପଣା ଧର୍ମ୍ମ ଦୂରେ ଫିଙ୍ଗି ଦେଇ
ଉଦର ଭରଣେ ଭ୍ରମି ହେବେ ଯହିଁ ତହିଁ ।
ଗ୍ରାମ ଯାଜୀ ହୋଇ ଭୂତ ପ୍ରେତଙ୍କୁ ପୂଜିବେ
ପ୍ରେତାନ୍ନ ଭୋଜନେ ମହା ପାପ ଅରଜିବେ ।
ଏ ଯେ ଘୋର କଳିକାଳ କାଳାନ୍ତର ପ୍ରାୟେ
ଶ୍ରୀହରି ଭଜିବେ ନାହିଁ ବ୍ରାହ୍ମଣ ଥୋକାଏ ।
ପାପ କଳିଯୁଗେ ସମସ୍ତଙ୍କ ଗତି ହରି
ସଭିଙ୍କ ଜୀବନ ଏକା ଦାରୁ ରୂପଧାରୀ ।
ଶାଳଗ୍ରାମ କ୍ଷେତ୍ର ଆଦି ଯେତେ ନାରାୟଣ
ନୀଳାଚଳେ ଛନ୍ତି ଜୀବ ଉଦ୍ଧାର କାରଣ ।

ମହାବ୍ଧି ରେ ଆପଣେ ପ୍ରାଣୀଙ୍କ ଉପକାରେ
ଦାରୁ ଦେହ ଧରି ରହିଛନ୍ତି ନୀଳଗିରେ ।
କଳି କଲ୍ମଷ ନାଶନେ ଅମୃତ ଦୃଷ୍ଟିରେ
ବିଜେ କରିଛନ୍ତି ରତ୍ନ ସିଂହାସନ ପରେ ।
ମହାମହା ପାପୀ ତାପୀମାନଙ୍କୁ ଶ୍ରୀହରି
ତାରନ୍ତି ମହାପ୍ରସାଦ ଦାନେ ଦୟାକରି ।
ଦର୍ଶନ ସ୍ପର୍ଶନ ମହାପ୍ରସାଦ ସେବନେ
କଳି କବଳରୁ ନିସ୍ତରନ୍ତି ପାପୀଜନେ ।
ଶ୍ରୀଜଗନ୍ନାଥଙ୍କୁ ସ୍ତବ କରି ଯେଉଁଜନ
ପ୍ରଣାମ ଆଚରି କରେ କୈବଲ୍ୟ ଭକ୍ଷଣ ।
ଜନ୍ମ ଜନ୍ମାନ୍ତର ପାପ ଧ୍ୱଂସି ତାର ଦୂରେ
ଅଚିରେ ମନକାମନା ତାର ନିଶ୍ଚେ ପୂରେ ।
ହରିଙ୍କ ଉଚ୍ଛିଷ୍ଟ ବ୍ୟାପ୍ତ କଳେବର ଯାର
ପାପ ପଶି ନ ପାରଇ ଅଙ୍ଗରେ ତାହାର ।
ଶ୍ରୀଜଗନ୍ନାଥଙ୍କ ପ୍ରସାଦ ଯେ ବିମଳାଇ
ମହାପ୍ରସାଦ କରନ୍ତି ପ୍ରଥମରେ ଖାଇ ।
ତଦନ୍ତେଣ ଅନ୍ୟମାନେ ଦେବ ଦେବୀମାନେ
ସମର୍ପଣେ ଭୋଜନ କରନ୍ତି ଯେ ବିଧାନେ ।
ପରମ ପବିତ୍ର ବୋଲି ଜାଣ ସେ କୈବଲ୍ୟ
ଚଉଦ ବ୍ରହ୍ମାଣ୍ଡେ ଅନ୍ୟ ନାହିଁ ତାହାତୁଲ୍ୟ ।
ପ୍ରଭୁଙ୍କ ଉଚ୍ଛିଷ୍ଟ ଅଟଇ ମୁକତିର ହେତୁ
ଭବସାଗର ତରିବେ ସେହୁ ମହାସେତୁ ।
ଆପେ ଜଗନ୍ନାଥ ଏଥି କରନ୍ତି ଭୋଜନ
ଅନ୍ୟର ଦେଖନ୍ତି ମାତ୍ର ଡାକିଣୀ ନୟନ ।
ପୂର୍ବେ ଏକ ଯୋଗୀ କଲା ହରିଙ୍କି ପ୍ରାର୍ଥନା
ଅବତରି କରି ସ୍ୱ-ଉଚ୍ଛିଷ୍ଟ ବିତରଣା ।
ସେ ନିର୍ମାଲ୍ୟ ଭୁଞ୍ଜି ଭବେ ସବୁଜୀବଚୟେ
ତୁମ୍ଭ ମାୟାକୁ ଜିଣିବେ ନିଃଶଙ୍କ ହୃଦୟେ ।
ଅଙ୍ଗୀକାର କରି କହିଥିଲେ ଅମ୍ବିକାରେ
ଦେବ ନର ପଶୁ ପକ୍ଷୀ ଯେ ପ୍ରାଣୀ ସକଳେ ।
ହେଲେ ଶ୍ରୀମହାପ୍ରସାଦ ପାଇବେ ସକଳେ
ତାହାକୁ ଦୁର୍ଲ୍ଲଭ ନ ହୋଇବ କେତେବେଳେ ।
ଲକ୍ଷ୍ମୀସଙ୍ଗେ ଜଗନ୍ନାଥ ଶ୍ରୀକ୍ଷେତ୍ରେ ବିଳସି
ମହାପାପୀଙ୍କି ତାରନ୍ତି ପ୍ରସାଦରେ ତୋଷି ।
ବେଦମଧ୍ୟେ ଅଛି ଏହି ସକଳ କଥନ
ବେଦବାଣୀ ରଖି ଲୀଳା କରନ୍ତି ବଖାଣ ।
ବେଦରକ୍ଷା ହେତୁ ଯୁଗେ ଯୁଗେ ଅବତାର
କେବେ ନ କରନ୍ତି ବେଦ ବିରୁଦ୍ଧ ଆଚାର ।
ବିରୁଦ୍ଧ ଆଚାର ଯଦି ଆପଣେ କରିବେ
ସକଳ ଜଗତ ତେବେ ବିପଥେ ଚଳିବେ ।
ଏଣୁକରି ବେଦେ ଯାହାକହେ ଆଚରଣ
ସେହି ପରମାଣେ ଚଳିବେ ଯେ ଜୀବଗଣ ।
ଶ୍ରୀମହାପ୍ରସାଦ ତତ୍ତ୍ୱ ଅଟଇ ଏମନ୍ତ
ଶ୍ରବଣ କଲେତ ଭଲେ ମଙ୍ଗ ଉପାବନ୍ତ ।
ଏମନ୍ତେ ଜୈମିନି ଋଷି କହିଲେ ବାରତା
ଶୌନକାଦି ମୁନିଶୁଣି ଆନନ୍ଦ ଲଭିଲେ ।
ଶ୍ରୀଜଗନ୍ନାଥ ପୁରାଣ ସୁଧାହୁଁ ମଧୁର
ସୁଜ୍ଞଜନମାନେ ଶୁଣି ସଂସାରୁ ନିସ୍ତର ।
ମୁଁ ଅଟେ ଅଧମ ଜନ କୃଷ୍ଣଭକ୍ତ ହୀନ
ନଜାଣଇ ମନ୍ତ୍ର ସ୍ତୋତ୍ର ଅର୍ଚନ ବନ୍ଦନ ।
ଶ୍ରୀଗୁରୁ କୃଷ୍ଣବୈଷ୍ଣବ ଆଜ୍ଞାକଲେ ଯାହା
ଭାଷା ପ୍ରବନ୍ଧରେ ଦାସେ ବର୍ଣ୍ଣିଲଇଁ ତାହା ।
ସଦାସ୍ୱ ମୋହର ଏକା କମଳା ବିଳାସ
ତାଙ୍କର କୃପାରୁ ଏହି ପୁରାଣ ପ୍ରକାଶ ।
ପଢ଼ିଶୁଣି ଭକ୍ତଜନେ ହୁଅନ୍ତୁ ସନ୍ତୋଷ
କୃତାଞ୍ଜଳି ଭାବେ ଭଣେ ବଇଷ୍ଣବ ଦାସ ।

— X —

## ଶ୍ରୀମହାପ୍ରସାଦ ମାହାତ୍ମ୍ୟ ପ୍ରସଙ୍ଗେ ଶିବ ନାରଦ ସମ୍ବାଦ

### ଶୌନକ ଉବାଚ

ଶୌନକ ଆଦି ସକଳ ମୁନି ଏଥିଅନ୍ତେ
ପୃଚ୍ଛାକଲେ ଜୈମିନିଙ୍କି ଅତି ଶ୍ରଦ୍ଧାଚିତ୍ତେ ।
ଆଗୁଁ ଯାର ହୋଇ ବୃଦ୍ଧ ମୁନି ଶଉନକ
ପଚାରନ୍ତି ମୃଦୁସ୍ୱରେ ହେ ଗ୍ରନ୍ଥ ପାଠକ ।
ଭକତ ବତ୍ସଳ ହରି ବ୍ରହ୍ମାଣ୍ଡ ଠାକୁର
କି କାରଣେ ଅମ୍ବିକାରେ କଲେ ଅଙ୍ଗୀକାର ।
ଦେବ ନର ପଶୁ ଆଦି ପାଇବେ ପ୍ରସାଦ
ସେହି ଉପାଖ୍ୟାନ କହି ଘୁଞ୍ଚାଅ ବିଷାଦ ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଚମତ୍କାର ବାଣୀ
ଦିନେକ ବୈକୁଣ୍ଠେ ଗଲେ ଯେ ନାରଦ ମୁନି

ପ୍ରଣମି କମଳାଙ୍କର କମଳ ଚରଣେ
ନିଜଇଷ୍ଟ ବାଞ୍ଛା ଜଣାଇଲେ ହର୍ଷମନେ ।
ବୋଇଲେ ଶୁଣ ଲୋ ମାତ ମୋର ମନକଥା
ସଦାଘାଣ୍ଟି ହୁଏ ହୃଦ ନ ଘୁଞ୍ଚଇ ବ୍ୟଥା ।
ଜଗତେ ମୋନାମ କହନ୍ତି ଯେ କୃଷ୍ଣଦାସ
ମାତ ପୃଷ୍ଟି ନୋହିଲା ମୋହର ମନଆଶ ।
ପ୍ରଭୁଙ୍କ ଅଧରାମୃତ ସ୍ୱାଦୁ ସୁଧାସାର
ତାହା ଭୁଞ୍ଜିବାକୁ ଶ୍ରଦ୍ଧା ସର୍ବଦା ମୋହର ।
ତା ପଦ ଦଅନ୍ତ ମାତ କଣିକାଏ ମୋତେ
ତେବେ ଜାଣନ୍ତି କରୁଣା ଅଛି ନିଜସୁତେ ।
ମାତାହୋଇ ସୁତେ କେବା କରେ କି ବଞ୍ଚନା
ପିତାଙ୍କ ଉଚ୍ଛିଷ୍ଟେ ଆଶା ତନୟର ସିନା ।
ଶୁଣି ବିଷାଦ ଚିତ୍ତରେ କହନ୍ତି କମଳେ
ତା ଦେଇ ନପାରେ ମୋତେ ସ୍ୱାମୀ ମନାକଲେ ।
କହିଛନ୍ତି ଜଗନ୍ନାଥ ମୋରେ କାନେ କାନେ
ମୋହର ଅଇଁଠା କେବେ ଦେବନାହିଁ ଆନେ ।
ଏଣୁ ହେ ନାରଦ ଦୁଃଖ କରନାହିଁ ମନେ
ଉଚ୍ଛିଷ୍ଟ ଦେବାକୁ ଆଜ୍ଞା ନାହିଁ କେଉଁଜନେ ।
ମୋହର ଅସାଧ ବତ୍ସ କହୁଅଛି ସତ୍ୟ
ଦେଇ ନପାରେ ପ୍ରଭୁଙ୍କ ଶ୍ରୀଅଧରାମୃତ ।
ଏମନ୍ତ ଶୁଣି ନାରଦ ବିରସ ବଦନେ
କାନ୍ଦି କାନ୍ଦି ପ୍ରବେଶିଲେ ଯାଇ ଘୋରବନେ ।
ମହା ଉଗ୍ରତପ ତହିଁ କଲେ ମୁନିବର
ତପସ୍ୟାରେ ମଗ୍ନହେଲେ ଛାଡ଼ିଣ ଆହାର ।
ଦ୍ୱାଦଶ ବରଷକାଳ ତପ ଆଚରିଲେ
ଆପଣା ଦେହକୁ ମୁନି କ୍ଷୀଣକରି ଦେଲେ ।
ମନୁଷ୍ୟଙ୍କ ବରଷକ ଦେବତାଙ୍କ ଦିନେ
ଦେବଙ୍କମତେ ଦ୍ୱାଦଶ ବରଷ ଏସନେ ।
ତପେ ରତ ହେଲେ ସେ ଦେବର୍ଷି ମହାମତ
ଜଳ ସ୍ପରଶ ନକଲେ ବ୍ରହ୍ମସୁତ ଯେତ ।
ତାଙ୍କ ତପସ୍ୟାରେ ଲକ୍ଷ୍ମୀ ଅସ୍ଥିର ହୋଇଲେ
ତପସ୍ଥାନେ ଯାଇଦେବୀ ନାରଦେ କହିଲେ ।
ହରିଙ୍କ ଉଚ୍ଛିଷ୍ଟବିନେ ମାଗିବ ଯା ବର
ସେହିବର ଯାଚଦେବି ମାଗ ନିହ ସତ୍ୱର ।
ନାରଦ ବୋଇଲେ ଅନ୍ୟେ ନାହିଁ ପ୍ରୟୋଜନ
କି ବଳ ଅଧରାମୃତେ ଟାକିଛି ମୋ ମନ ।
ନୋହିବେ ନଦେଇ ନ ମାରିବ ଯେ ଅଧରାମୃତ
ଏତୋଚ୍ଚ୍ଚି ବୋଲି ଗୋ ବାହୁଡ଼ି ଯାଅ ଆଗୋମାତ ।
ନିଜର ଅସାଧ ବୋଲି ଲକ୍ଷ୍ମୀ ଫେରିଗଲେ
ତହୁଁ ମୁନିବର ଏକ ଉପାୟ ଘାଞ୍ଚିଲେ ।
ଗୁପତରେ ଦାସୀବେଶ ଧରିଲେ ଆପଣେ
ଯାଇଣ ରହିଲେ ସେହି ବୈକୁଣ୍ଠ ଭୁବନେ ।
ରାତି ପାହାନ୍ତି ଆଗରୁ ଉଠି ପ୍ରତିଦିନ
ଝାଡ଼ିକି ଓଳାନ୍ତି ପାଟ ଅଗଣା ବଦନ ।
ଅନ୍ୟ ଅନ୍ୟ ଦାସୀମାନେ ଦେଖନ୍ତି ଯେ ତହିଁ
ଅଗଣା ସଫାର ଭଲରୂପେ ଅଛି ହୋଇ ।
କିଏ ଓଳାଇଛି ବୋଲି ଦାସୀମାନେ ସର୍ବେ
ପରସ୍ପରେ କଥାହୁଅନ୍ତି ଚମତ୍କାର ଭାବେ ।
ଏହିରୂପେ ହେଉଥାନ୍ତି ପ୍ରତି ପ୍ରତି ଦିନ
ନ ଜାଣନ୍ତି କେହି ଏ ମରମ ପରିବାର ।
ଏକଦିନେ କମଳାଙ୍କ ପାଶେ ଦାସୀମାନେ
ଜଣାଇଲେ କରଯୋଡ଼ି ସର୍ବେ ସାବଧାନେ ।
ଆହେଗୋ ଠାକୁରାଣୀ ଶୁଣ ବିଚିତ୍ର କଥନ
କିଏ ଜଣେ ନିତ୍ୟକରେ ଅଗଣା ମାର୍ଜନ ।
ଆମ୍ଭମାନଙ୍କ ମଧ୍ୟରୁ କେହି ନ ଓଳାଉଁ
ଝାଡ଼ିବା ପାଇଁଯାନ୍ତେ ଉଜ ଦେଖୁଥାଉଁ ।
ପ୍ରତିନିତ କିଏ ଆସି ଓଳାଏ ଅଗଣା
ଆମ୍ଭ କାହାରିକି ତାହା ନ ହେଉଛି ଜଣା ।
ଦାସୀଙ୍କ ମୁଖରୁ ଶୁଣି କଥା ଆଚମ୍ବିତ
ଶ୍ରୀବୈକୁଣ୍ଠ ଯାଆଁ ରାଣୀ ମଣିଲେ ଚକିତ ।
କଉତୁକ ଦେଖିବାକୁ ଲକ୍ଷ୍ମୀ ସେହି ରାତେ
ଦାସୀମାନଙ୍କୁ ଘେନାଇଁ ରହିଲେ ଜାଗ୍ରତେ ।
ରାତି ପାଉ ନ ପାଉଣୁ ସେ ନାରଦ ମୁନି
ଦାସୀ ବେଶରେ ଆସିଲେ ଝାଡ଼ୁମୁଠା ଘେନି ।
ତରତର ହୋଇ ମୁନି ଓଳାଇଲେ ତଥି
କେହି ନ ଦେଖୁଣୁ ଚଳିଯିବେ ପାଞ୍ଚିଛନ୍ତି ।
ନିର୍ମଳ ରୂପେ କରନ୍ତେ ଅଗଣା ସଫାର
ତାଦେଖି କମଳା ହେଲେ ଅତି ଚମତ୍କାର ।
ବାହାର ହୋଇ ତାହାଙ୍କୁ ପୁଚ୍ଛିଲେ କାରଣ
ସତ୍ୟକରି କହ ତୁମ୍ଭେ କିଏ କିସ ନାମ ।
ଲକ୍ଷ୍ମୀଙ୍କ ବଚନେ ମୁନି ପଡ଼ିଲେ ଚରଣେ
ବ୍ରଜବାସୀ ବିଷ୍ଣୁବ ଦାସ ଏତେ ଭଣେ ।

ଏଥୁ ଅନ୍ତେ ସମାଚାର ଶୁଣ ସାଧୁଜନେ
ପରମ କୌତୁକ କଥା କହୁଛୁ ଶୀଧାନେ ।
ଲକ୍ଷ୍ମୀଙ୍କ ବଚନ ଶୁଣି ବ୍ରହ୍ମାଙ୍କ ନନ୍ଦନ
ମଥା ନୁଆଇଁ କହିଲେ କରଯୋଡ଼ି ପୁଣ ।
ଛଦ୍ମବେଶେ ଦାସୀ ରୂପେ ମୁଁ ଅଟେ ନାରଦ
ନିତ ଏ କାର୍ଯ୍ୟ କରଇ କ୍ଷମ ଅପରାଧ ।
କେବଳ ଶ୍ରୀହରିଙ୍କର ଉଚ୍ଛିଷ୍ଟେ ମୋ ଆଶା
ନିଷେଧିବା ହେତୁ ମାଗୋ ହୋଇଛୁ ନିରାଶା ।
ଶୁଣି ଭୟେ ଥରିଲେ ସେ ବୈକୁଣ୍ଠ ଈଶ୍ୱରୀ
ନାରଦଙ୍କୁ କହିଲେ ସେ କାଳେ ବୋଧ କରି ।
ଆହା ବତ୍ସ ପ୍ରଭୁଙ୍କ ଅଧରାମୃତ ପାଇଁ
ଅଗଣା ଓଳାଉ ଅଛ ଦାସୀ ବେଶ ହୋଇ ।
ଯେବଣ ହେତୁ ହେ ମୁନି କରୁଛ ଯତନ
ମୋ ପକ୍ଷେ ଅସାଧ୍ୟ ତାହା ଜାଣ ବାପଧନ ।
ତଥାପି ତୁମ୍ଭ ଲାଗି ମୁଁ ଯତନ କରିବି
ସାଧ୍ୟ ହେଲେ ସେ ଉଚ୍ଛିଷ୍ଟ ନିଶ୍ଚେ ଆଣିଦେବି ।
ଏତେ ବୋଲି ଦୁଃଖିତା ହୋଇଣ ଜଗନ୍ମାତା
ମନେ ଭାବିଲେ କେମନ୍ତେ କହିବି ଏକଥା ।
ଭାବି ଭାବି ଅତି ଦୁଃଖେ ମୁଖ ଶୁଖାଇଲେ
ବିରସ ହୋଇ ପ୍ରଭୁଙ୍କ ଶ୍ରୀଛାମୁଁକୁ ଗଲେ ।
କମଳାଙ୍କୁ ବିରସ ଦେଖିଣ ନାରାୟଣ
ବ୍ୟସ୍ତ ହୋଇ ପଚାରିଲେ ଦୁଃଖର କାରଣ ।
କହ ପ୍ରିୟେ କାହିଁ ପାଇଁ ଶୁଖାଇଛ ମୁଖ
ମନେ ଉଦୟ ହୋଇଛି ଅବା କେଉଁ ଦୁଃଖ ।
ତହୁଁ ମଥାକୁ ନୁଆଇଁ ଜଗତ ଜନନୀ
ମୃଦୁସ୍ୱରେ ଜଣାଇଲେ ସୁମଧୁର ବାଣୀ ।
ହେ ନାଥ ଶୁଣିମା ହେଉ ମୋର ନିବେଦନ
ଜଣାଉଛି ଶ୍ରୀଛାମୁଁରେ ଆହେ ପ୍ରାଣଧନ ।
କେହି ଯେବେ କିଛି ମାଗି ଅନୁସରୁ ଥାଏ
ତାହାକୁ ସେ ପଦାର୍ଥ ନ ଦେଲେ କିସ ହୁଏ ।
ଲକ୍ଷ୍ମୀଙ୍କ ମୁଖୁଁ ଏକଥା ଶୁଣି ନାରାୟଣ
ବୋଇଲେ ଆଗୋ କମଳେ କହୁଛି ତା ଶୁଣ ।
ସିଉକାର ବୃଥା ଯଦି ହୁଅଇ ଗୋ ସତି
ମଙ୍ଗଳ ନୁହଇ ନିଶ୍ଚେ ହୁଏ ଅଧୋଗତି ।
ପୁଛିବା କାରଣ କିବା କହ ପ୍ରାଣେଶ୍ୱରୀ
ଶୁଣି କହନ୍ତି କମଳା ବିନୟ ଆଚରି ।
ପୂର୍ବେ ମନା କଲ ତୁମ୍ଭ ଉଚ୍ଛିଷ୍ଟ ବିଷୟେ
କାହାକୁ ନ ଦେଇ ତାହା ଆଜ୍ଞା ଭଙ୍ଗ ଭୟେ ।
ଏହି କାରଣେ ନାରଦ ଘୋର ତପ କଲେ
ପୁଣି ଗୁପ୍ତ ଦାସୀ ରୂପେ ଅନେକ ସେବିଲେ ।
ତାହାଙ୍କ ବିକଳ ମନ ଦେଖି ଦୟା କଲି
ପ୍ରସାଦ ଦେବି, ମନରେ କରି ମୁଁ କହିଲି ।
ଯଦି ଅଛି ଅନୁମତି ଏ ପ୍ରାର୍ଥନା ମୋର
ତଥାପି ଦୟା କରା ଲକ୍ଷ୍ମୀକର ପ୍ରାଣେଶ୍ୱର ।
ଏ ଦାସୀପରେ ଯେବେ ସ୍ନେହ ଥାଏ ଦୟାମୟ
ନାରଦେ ପ୍ରସାଦ ଦିଅ ହୋଇଣ ସଦୟ ।
କମଳାଙ୍କ ଅସମ୍ଭବ ଅଙ୍ଗୀକାର ଶୁଣି
ମନେ ମନେ ଚିନ୍ତିତ ହୋଇଲେ ଚିନ୍ତାମଣି ।
ନାରଦ ଚରିତ ସବୁ ଜାଣନ୍ତି ଆପଣେ
ହସି ବୋଇଲେ ପ୍ରିୟାଙ୍କୁ ମଧୁର ବଚନେ ।
ଯଦି ମୋ ଉଚ୍ଛିଷ୍ଟ ଅନ୍ୟ କେ ପାଇ ନ ପାରେ
ତେବେ ନାରଦଙ୍କୁ ଦେଲି ତୁମ୍ଭରି କଥାରେ ।
ବାଞ୍ଛା ପୂର୍ଣ୍ଣ ହେଲା ଜାଣି ଲକ୍ଷ୍ମୀ ହର୍ଷଚିତ୍ତେ
ଚୌଷଠୀ ଅନ୍ନ ବ୍ୟଞ୍ଜନ ରାନ୍ଧିଲେ ତୁରିତେ ।
ସୁଖେ ତାହାକୁ ଭୁଞ୍ଜିଲେ ପ୍ରଭୁ ନାରାୟଣ
ଉଚ୍ଛିଷ୍ଟ ଘେନି କମଳା ଚଳିଲେ ବହନ ।
ତର ତର ହୋଇ ଗଲେ ମୁନି ସନ୍ନିଧାନେ
ନିଅ ବୋଲି ଦେଲେ ତାଙ୍କ ହରଷ ବଦନେ ।
ସେ ମହାଦୁର୍ଲ୍ଲଭ ଦ୍ରବ୍ୟ ପାଇ ମୁନିବର
ଲକ୍ଷ୍ମୀଙ୍କ ଚରଣ ତଳେ କଲେ ନମସ୍କାର ।
ଶ୍ରୀମହାପ୍ରସାଦ ମସ୍ତକରେ ଛୁଆଁଇଲେ
ଭୁଞ୍ଜି ଆନନ୍ଦେ ନିଜକୁ କୃତାର୍ଥ ମଣିଲେ ।
ଲକ୍ଷ୍ମୀ ନାରାୟଣଙ୍କର ପାଦପଦ୍ମେ ନମି
ଆନନ୍ଦେ ଚଳିଲେ ତହୁଁ ଘେନିଣ ମେଲାଣି ।
ଶ୍ରୀମହାପ୍ରସାଦ ଭୁଞ୍ଜି ମହା ମୁନିବର
ଧାଇଲେ ଉଜ୍ଜ୍ୱଳ ତେଜ ଯେସନେ ଭାସ୍କର ।
ହରି ପ୍ରେମାନନ୍ଦେ ଭୋଳ ହୋଇ ମହାଯତି
ବୀଣା ବାଇ ନାଚି ନାଚି କରୁଛନ୍ତି ଗତି ।
ହରିଗୁଣ ଗାନେ ମୁନି ମହା ମତ୍ତ ଆଳୀ
ଶିବଙ୍କ ନିକଟେ ଚଳିଗଲେ ମନେ ଭାଳି ।
ଶ୍ରୀହରିଙ୍କ ଭାବ ପ୍ରେମେ ହୋଇ ଗଦ ଗଦ
ବୀଣା କହେ ମହାନନ୍ଦେ ଗମନ୍ତି ନାରଦ ।

ମଧ୍ୟାହ୍ନକାଳେ ମୁନିବର କୈଳାସ କନ୍ଦରେ
ହସ୍ତ ଜିବେଁ ଅଞ୍ଜ ଶ୍ରୀବିଷ୍ଣୁ ପ୍ରସାଦରେ ।
ଶିବଙ୍କ ଚରଣେ ଯାଇ କଲେ ନମସ୍କାର
ସର୍ବାଙ୍ଗ ଯାକେ ଉଚ୍ଛଳେ ସାତ୍ତ୍ୱିକ ବିକାର ।
ନାରଦ ମୁନିଙ୍କି ଦେଖି ଧ୍ୟାନେ ଉମାପତି
ଉରତଳରେ ଆଲିଙ୍ଗନ କଲେ ମୋ ପ୍ରୀତି ।
ଜାଣି ପାରିଲେ ମହେଶ ନାରଦଙ୍କ ଭାବ
ବିସ୍ମରିଲେ ହରି ପ୍ରେମେ ବାଳ ମୁନିଧବ ।
ପ୍ରୀତିରେ ବୋଇଲେ ନାରଦଙ୍କ ମୁଖ ଚୁମ୍ବି
ଆଜି ଏ ବିଚିତ୍ର ପ୍ରୀତି ତୁମ୍ଭର କିମ୍ପାଇଁ ।
ଆନନ୍ଦମୟ ତୁମ୍ଭର ମଞ୍ଜୁଷ୍ଟି ଉଜ୍ଜ୍ୱଳ
ଅନର୍ଗଳ ପ୍ରେମ ଅଶ୍ରୁ ନୟନୁ ଯାଏ ଗଳ ।
ରୋମାଞ୍ଚ ପୁଲକ ସ୍ୱେଦ ପୂରି ଅଛି ଅଙ୍ଗେ
ଏ ଭାବ ଉଦୟ ହେବ କେବଣ ପ୍ରସଙ୍ଗେ ।
ହସି ଗଦ ଗଦ ସ୍ୱରେ କହିଲେ ନାରଦ
ଶ୍ରବଣ କରନ୍ତୁ ମୋର ଗୁରୁ ସଦାନନ୍ଦ ।
ଶ୍ରୀଚରଣ ତଳେ ଜଣା କରିବାର ପାଇଁ
ହେ ପ୍ରଭୁ ତବ ଛାମୁଁକୁ ଆସିଛି ମୁଁ ଧାଇଁ ।
କଲ୍ପତରୁ ଗୁରୁଦେବ ଶିଷ୍ୟ ମୁଁ ତୁମ୍ଭର
ଅସଂଶୟ କଥା ପ୍ରଭୁ ଅଗାଧ ତହିଁର ।
ସେ କେବଳ ପଦତଳ ସ୍ମରଣ ପ୍ରଭାବ
ବିବରଣ କହେଁ ଶୁଣ ଯେଣୁ ଏ ମୋ ଭାବ ।
ଶ୍ରୀପତିଙ୍କର ଅଧରାମୃତ ହେ ଗୋସାଇଁ
ତୁମ୍ଭ ଅନୁଗ୍ରହରୁ ସେ ଭୁଞ୍ଜି ଅଛି ମୁହିଁ ।
କି କହିବ ଶ୍ରୀଛାମୁଁରେ ଆହେ ଅନ୍ତର୍ଯ୍ୟାମୀ
ବହୁ କ୍ଳେଶେ ଦୟା କଲେ ଜଗତର ସ୍ୱାମୀ ।
ଶୁଣି ମହେଶ ବହୁତ ପ୍ରଶଂସି ନାରଦେ
ଭାବେ ମଜ୍ଜି ତହୁଁ କୋଳ କଲେ ପ୍ରେମାନନ୍ଦେ ।
ବୋଇଲେ ସେ ଦୁର୍ଲ୍ଲଭ ପଦାର୍ଥ ଆହେ ବତ୍ସ
ଭୁଞ୍ଜି ସାରି ଅବଶିଷ୍ଟ କାହିଁ ରଖି ଅଛ ।
ସେ ଅପୂର୍ବ ଦ୍ରବ୍ୟ ଏବେ ମୋତେ ଦିଅ କିନା
ପ୍ରିୟ ଶିଷ୍ୟ ତୁମ୍ଭେ ମୋତେ ନ କର ବଞ୍ଚନା ।
ନାରଦ ବୋଇଲେ ତହୁଁ ହେ ଗୁରୁଗୋସାଇଁ
ଯାହା ଦେଇଥିଲେ ମୋତେ ଦେବୀ କମଳାଇ ।
ସେ ଅଧରାମୃତ ସବୁ କରିଛି ସେବନ
ଅବଶିଷ୍ଟ ଆଣିନାହିଁ ଆହେ ତ୍ରିଲୋଚନ ।

ବହୁକ୍ଳେଶେ ପାଇଲି ମୁଁ ସେ ବିଷ୍ଣୁ ଉଚ୍ଛିଷ୍ଟ
କି କହିବି ମୋର ସେଥିଁ ତପସ୍ୟାର କଷ୍ଟ ।
ଶିବ ବୋଲନ୍ତି ହେ ମୁନିବର ଧନ୍ୟ ଧନ୍ୟ
ତ୍ରୈଲୋକ୍ୟ ଯାକରେ ତୁମ୍ଭେ ମହାଭାଗ୍ୟବାନ ।
ବ୍ରହ୍ମାଦି ଦେବଙ୍କୁ ଯାହା ଅତ୍ୟନ୍ତ ଦୁର୍ଲ୍ଲଭ
ତୁମ୍ଭପକ୍ଷରେ ହୋଇଲା ସେ ବସ୍ତୁ ସୁଲଭ ।
ଶ୍ରୀବୈକୁଣ୍ଠନାଥଙ୍କର ଭୁକ୍ତ ଅବଶେଷ
ଅନନ୍ତ ମହିମା ତାର କହିନୋହେ ଶେଷ ।
ଗୁପ୍ତରହୁଁ ଗୁପତ ଯେ ସେ ପ୍ରସାଦତତ୍ତ୍ୱ
ସାଧୁ ସାଧୁ ହେ ନାରଦ ଭୁଞ୍ଜିଲ ଆପେ ତ ।
ବିଷ୍ଣୁଭୁକ୍ତ ଅବଶେଷ ବିଷ୍ଣୁପଦ ଜଳ
ପ୍ରେମଭକ୍ତିର ଅଟଇ ସେ ଜନମ ସ୍ଥଳ ।
ଯେଣୁ ତାହା ଆସ୍ୱାଦନ କରିହେ ନାରଦ
ହରି ପ୍ରେମଭାବେ ହେଉଅଛ ଗଦ ଗଦ ।
ପ୍ରେମ ଅଶ୍ରୁରେ ନୟନ ତବ ଜର ଜର
ସର୍ବାଙ୍ଗେ ପୂରିଛି ଅଷ୍ଟସାତ୍ତ୍ୱିକ ବିକାର ।
ବିଷ୍ଣୁଙ୍କ ଉଚ୍ଛିଷ୍ଟ ଗୁଣ କେ କହି ପାରିବ
ଯେ ଭୁଞ୍ଜିବ ତା ଅଧୀନ ଆପଣେ କେଶବ ।
ଭକ୍ତିଭାବେ ରତ ଥିଲ ବିଷ୍ଣୁ ପୂଜନରେ
ତେଣୁ ସେ ଅଧରାମୃତ ମିଳିଲା ତୁମ୍ଭରେ ।
ମନପୂତ କରି ନିଜେ ତୁମ୍ଭେ ଆହେ ବତ୍ସ !
ହରିଙ୍କ ମହାଭାବରେ ଉନ୍ମତ୍ତ ହେଉଛ ।
ଯେବଣ ଅନ୍ନାଦି ଲକ୍ଷ୍ମୀ କରନ୍ତି ପଚନ
ଜନାର୍ଦ୍ଦନ ସ୍ୱୟଂ ଯାହା କରନ୍ତି ଭକ୍ଷଣ ।
ସେ ଉଚ୍ଛିଷ୍ଟ ଭୁଞ୍ଜି ଅଛ ଯତ୍ନ ସହକାରେ
ଅବଶିଷ୍ଟ ଅଛି ଯେବେ ଦିଅ ମୁନି ମୋରେ ।
ବଡ଼ଆଶା ରହିଅଛି ତହିଁରେ ମୋହର
ପ୍ରିୟଶିଷ୍ୟ ତୁମ୍ଭେ ମୋତେ ବଞ୍ଚନା ନକର ।
ଶ୍ରୀହରିଙ୍କ ଆତ୍ମା ମୁହିଁ ନିଜେ କହୁଥାନ୍ତି
ମାତ୍ର ଶ୍ରୀଅଧରାମୃତ କେବେ ନ ଦିଅନ୍ତି ।
ଶରଧା ବଳଇ ମୋର ବିଶେଷେ ତହିଁରେ
ଦିଅ ଦିଅ ମୁନିବର କଣିକାଏ ମୋରେ ।
ଏମନ୍ତ ଶୁଣି ଲଜ୍ଜିତ ହୋଇ ମୁନିବର
ମଥାତଳ ହସ୍ତକୁ ଦେଖିଲେ ତାହାଙ୍କର ।
ନଖକୋଣେ ଅଳ୍ପମାନ ସେ ପ୍ରସାଦ-ବିନ୍ଦୁ
ତୋଷମନେ ଦେଲେ ନିଅ ବୋଲି କୃପାସିନ୍ଧୁ ।

ତାହାପାଇ ହର୍ଷମତି ହେଲେ ଗଙ୍ଗାଧର
ଆନନ୍ଦରେ ଶିରେ ଲଗାଇଣ ଚନ୍ଦନର ।
ବହୁତ ସ୍ତବ କରଣ ଭୁଞ୍ଜିଲେ ମହେଶ
ବଗୁରଲେ ଏତେଦନେ ପୂରିଲା ମୋ ଆଶ ।
ପ୍ରେମାନନ୍ଦେ ସଦାନନ୍ଦ ହୋଇଲେ ମଗନ
ଉଚ୍ଛୁଳିଲା ନେତ୍ରନୀର ନୋହେ ସମ୍ଭରଣ ।
ସାତ୍ତ୍ୱିକାଦି ନାନାବିଧ ଭାବ ସଞ୍ଚରିଲା
ହର୍ଷେ ମୁନି ସଙ୍ଗେ ନୃତ୍ୟ ଆରମ୍ଭିଲେ ଭୋଳା ।
ଶଙ୍କାକାର ପଦଭର ପାରେ ସହିବାରେ
ବ୍ରହ୍ମଅଣ୍ଡ ଖଣ୍ଡ ଖଣ୍ଡ ହୁଏ ହୁଂ ହୁଂକାରେ ।
ଅତିବ୍ୟସ୍ତ ହୋଇ ସସ୍ତ କୂର୍ମ୍ମଶେଷ ଗୃହେ
ବସୁମତୀ କମ୍ପବତୀ ଅମ୍ବିକାକୁ କହେ ।
ତା'ଶୁଣି ଉମା ବହନ ଶିବପାଶେ ଗଲେ
ହେ ପ୍ରଭୁ ଏ ଉନମାଦ କିହେତୁ ବୋଇଲେ ।
କେବେତ ନହୁଅ ନାଥ ଏପରି ବାଉଳା
ଆଜ କମ୍ପା ନାଚ କାହାଭବେ ହୋଇ ଭୋଳା ।
ତୁମ୍ଭ ପାଦଭାରେ ଧରା ହୁଏ ଟଳମଳ
ଥରହର ହେଉଛନ୍ତି ପ୍ରାଣୀ ଯେ ସକଳ ।
ନାରଦଙ୍କ ସାଥେ କରି ଡମ୍ବରୁ ବାଦନ
ତାଣ୍ଡବେ ହୋଇଛ ରତ କମ୍ପା ତ୍ରିଲୋଚନ ।
ଏ ମରମ ନାଥ ମୋତେ ଫିଟାଇଣ କହ
କି ନିମନ୍ତେ ଏନ୍ତେ ଅସମ୍ଭାଳ ତୁମ୍ଭ ଦେହ ।
ଆଜ ଏକ ବିପରୀତ ଭାବ ମୁଁ ଦେଖଇଁ
ଅପୂର୍ବର ଅପୂର୍ବର ଏବେ ହେ ଗୋସାଇଁ ।
କି ଆତୁର ଏ ତୁମ୍ଭର ସକଳ ବିନାଶ
ଏହା ଶୁଣି ମନେ ବ୍ୟଥା ପାଇଲେ ମହେଶ ।
କ୍ରୋଧ ବହି ତାଙ୍କୁ ଚାହିଁ କହିଲେ ଶଙ୍କର
ଅତିଦୁଃଖ ଦେଲ ସତୀ କମ୍ପା ମନେ ମୋର ।
କି ମଧୁର ଶ୍ରୀହରିଙ୍କ ଅଧର ଅମୃତ
ମୁନି ଆଣିଦ୍ୟନ୍ତେ ମୋତେ ଭୁଞ୍ଜି ମୁଁ ଉନ୍ମତ୍ତ
ସେ ଆବେଶ ଭଙ୍ଗହେଲା ତୁମ୍ଭର ବଚନେ
ଏହାଶୁଣି ସତୀ ଲଜେ ପଡ଼ିଲେ ଚରଣେ ।
ଯାଚନା କରି କହିଲେ ଖଣ୍ଡି ମୋ ବିଷାଦ
ମୋତେ ଅର୍ଦ୍ଧଦେହ ଦିଅ, ଦିଅ ସେ ପ୍ରସାଦ ।
ଶିବ ବୋଇଲେ [illegible] ଉମା କହୁଛ କେମନ୍ତେ
କି ସାହସ କରି ତୁମ୍ଭେ ପୋଷୁଅଛ [illegible] ।

ଏହାଶୁଣି ବିଷାଦିତା ହୋଇଲେ ଗଉରୀ
ମୁଖ ଶୁଖାଇ ସେଠାରୁ ବେଗେ ଗଲେ ଫେରି ।
ଅନ୍ତମାନେ ଯୋଗାସନେ ବସିଲେ ଏକାନ୍ତେ
ଦୃଢ଼ମନ କରି ଚିନ୍ତିଲେ ଜଗନ୍ନାଥେ ।
ବୋଇଲେ ହେ କୃପାସିନ୍ଧୁ କର ମୋତେ ଦୟା
ତାକେ ଦାସୀ ବେଗେ ଆସି ଦିଅ ପଦଛାୟା ।
ଗୌରୀଙ୍କ ସ୍ମରଣେ ବ୍ୟସ୍ତ ହେଲେ ଜଗନ୍ନାଥ
ଆସନ କମ୍ପିଲା ତାହାଙ୍କର ଅଦଭୁତ ।
ସ୍ଥିରହୋଇ ନ ପାରିଲେ ବୈକୁଣ୍ଠ ବିହାରୀ
ଉମାଙ୍କ ପାଖରେ ମିଳିଲେ ଶଙ୍ଖ ଚକ୍ରଧାରୀ ।
ଦେଖିଲେ ଯୋଗ ଆସନେ ବସିଛନ୍ତି ସତୀ
ହସି ହସି ବୋଇଲେ ତାହାଙ୍କୁ ଲକ୍ଷ୍ମୀପତି ।
କହ ଶିବା କି ହେତୁ ବା କଲ ସୁମରଣ
ତୁମ୍ଭ ଆଶା ଏହିକ୍ଷଣି କରିବି ପୂରଣ ।
ଶ୍ରୀହରିଙ୍କି ଦେଖି ଗୌରୀ ନମସ୍କାର କଲେ
ମନକଥା କଅଁଳ ବଚନେ ଜଣାଇଲେ ।
ବୋଇଲେ ମୋହର ଶ୍ରଦ୍ଧା ବଳୁଅଛି ଚିତ୍ତେ
ତୁମ୍ଭ ଶ୍ରୀଅଧରାମୃତ ଭୁଞ୍ଜିବା ନିମନ୍ତେ ।
ପ୍ରତାରଣା କରି ମୋତେ ନଦେଲେ ଶଙ୍କର
ବୋଇଲେ ତହିଁରେ ନାହିଁ ତୁମ୍ଭ ଅଧିକାର ।
ତେଣୁ ଆହେ ଜଗନ୍ନାଥ ମନରେ ମୁଁ ଭାବେ
ଦେବ କରେ ଅବସରେ ପ୍ରସାଦ ଭୁଞ୍ଜିବେ ।
ତୁମ୍ଭ ଭକ୍ତମୟୀ ମୂର୍ତ୍ତି କହନ୍ତି ହେ ମୋତେ
ସେହି ପଣ ରଖ ହରି ପ୍ରାର୍ଥନା ମୁଁ କରେ ।
ହସି ବୋଇଲେ ଶ୍ରୀହରି ଶୁଣ ଆଗୋ ସତୀ
କହୁଅଛି ତୁମ୍ଭଙ୍କୁ ମୁଁ ଯଥାର୍ଥ ଭାରତୀ ।
ଯାହାଇଚ୍ଛା କଲ ତାହା କରିବି ନିଶ୍ଚୟ
ଏଥିରେ କାହିଁତେ ତୁମ୍ଭେ ନମଣ ସଂଶୟ ।
ଉତ୍କଳ ଦେଶରେ ନୀଳାଚଳ କ୍ଷେତ୍ରବର
ଦାରୁବ୍ରହ୍ମ ରୂପେ ବିରାଜିବି ସେହିଠାର ।
ଲକ୍ଷ୍ମୀ ରାନ୍ଧଣା ସକଳ ଯେ ଅନ୍ନ ବ୍ୟଞ୍ଜନ
ଆନନ୍ଦମନେ ମୁଁ ତାହା କରିବି ଭୋଜନ ।
ବିମଳା ନାମରେ ତୁମ୍ଭେ ମୋପାଖେ ରହିବ
ମୋହର ଅଧରାମୃତ ଆନନ୍ଦେ ଭୁଞ୍ଜିବ ।
ଆଉ ଏଣିକି ମନରେ ନ ଧର ବିଷାଦ
ତୁମ୍ଭ ମାର୍ଗରେ [illegible] ଶ୍ରୀପାଦାବ୍ଜପାଦ ।

ବିମଳାପୀଠ ହୋଇବ ଶ୍ରୀକ୍ଷେତ୍ରର ନାମ
ତ୍ରିଭୁବନେ ଘାରହେବ ନୀଳାଚଳ ଧାମ ।
ଯୁଗେ ଯୁଗେ ରହିବ ଏ ମହିମା ତୁମ୍ଭର
ବାଇଶ ପାବଛ୍ଛତଳେ ରହିଥିବେ ହର ।
ଅବଶ୍ୟ ମୁଁ ଦେଖାଇବ ତୁମ୍ଭର ବଡ଼ାଇ
ମନ ଦୁଃଖ ନକର ଗୋ ସତୀ ଏଥିପାଇଁ ।
ତୁମ୍ଭ ଯୋଗୁଁ ଦେବ ନର ପଶୁ ପକ୍ଷୀ ସବେ
ମୋ ଅଧରାମୃତ ଦ୍ରବ୍ୟ ଆନନ୍ଦେ ଭୁଞ୍ଜିବେ ।
କାହାକୁ ମୋର କୈବଲ୍ୟ ନ ହୋଇବ ମନା
ପୂର୍ଣ୍ଣ କରିବ ମୁଁ ତୁମ୍ଭ ମନର କାମନା ।
ପରମ ବୈଷ୍ଣବୀ ଦେବୀ ସତୀ ହୈମବତୀ
ତୁମ୍ଭନାମେ କ୍ଷେତ୍ରପୀଠ କରିବ ସମ୍ମତି ।
ସତ୍ୟ ସତ୍ୟ ସତ୍ୟ ଜାଣିଥାଅ ଆଗୋ ଉମା
ବିଖ୍ୟାତ ହୋଇବ ମହାପ୍ରସାଦ ମହିମା ।
ଏତେବୋଲି ସତୀଙ୍କର ମନବୋଧ କଲେ
ତାଙ୍କ ନୈବେଦ୍ୟ ଦ୍ରବ୍ୟ ଭୁଞ୍ଜି ସମର୍ପିଲେ ।
ଜଗନ୍ନାଥଙ୍କ ଉଚ୍ଛିଷ୍ଟ ପାଇ ମହାସତୀ
ମହାଆନନ୍ଦେ ନମିଲେ ଶ୍ରୀଚରଣେ କତି ।
ଏମନ୍ତେ ଉମାଙ୍କ ପୂଜା କରିଣ ଗ୍ରହଣ
ବୈକୁଣ୍ଠକୁ ବିଜେକଲେ କମଳା ରମଣ ।
ଏ କାରଣେ ନାରାୟଣ ଦାରୁଦେହ ଧରି
ପ୍ରାଣୀମାନଙ୍କୁ ତାରନ୍ତି କୈବଲ୍ୟ ବିତରି ।
ଦୁର୍ଗାଙ୍କ ଇଚ୍ଛାରେ ଖ୍ୟାତ ଶ୍ରୀମହାପ୍ରସାଦ
ଭଣେ ବଇଷ୍ଣବ ଦାସ ଚିନ୍ତି ପଦ୍ମପାଦ ।

—x—

## ଶାଣ୍ଡିଲ୍ୟ ମୁନି ଆଖ୍ୟାନ

### ଶୌନକ ଉବାଚ

ଏଥି ଅନନ୍ତରେ ସେ ଶୌନକ ମୁନିବର
ପଚାରିଲେ ଜୈମିନିଙ୍କୁ କରି ସମାଦର ।
କହ ଆହେ ବ୍ୟାସଶିଷ୍ୟ ଆମ୍ଭଆଗେ ଏବେ
ଶୁଣି ଏଣୁ ମୁକ୍ତିବୁଁ ମୁନିମାନେ ସବେ ।
କେ ଅବା ଶ୍ରୀକ୍ଷେତ୍ରକୁ କରିଣ ଗମନ
ଶ୍ରୀମହାପ୍ରସାଦେ କରି ଅବଜ୍ଞା ସେ ପୁଣ ।
କେଉଁ ଦଶା ଲଭିଥିଲା କେମନ୍ତ ଭାବରେ
ପ୍ରକାଶ କରି ସେକଥା କହିଲ ଏ ଠାବରେ ।
ଶୌନକ ମୁନିଙ୍କ ମୁଖୁଁ ଏ ବଚନ ଶୁଣି
ସବାଙ୍କ ଜୈମିନି ଋଷି ବଖାଣିଲେ ପୁଣି ।

### ଜୈମିନି ଉବାଚ

ଶୁଣ ଆହେ ମୁନିବର ପଚାରିଲ ଯାହା
ସଂକ୍ଷେପି ତୁମ୍ଭ ନିକଟେ କହୁଛି ମୁଁ ତାହା ।
ମଧ୍ୟଦେଶେ ଜନମ ଶାଣ୍ଡିଲ୍ୟ ତପୋଧନ
ଶିଷ୍ୟସଙ୍ଗେ ନୀଳାଚଳେ କଲେ ସେ ଗମନ ।
ଶିଷ୍ଟାଚାରେ ବିମଳ ଶାସ୍ତ୍ରରେ ସୁପଣ୍ଡିତ
ଶାନ୍ତ ଧ୍ୟାନ ଧର୍ମ୍ମଶୀଳ କର୍ମ୍ମେ ନିୟମିତ ।
ଗୃହସ୍ଥ ଧର୍ମ୍ମରେ ବିପ୍ର ପରମ ତତ୍ପରେ
ହରିପୂଜେ ତୀର୍ଥଯାତ୍ରା ବିଧି ଅନୁସାରେ ।
ଜଗନ୍ନାଥଙ୍କୁ ଦର୍ଶନ କଲା ସେ ବ୍ରାହ୍ମଣ
ଦେଖିଲା ପ୍ରଭୁଙ୍କ ଭୋଗ ଅତି ବିଲକ୍ଷଣ ।
ଯଜ୍ଞଶେଷ ଗୃହସ୍ଥ ଭୁଞ୍ଜିବେ ଶାସ୍ତ୍ରମତ
ଏମନ୍ତ ବିଚାରି ସେହୁ ହେଲା ବୁଦ୍ଧିହତ ।
ଜଗନ୍ନାଥଙ୍କ ପ୍ରସାଦ ନକଲା ଭୋଜନ
ଅନ୍ୟପାକ କେମନ୍ତେବା କରିବ ଗ୍ରହଣ ।
ଦେବଳ ହସ୍ତରେ ଏହି ପାକଅଛି ହୋଇ
ଏହି ଅନ୍ନ ଦେବଯୋଗ୍ୟ କଦାପି ନୁହଇ ।
ଏଣୁ ଏହା ମୁନିଶ୍ରେଷ୍ଠ ଅଗ୍ରାହ୍ୟ ହୋଇଲା
ଏତେ ଭାବି ମହାପ୍ରସାଦକୁ ନ ଛୁଇଁଲା ।
ଶ୍ରୀଜଗନ୍ନାଥଙ୍କ ନୈବେଦ୍ୟ ସେ ଦ୍ରବ୍ୟ ଭୋଗ
ନଜାଣିମା ପଣେ ଆପେ ତାହାକଲା ତ୍ୟାଗ ।
ତତକ୍ଷଣେ ବିଷମ ବ୍ୟାଧି ଘୋଟିଲା ଶରୀରେ
ଶିଷ୍ୟମାନେ ଦେଖି ସର୍ବେ ଚକିତ ଥିବାରେ ।
ଉଠିବାକୁ ଶକ୍ତିନାହିଁ ସର୍ବାଙ୍ଗରେ ପୀଡ଼ା
ଟଳୁଉଠି କ୍ଷଣେ ହୋଇ ନ ପାରିଲା ଛିଡ଼ା ।
ଅବଶ ହୋଇ କେବଳ ପଡ଼ିଣ ରହିଲା
ଆହା ଉହୁ କହି କେତେ ବିକଳ ହୋଇଲା ।
ତହୁଁ ମନେ ମନେ ତାର ଭାଳଇ ବ୍ରାହ୍ମଣ
ଅକାରଣେ ଏ ବିପତ୍ତି ହେଲା କି କାରଣ ।
କୁଟୁମ୍ବଙ୍କ ସହିତରେ ମୋହର ଏଠାରେ
ସର୍ବାଙ୍ଗ ଭଞ୍ଜନ ପୀଡ଼ା ଘୋଟିଲା ଶରୀରେ ।
ମନେ ମନେ ଭାଳି ହେଉଥାଏ ସେ ଏମନ୍ତ
ଦିନଦିନ ଅନ୍ତେ ହେଲା ତା ବୁଦ୍ଧି ହତ ।

ଏକାବେଳକେ ଏ ବ୍ୟାଧି ସଭିଙ୍କି ଘୋଟିଲା
କିବା ଅପରାଧ ମୋର ଶ୍ରୀକ୍ଷେତ୍ରରେ ହେଲା ।
କିଛିପାପ କରିନାହିଁ ମୁଁ ତ ନିଜ ଜ୍ଞାନେ
ତେବେ ସଭିଙ୍କି ଏ ବ୍ୟାଧି ହେଲା କି କାରଣେ ।
ଏହିମତେ ଦୁଇଦଣ୍ଡ ଭାବି ସେହି ମନେ
ଧ୍ୟାନକରି ସ୍ତବ କରେ ଶାସ୍ତ୍ରର ବିଧାନେ ।
ଉଚ୍ଚେ ଶୁଣାଇ ଡାକଇ ହେ ପ୍ରଭୁ ଶ୍ରୀହରି
ଅଧମ ଜନର ଏବେ ଶୁଣ ହେ ଗୁହାରି ।
ଚତୁର୍ଦ୍ଦଶ ବିଦ୍ୟାଧର୍ମ୍ମ ନିର୍ଣ୍ଣୟେ ପ୍ରମାଣ
ନିଶ୍ଚୟ ତବ ଶ୍ରୀମୁଖ କମଳ ବଚନ ।
ଧର୍ମ୍ମ ଆଚରଣ କାର୍ଯ୍ୟେ ତୁମ୍ଭେ ଯୁଗେ ଯୁଗେ
ଅବତରି ପ୍ରବର୍ତ୍ତନ କର ମହାଭାଗେ ।
ଯେବଣ ପାମର ଜନ ତାହା ନ ମାନଇଁ
ତୁମ୍ଭ ଅଭୟ ଚରଣେ ଦ୍ରୋହୀ ହୁଏ ସେହି ।
ମୁଁ ଯେ କାୟମନ ବଚନରେ କଦାଚନ
ଧର୍ମ୍ମଶାସ୍ତ୍ର ବିଧି କରିନାହିଁ ଅତିକ୍ରମ ।
ସୁପଥ ବିନୁ କୁପଥେ ଚଳିନାହିଁ କେବେ
ସଦାଚାରରେ ରହି କାଳ କଟେ ଶାସ୍ତ୍ରଭାବେ ।
ଅନେକ ଜନ୍ମ ସଞ୍ଚିତ ପାତକ ନିକର
ଦହିବା ପାଇଁ ଆଇଲି ଏହି କ୍ଷେତ୍ରବର ।
କିବା ଅପରାଧ ଅରଜିଲି ଦୟାନିଧି
ଯହିଁରେ ସର୍ବାଙ୍ଗ ପାକେ ଘୋଟିଲା ଏ ବ୍ୟାଧି ।
ଅତଏବ ଉଗ୍ରପୀଡ଼ା ହେଲା ମୋ ଦେହରେ
ଜାଣି ନପାରୁଛି ପ୍ରଭୁ କ୍ଷମାକର ବାରେ ।
ଜ୍ଞାନେ କି ଅବା ଅଜ୍ଞାନେ ତବ ଶ୍ରୀପୁରରେ
ଯାହାକିଛି ଅପରାଧ କରିଛି ଏଠାରେ ।
ତାହା କ୍ଷମା ଦିଅ ମୋତେ ଜଗତ ଠାକୁର
ତୁମ୍ଭ ମହିମାରେ ଘୁଞ୍ଚୁ ଦୁର୍ଦ୍ଦଶା ମୋହର ।
ଏ ଦୀନ ଜନରେ ଦୟାକର ଚକ୍ରପାଣି
ଅସହ୍ୟ ବେଦନା ମୋର ହର ମୁକ୍ତିଦାନୀ ।
ଲୀଳା ଅପାଙ୍ଗରେ ଚାହିଁ ପ୍ରଭୁ ଦାମୋଦର
ଆହେ କ୍ଷମାମୟ ମୋ ଅପ୍ରାଧ କ୍ଷମାକର ।
ତବ ପାଦପଦ୍ମ ଯେହୁ ଦର୍ଶନ କରଇ
ଦୁଃଖ ଦୁର୍ଦ୍ଦଶା ତାହାର କିଛି ନ ରହଇ ।
ନିରନ୍ତରେ ମଜ୍ଜି [illegible] ଆନନ୍ଦ ସାଗରେ
ସୁଖେ ବିହରଇ ସେହି ଭକତ ମାର୍ଗରେ ।

ଅଳ୍ପ ଭାଗ୍ୟ ନୁହେ ମୋର ହେ ମଧୁସୂଦନ
ଯେଣୁ ଦରଶନ କଲି କମଳ ଚରଣ ।
ସେବ୍ୟ ସେବକ ଭାବରେ ଅହେ ଚକ୍ରଧର
କରିଛି ଯା ଅପରାଧ ମୋର କ୍ଷମାକର ।
ତୁମ୍ଭେ ଯେ ଅଟ କରୁଣାସିନ୍ଧୁ କ୍ଷମାମୟ
କୃପା ଦୃଷ୍ଟିରେ ଅନାଅ ନେଲି ମୁଁ ଆଶ୍ରୟ ।
ଏମନ୍ତେଣ ମୁନିବର ବହୁସ୍ତୁତି କଲା
ତାହାର ଦେହରୁ ପୀଡ଼ା ସେହିକ୍ଷଣି ଗଲା ।
ଦେଖି ଦେଖି ସୁସ୍ଥହେଲା ଶାଣ୍ଡିଲ୍ୟ ବ୍ରାହ୍ମଣ
କୁଟୁମ୍ବମାନେ ଆରୋଗ୍ୟ ଲଭିଲେ ତକ୍ଷଣ ।
ଅପୂର୍ବ ଆନନ୍ଦ ସର୍ବେ କଲେ ଅନୁଭବ
କରଯୋଡ଼ି ଶ୍ରୀଛାମୁରେ ଆରମ୍ଭିଲେ ସ୍ତବ ।
ବିଚିତ୍ର ଘଟଣା ଶୁଣ ସର୍ବ ମୁନିଗଣ
ଶାଣ୍ଡିଲ୍ୟ ମୁନି ସେକାଳେ କରଇ ଦର୍ଶନ ।
ବସିଛନ୍ତି ମହାବାହୁ ରତ୍ନ ସିଂହାସନେ
ଦିବ୍ୟ ଅଳଙ୍କାରମାନ ଅଙ୍ଗ ବିଭୂଷଣେ ।
ପରଷୁ ଅଛନ୍ତି ଅନ୍ନ ଲକ୍ଷ୍ମୀ ଠାକୁରାଣୀ
ପଦ୍ମ ହସ୍ତେ ନେଇ ଭୁଞ୍ଜୁଛନ୍ତି ଚକ୍ରପାଣି ।
ଗ୍ରାସ ଅବଶେଷ ପାତ୍ରେ ପିଙ୍ଗୁଛନ୍ତି ପୁଣ
ନାନା ଅନ୍ନ ବ୍ୟଞ୍ଜନ ସେ ଭୁଞ୍ଜନ୍ତି ଏସନ ।
ମୃଦୁ ହସ ହସ ମୁଖେ ଲକ୍ଷ୍ମୀ ଠାକୁରାଣୀ
ମନ ମୋହୁଛନ୍ତି କରି ଅପାଙ୍ଗ ଚାହାଣି ।
ତା ଦେଖି ଶାଣ୍ଡିଲ୍ୟ ଦ୍ୱିଜ ଅବାକ ହୋଇଲା
ଶ୍ରୀମହାପ୍ରସାଦ ବୋଲି ଭଲେ ମନେ କଲା ।
ଅପରାଧ ମାନି ଦ୍ୱିଜ କରେ ପୁଣି ସ୍ତୁତି
ବୋଲେ ଜୟ ଜୟ ଜଗନ୍ନାଥ ଲକ୍ଷ୍ମୀପତି ।
ମୁହିଁ ଯେ ମହା ପ୍ରମାଦୀ ଅଧମ ପାମର
ଜାଣିଲି ଜାଣିଲି ଏବେ ମହିମା ତୁମ୍ଭର ।
ନିରଙ୍କୁଶ ତବ ମାୟା ବଚନର ପର
ସ୍ୱଇଚ୍ଛାରେ କର ସୃଷ୍ଟି ଇଚ୍ଛାରେ ସଂହାର ।
ତୁମ୍ଭ ମାୟାକୁ ମୁଁ ମୂଢ଼ ଜାଣିବି କେସନ
ଅପରାଧ କ୍ଷମାକର କଲି ନିବେଦନ ।
ଏମନ୍ତେ ସ୍ତବ କରନ୍ତେ ଶାଣ୍ଡିଲ୍ୟ ବ୍ରାହ୍ମଣ
ସନ୍ତୋଷ ହେଲେ ତାଙ୍କଠାରେ କମଳଲୋଚନ ।
ସେହି ଉଚ୍ଛିଷ୍ଟ ପାତ୍ରରେ ଗ୍ରାସ ଶେଷ ନେଇ
ଶାଣ୍ଡିଲ୍ୟର ମୁଖାନନେ ଛୁଆଁଇଲେ ଗୋସାଇଁ ।

ସୁଧାରେ ମିଶ୍ରିତ ଯେସନ୍ତେ ହେଲା ଦ୍ୱିଜବର
ଦିବ୍ୟ ଦେହ ଧରି ଘାସ ଦିଶେ ମନୋହର ।
ଆନନ୍ଦେ ମଜ୍ଜିଲ ମୁଖେ ନ ଦେ ଗଦ ବାଣୀ
ନେତ୍ରଜଳ ଛାଡ଼ି ଦ୍ୱିଜ ଜଣାକରେ ପୁଣି ।
ଭକ୍ତର ମହିମା ତବ ଜାଣନ୍ତି ଭକତେ
ବନ୍ଧ୍ୟା ପ୍ରସୂତର ପୀଡ଼ା ଜାଣିବ କେମନ୍ତେ ।
ଏତେ ବୋଲି ସେ ପାତ୍ରୁ ଉଚ୍ଛିଷ୍ଟ ଘେନିଲା
କୃତାର୍ଥ ମଣି ବ୍ରାହ୍ମଣ ସେକ୍ଷଣି ଭୁଞ୍ଜିଲା ।
ତହୁଁ ଦ୍ୱିଜ ନିଜ ମନେ ମନେ ଚିନ୍ତାକରେ
ସାଧାରଣ ଧର୍ମଶାସ୍ତ୍ର କ୍ଷେତ୍ରେ ନ ବର୍ତ୍ତରେ ।
ଆଗୁରରେ ଧର୍ମ ହରି ଧର୍ମର ଈଶ୍ୱରେ
ପରମ ଧରମ ସେହି ହରି ଯାହା କରେ ।
ଏମନ୍ତ ଭାବ ସେ ନିଜ କୁଟୁମ୍ବ ନିମନ୍ତେ
ମୁଠିଏ ମହାପ୍ରସାଦ ଘେନିଲା ସ୍ୱହସ୍ତେ ।
ଧ୍ୟାନ ଭଙ୍ଗ ହୋନ୍ତେ ସେହି ଶାଣ୍ଡିଲ୍ୟ ବ୍ରାହ୍ମଣ
ଦୃଷ୍ଟ ମନେ କରି ହେଲା ବିସ୍ମୟ ତା ମନ ।
ଏ ମୋ ଅପରାଧ ଈଶ୍ୱରେ ଯା ହେଲା କଲି
ଆଶ୍ଚର୍ଯ୍ୟ ପ୍ରସାଦ ତତ୍ତ୍ୱ ଜାଣି ନ ପାରିଲି ।
ଗଙ୍ଗା ଜଳେ ବ୍ରହ୍ମା ଯାର ଚରଣ ଧୁଅଇ
ସେ ଜଳ ପରଶେ ଧନ୍ୟ ନିଜକୁ ମଣଇ ।
ଦିବ୍ୟଭାବେ ଯାହାଙ୍କୁ ପୂଜଇ ଶଚୀନାଥ
ଏଠାରେ ଭୋଜନ ତାଙ୍କ ଏ ଅତି ଅଦ୍ଭୁତ ।
ଏମନ୍ତେ ଆଶ୍ଚର୍ଯ୍ୟ ମନେ କରି ସେ ବ୍ରାହ୍ମଣ
ଭୂପତନେ ପ୍ରସାଦ ଯାହା କରନ୍ତି ଗ୍ରହଣ ।
ସେହି ପ୍ରସାଦରେ ନିଜ ପରିବାରଗଣେ
ସବୁରି ଅଙ୍ଗେ ବୋଳିଲା ହରଷିତ ମନେ ।
ସେକ୍ଷଣି ଦେହ ପବିତ୍ର ହେଲା ସଭିଙ୍କର
ସକଳ ବ୍ରାହ୍ମଣେ ମଣିଲେ ତା ଚମତ୍କାର ।
ପୁନର୍ଜନ୍ମ ମାନ ଶ୍ରୀକ୍ଷେତ୍ରକୁ ପ୍ରଶଂସିଲେ
ଧନ୍ୟ ଏହି କ୍ଷେତ୍ର କାହିଁ ନାହିଁ ଏହାତୁଲେ ।
ଯହିଁରେ ଉଚ୍ଛିଷ୍ଟ ଦାନେ ପାପ କରେ ନାଶ
ସ୍ୱର୍ଗ ଭୋଗ ମୁକ୍ତି ଯହିଁ କରତଳେ ବାସ ।
ଭ୍ରାନ୍ତ ଜନେ ଭବବନେ କରନ୍ତି ଭ୍ରମଣ
ଭାଗ୍ୟେ ଏହି କ୍ଷେତ୍ର ଲଭି ହୁଅନ୍ତି ମୋଚନ ।
କ୍ଷେତ୍ର ଆସି ନାନା ଭୋଗୀ ମୁକ୍ତ ହୁଅନ୍ତି ତାର
ଏମନ୍ତେ ପରସ୍ପରେ କରନ୍ତି ବିଚାର ।

ତଦନ୍ତେ ଶାଣ୍ଡିଲ୍ୟ ନିଜ ଶିଷ୍ୟଗଣ ନେଇ
ଯଥେଷ୍ଟ ମହାପ୍ରସାଦ ଭୁଞ୍ଜିଣ ଶ୍ରଦ୍ଧା ବହି ।
ସେ ପ୍ରସାଦ ଭୁଞ୍ଜି ସର୍ବେ ହୋଇଲେ ନିର୍ମଳ
ନବ ରବି ସମ ତେଜ ଦିଶେ ଝଲମଲ ।
ଦେବତା ସମ ଦିଶିଲେ ସେ ସବୁ ବ୍ରାହ୍ମଣ
ଆନନ୍ଦ ସାଗର ମଧ୍ୟେ ହୋଇଲେ ମଗନ ।
ଶ୍ରୀମହାପ୍ରସାଦ ତତ୍ତ୍ୱ ଏମନ୍ତ ପ୍ରକାରେ
ବୁଝାଇ କହିଲ ମୁନି ମୁଁ ତୁମ୍ଭ ଆଗରେ ।
ପାମର ଅଧମ ହୀନ ଥିବେ ଯେଉଁ ନର
ଏହା ଶୁଣିଲେ ପାପରୁ ହୋଇବେ ଉଦ୍ଧାର ।
ଭୋଜନର କି ଫଳ ତା କେ କହି ପାରିବ
ଯହିଁରେ ଆଶା କରନ୍ତି ବ୍ରହ୍ମା ସଦାଶିବ ।
ଏକାଦଶୀରେ ଯେ ସଦା ବଳାଇ ମାନସ
ଶ୍ରୀମହାପ୍ରସାଦ ଭୁଞ୍ଜେ ହୋଇଣ ଉଲ୍ଲାସ ।
ଅକ୍ରମରେ ଯୋଗଫଳ ତାହାକୁ ମିଳଇ
ନରକ ଯାତନା ସେହି ପ୍ରାଣୀ ନ ଲଭଇ ।
ପୁରୁଷୋତ୍ତମ ମହିମା କେବା କହିପାରେ
ଭୋଗ କରି ଯୋଗଫଳ ମିଳେ ଯେ ସ୍ଥାନରେ ।
ଅବ୍ୟବସ୍ଥା ଭୋଜନେ ଶୋଧନ କରେ ଜାତି
ଦେବତା ପବିତ୍ର ବାଞ୍ଛା ପଦ ଭଜେ ତଥି ।
କୁସୁମ ଚନ୍ଦନ ମାଳା ଯେ ନିର୍ମାଲ୍ୟମାନ
ମସ୍ତକେ ଧାରଣ ଆଉ ଅଙ୍ଗରେ ମାର୍ଜନ ।
ସାର୍ଦ୍ଧ ତିନି କୋଟି ତୀର୍ଥ ସ୍ନାନ କଲା ଫଳ
ଏହି ନିର୍ମାଲ୍ୟ ଧାରଣେ ହୁଅନ୍ତି କେବଳ ।
ଭକ୍ଷଣରେ ଗୁରୁ ତଳ୍ପ ଆଦି ପାପ ଧ୍ୱଂସେ
ସତ୍ୟ ସତ୍ୟ ସତ୍ୟ ଏହା ଜାଣ ବେଦ ବଚନେ ସେ ।
ବାସି ହୋଇଗଲେ ସୁଦ୍ଧା ଶ୍ରୀମହାପ୍ରସାଦ
ଭକ୍ତିରେ ସେବା କରିବ ବହି ଆହ୍ଲାଦ ।
ଯେତେ ଦୂର ନେଲେ ମଧ୍ୟ ଶ୍ରୀହରି ଉଚ୍ଛିଷ୍ଟ
କେବେ ବିଗୁଡ଼ିବ ନାହିଁ ହେଲା ବୋଲି ନଷ୍ଟ ।
ତୃଣ ଦୋଷେ ଯେ ପ୍ରସାଦ କେବେ ନଷ୍ଟ ବୁଝେ
ନଷ୍ଟ ଦୋଷ ଘଟାଇଲେ ନରକ ନଷ୍ଟସେ ।
ଶ୍ରୀମହାପ୍ରସାଦଙ୍କର ମହିମା ଏମନ
ଶୂଦ୍ରେ ପରଶିବେ ଦ୍ୱିଜେ କରିବେ ଭୋଜନ ।
ଶ୍ରୀମହାପ୍ରସାଦଙ୍କର ଏମନ୍ତ ମହିମା
ଚଣ୍ଡାଳ ମୁଖରୁ ବ୍ରାହ୍ମଣେ ଭୁଞ୍ଜନ୍ତି ନହାଇ ।

ଶ୍ରୀମହାପ୍ରସାଦ ପ୍ରାପ୍ତ ମାତ୍ରକେ ଭୁଞ୍ଜିବ
ଦେଶ କାଳ ପାତ୍ରକୁ ବିଚାର ନ କରିବ ।
ଭୁଞ୍ଜିବା ବେଳେ ଯଦ୍ୟପି କଣିକାଏ ପଡ଼େ
ତୋଳି ନ ଭକ୍ଷିଲେ ଅଷ୍ଟଗୁଣେ ପାପ ବଢ଼େ ।
ଏଣୁ ସାବଧାନ ହୋଇ କରିବେ ଭୋଜନ
ଆସନେ ବସି ଭୁଞ୍ଜିଲେ ଅପରାଧ ଜାଣ ।
ମହାପ୍ରସାଦ ଭୁଞ୍ଜିଣ କୁଳି ନ କରିବ
ତୁଣ୍ଡେ ଜଳ ଦେଇ ତାହା ଗର୍ଭକୁ କ୍ଷେପିବ ।
ପ୍ରଥମେ ଏହା ଆଚରି ତଦନ୍ତେ ମାନବେ
କୁଳି କରିବେ ଆନନ୍ଦେ ସୁପବିତ୍ର ଠାବେ ।
ଏମନ୍ତେ କହିଲି ମହାପ୍ରସାଦ ମହିମା
ଶୁଣିଲଟି କି ହେ ସର୍ବେ ମୁନି ମହାତ୍ମା ।
ଜୈମିନି ଭାଷଣ ଏ ଯେ ଅମୀୟ ସୁରସ
ଚକାଡୋଳା ଚରଣ ଭଜଣ ବଇଷ୍ଣବ ଦାସ ।

—×—

## ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା କଥନ

ଜୈମିନି ଉବାଚ

ଜୈମିନି କହନ୍ତି ଶୁଣ ସର୍ବ ମୁନିଗଣ
ସଂକ୍ଷେପେ ଦ୍ୱାଦଶ ଯାତ୍ରା କରିବି ବର୍ଣ୍ଣନ ।
ଜ୍ୟେଷ୍ଠ ପୂର୍ଣ୍ଣିମାରେ ସ୍ନାନ ମହୋତ୍ସବ କରି
ପଞ୍ଚର ଦିନ ପର୍ଯ୍ୟନ୍ତ ନ ଦେଖିବ ହରି ।
ପରେ ନେତ୍ରୋତ୍ସବ କରି ପ୍ରଭୁ ଜଗନ୍ନାଥେ
ସେବା ଆଚରିବେ ନାନା ଭୋଗେ ବିଧିମତେ ।
ଆଷାଢ଼ର ଶୁକ୍ଳ ପକ୍ଷ ଦ୍ୱିତୀୟା ପୁଷ୍ୟାରେ
ରଥ ଯାତ୍ରା କରନ୍ତି ହେ ହରଷେ ଭକ୍ତନରେ ।
ତିନିରଥେ ହରି ରାମ ଭଦ୍ରା ସୁଦର୍ଶନେ
ବସାଇଣ ନଅନ୍ତି ସେ ଗୁଣ୍ଡିଚା ଭବନେ ।
ସହସ୍ରେ ଅଶ୍ୱମେଧ ମହାବେଦୀର ଉପରେ
ଯେଉଁନେ ବସାନ୍ତି ନେଇ ଚତୁର୍ଦ୍ଧା ମୂର୍ତ୍ତିରେ ।
ତହିଁ ଇନ୍ଦ୍ରଦ୍ୟୁମ୍ନ ନାମେ ପୁଣ୍ୟ ସରୋବର
ବ୍ରହ୍ମାଣ୍ଡର ସର୍ବ ତୀର୍ଥ ଅଛନ୍ତି ତହିଁର ।
ତହିଁ ସ୍ନାନ ଦାନ କରି ଯେ କରେ ଦର୍ଶନ
ସପ୍ତ ପୁରୁଷଙ୍କୁ ଉଦ୍ଧାରଇ ସେହିଜନ ।
ଇହକାଳେ ମହାନନ୍ଦେ ସୁଖ ଶାନ୍ତି ପାଏ
ପରକାଳେ ସ୍ୱର୍ଗ ରଥେ ବୈକୁଣ୍ଠକୁ ଯାଏ ।

ସାତଦିନ ଜଗନ୍ନାଥ ରହି ସେହି ସ୍ଥଳେ
ପୁଣି ରଥେ ବାହୁଡ଼ନ୍ତି ଶ୍ରୀବଡ଼ଦେଉଳେ ।
ଏହି ରଥଯାତ୍ରା ଅଟେ ପରମ ପାବନ
ଶ୍ରବଣେ ଦର୍ଶନେ ମୁକ୍ତି ଫଳ ପାନ୍ତି ଜନ ।
ଆଷାଢ଼ ମାସରେ ଶୁକ୍ଳ ଏକାଦଶୀ ଦିନ
ହରିଙ୍କ ପ୍ରତିମା ଏକ କରିବ ନିର୍ମାଣ ।
ଦିବ୍ୟ ଖଟପରେ ପାଡ଼ି ତୁଳିକା ଆସନ
ତହିଁ କରାଇବ ଭଲେ ହରିଙ୍କି ଶୟନ ।
ଶୟନୈକାଦଶୀ ନାମ କହନ୍ତି ଏହାରେ
ବିଧିମତେ ସେହି ଦିନ ପୂଜିବ ସାଦରେ ।
ଶ୍ରାବଣେ କରିବ ବ୍ରତ ଦକ୍ଷିଣ ଅୟନ
ଯଥା ବିଧାନେ ପୂଜିବ ପ୍ରଭୁ ନାରାୟଣ ।
ଭାଦ୍ରମାସେ ଶୁକ୍ଳପକ୍ଷ ଏକାଦଶୀ ଦିନ
ଶ୍ରୀହରି ଶୟନ ଦ୍ୱାରେ କରିବ ଗମନ ।
ନାନାଉତ୍ସବେ କରିଣ ପାର୍ଶ୍ୱ ପ୍ରବର୍ତ୍ତନ
ବିବିଧ ଦ୍ରବ୍ୟେ କରିବ ହରିଙ୍କି ପୂଜନ ।
ତହୁଁ ଜଗନ୍ନାଥେ ପୂଜି କୌମୁଦୀ ଉତ୍ସବେ
ପାଶାକ୍ରୀଡ଼ା ଆଦି ଲୀଳା କରାଇବ ଭାବେ ।
କାର୍ତ୍ତିକମାସର ଶୁକ୍ଳ ଏକାଦଶୀ ଦିନେ
ସ୍ତବ କରି ନିଦ୍ରାଭଙ୍ଗ କରିବ ଯତନେ ।
ମାର୍ଗଶିର ମାସ ଶୁକ୍ଳଷଷ୍ଠୀର ଦିବସେ
ଆବରଣ ଉତ୍ସବେ ପୂଜିବ ଜଗଦୀଶେ ।
ନୂତନ ବସ୍ତ୍ରେ ପ୍ରଭୁଙ୍କ ଶ୍ରୀଅଙ୍ଗ ଢାଙ୍କିବ
ଓଢ଼ଣ ଷଷ୍ଠୀ ଉତ୍ସବ ଏହାକୁ ଜାଣିବ ।
ପୁଷମାସେ ପୂର୍ଣ୍ଣିମାରେ ଏକ ମହୋତ୍ସବ
ପୁଷ୍ୟାଭିଷେକ ତାହାକୁ କହନ୍ତି ଯେ ସର୍ବ ।
ଉତ୍ତର ଅୟନ ବ୍ରତ ମାଘ ସଂକ୍ରାନ୍ତିରେ
ମହାଉତ୍ସବ କରିବ ହରିଙ୍କ ପ୍ରୀତିରେ ।
ଏ ବ୍ରତକୁ ପୂର୍ବରେ କଶ୍ୟପମୁନି କରି
ସନ୍ତୋଷି ଥିଲେ ହରିଙ୍କି ଜାଣ ତପବଳୀ ।
ଫାଲ୍‌ଗୁନ ପୂର୍ଣ୍ଣିମାରେ ଯେ ଦୋଳା ଆରୋହଣ
ବିଧାନେ ଜଗନ୍ନାଥଙ୍କୁ କରିବ ପୂଜନ ।
ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଚତୁର୍ଦ୍ଦଶୀ ଦିନେ
ଦମନକ ଭଞ୍ଜନ କରିବ ସାବଧାନେ ।
ବୈଶାଖମାସର ଶୁକ୍ଳତୃତୀୟା ତିଥିରେ
ଚନ୍ଦନଯାତ୍ରା କରିବ ଆରମ୍ଭି ବିସ୍ତାରେ ।

ସେଦିବସର ନାମ ଯେ ଅକ୍ଷୟା ତୃତୀୟା
ଗଙ୍ଗାଦେବୀ ଆସିଥିଲେ ମର୍ତ୍ତ୍ୟେ କରି ଦୟା ।
ଯେ ତୃତୀୟା ଦିନଠାରୁ ଏକୋଇଶ ଦିନ
ପ୍ରଭୁଙ୍କ ଅଙ୍ଗେ ଯତନେ ଲେପିବ ଚନ୍ଦନ ।
ଚାପ ଉତ୍ସବ କରିବ ଆନନ୍ଦିତ ମନେ
ସୁବେଶ କରାଇ ଭଲେ ମଦନ ମୋହନେ ।
ଏହି ବ୍ରତ ପୂର୍ବେ କରି ଦକ୍ଷପ୍ରଜାପତି
ସନ୍ତୋଷ କରାଇ ଥିଲେ ଶ୍ରୀଜଗତପତି ।
ଏହି ଯେ ଦ୍ୱାଦଶ ଯାତ୍ରା ପରମ ପାବନ
ଶୁଣିଲେ ଅନ୍ତିମେ ଲଭି ଗୋବିନ୍ଦ ଚରଣ ।
ଶ୍ରୀଜଗନ୍ନାଥଙ୍କ ପାଦପଦ୍ମେ ରଖିଧ୍ୟାନ
ଭଣେ ବଇଷ୍ଣବ ଦାସ ପୁରାଣ କଥନ ।

— × —

## ଦୋଳା ଆରୋହଣ ଯାତ୍ରା

ଶୌନକ ଉବାଚ

ପୁଚ୍ଛନ୍ତି ଶୌନକ ମୁନି ଜୈମିନିଙ୍କି ଚାହିଁ
ଦୋଳଯାତ୍ରା କଥା ଏବେ କହ ଋଷିସାଇଁ ।
ଶୁଣିବାକୁ ବଢ଼ିଶ୍ରଦ୍ଧା ବଳଇ ଆମ୍ଭର
ଦୋଳା ଆରୋହଣ ଲୀଳା ଜଗନ୍ନାଥଙ୍କର ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଅନାଦି ମୁନିବର
ଅତି ଚମତ୍କାର ଦୋଳଯାତ୍ରା ସମାଚାର ।
ଦ୍ୱାଦଶ ଯାତ୍ରା ମଧ୍ୟରେ ଏ ଯାତ୍ରା ପ୍ରଧାନ
ରାଧାକୃଷ୍ଣ ରୂପେ ପ୍ରଭୁ ଜଗତ ମୋହନ ।
କୁସୁମ ଦୋଳ ଉପରେ ଝୁଲନ୍ତି ଆନନ୍ଦେ
ସଖୀରୂପେ ଝୁଲାନ୍ତି ସକଳ ଭକ୍ତବୃନ୍ଦେ ।
ସର୍ବ ତୀର୍ଥମୟ ଅଟେ ନୀଳାଚଳ ପୁରୀ
ତହିଁ ପ୍ରକଟନ୍ତି ପ୍ରଭୁ ଶ୍ରୀବ୍ରଜମାଧୁରୀ ।
ଜଗନ୍ନାଥ ପ୍ରତିମୂର୍ତ୍ତି ଗୋବିନ୍ଦ ଆଖ୍ୟାନ
ବୃନ୍ଦାବନ ଲୀଳା ଖେଳା ତେଣୁ ବିଦ୍ୟମାନ ।
ପ୍ରେମମୟୀ ରାଧାଙ୍କସଙ୍ଗେ ପ୍ରଭୁ ଜଗନ୍ନାଥ
କରନ୍ତି ଦୋଳଉତ୍ସବ ପ୍ରିୟା ଘେନି ସାଥ ।
ଯେମନ୍ତେ କରିବେ ଏହି ଯାତ୍ରାର ବିଧାନ
ତାହା କହୁଅଛି ଏବେ ସାବଧାନେ ଶୁଣ ।

ଫାଲଗୁନ ଦଶମୀ ଯେ ଶୁକ୍ଳପକ୍ଷର
ସେଦିନ ଆରମ୍ଭ ଏହି ଯାତ୍ରା ମନୋହର ।
ଫଗୁଖେଳ ଗୃଚେରୀ ଯେ ଅତି ଚମତ୍କାର
ମହୋତ୍ସବ ହୁଆଇବ ଯତନ ପ୍ରକାର ।
ପୂର୍ଣ୍ଣିମା ପୂର୍ବଦିବସ ଜାଣ ସନ୍ଧ୍ୟାକାଳେ
ଏକ ମଣ୍ଡପ ନିର୍ମାଣ କରିବ ସୁଢ଼ଳେ ।
ଦେଉଳ ଆଗରେ ତାହା ରଚିବ ସୁନ୍ଦର
ତାମଧ୍ୟେ ବେଦୀ ରଚିବ କରି ମନୋହର ।
ଶୁଦ୍ଧଆ ଗୁମର ମାଳା ଧ୍ୱଜେ ବିଭୂଷିତ
ଦୋଳବେଦୀକ ମଣ୍ଡପ ଯତନେ ଅତ୍ୟନ୍ତ ।
କୁସୁମର ଦୋଳ ତହିଁ ପୁଷ୍ପର ଆସନ
ବିଜେ କରାଇବ ଦୋଳଗୋବିନ୍ଦଙ୍କୁ ଜାଣ ।
ପଞ୍ଚଦିନ ଯାଏଁ ମହାଉତ୍ସବ କରିବ
ପ୍ରତିଦିନ ଆନନ୍ଦରେ ପ୍ରଭୁଙ୍କୁ ପୂଜିବ ।
ତୃଣରାଶିରେ ଯେ ପଶୁ କରିଣ ରଚନ
ତୃଣ ପାଳଗଦା କରି ହୋଇ ତୋଷମନ ।
ବିଧିମତେ ହୋମକର୍ମ କରି ସମାପନ
ସାତଥର ଗୋବିନ୍ଦେ କରାଇ ପ୍ରଦକ୍ଷିଣ ।
ତହିଁରେ ଆନନ୍ଦ ମନେ ଅଗ୍ନି ଲଗାଇବ
ହୁରୁ ହୁରୁ ହୋଇ ଯେଉଁ ତୃଣ ଜଳୁଥିବ ।
ତଦନ୍ତେ ଗୋବିନ୍ଦ ବିଜେ ଚତୁର୍ଥ ପ୍ରହରେ
ଯତ୍ନେ ବସାଇବ ଜଗନ୍ନାଥଙ୍କ ଆଗରେ ।
ଦୁହିଙ୍କି ପୂଜନ କରି ନାନା ଉପହାରେ
ପ୍ରତିମାରେ ତେଜୋମୂର୍ତ୍ତି ଆଣି ମନ୍ତ୍ରଦ୍ୱାରେ ।
ସେହି ପ୍ରତିମା ଟେକିଲେ ସାକ୍ଷାତ ହୋଇବେ
ରତ୍ନଦୋଳା ପରେ ସ୍ନାନ ମଣ୍ଡପକୁ ନେବେ ।
ବାଦ୍ୟଗୀତ ନୃତ୍ୟସଙ୍ଗେ ପୁଷ୍ପ ବରଷଣ
ମାଳ ମାଳ ଫଗୁଦାନେ ଗୁମର ଚାଳଣ ।
ମହାମହୋତ୍ସବ ହୁଆଇବେ ଆନନ୍ଦରେ
ପୂର୍ଣ୍ଣ ହୋଇଥିବ ଦାଣ୍ଡ ଭକତ ବୃନ୍ଦରେ ।
ଆକାଶମାର୍ଗରେ ବ୍ରହ୍ମାଆଦି ଦେବଗଣ
ଜୟ ଜୟ ଶବଦରେ କରନ୍ତି ସ୍ତବନ ।
ତେବେ ତହିଁ ଆସନରେ ବସାଇ ଗୋବିନ୍ଦେ
ନାନା ଉପଚାରେ ଭଲେ ପୂଜିବେ ଆନନ୍ଦେ ।
ପଞ୍ଚାମୃତେ ମହାସ୍ନାନ କରି ସାଦରେ
ଚନ୍ଦନ ଜଳ ସିଞ୍ଚିବେ ପ୍ରଭୁ କଳେବରେ ।

ତଦନ୍ତେ ଆରମ୍ଭ କରି ମଙ୍ଗଳ ବିଧାନେ
ଶ୍ରୀମନ୍ଦିର ପ୍ରଦକ୍ଷିଣ କରାଇ ବନ୍ଦନେ ।
ଦୋଳମଣ୍ଡପର ନିକଟକୁ ନେଇ ଯିବେ
ବିଧିମତେ ତହିଁ ପ୍ରଦକ୍ଷିଣ କରାଇବେ ।
ଫୁଲଦୋଳି ପରେ ଗୋବିନ୍ଦଙ୍କୁ ବସାଇବେ
ବୃନ୍ଦାବନ ଲୀଳା ତହିଁ ମନରେ ଚିନ୍ତିବେ ।
ବୃନ୍ଦାବନ କୁଞ୍ଜେ ମତ୍ତ ଭ୍ରମର ନିଚୟ
ଗୁଣୁ ଗୁଣୁ ସ୍ୱନେ ଗାନ ଜାଣିବେ ନିଶ୍ଚୟ ।
ଶ୍ରୀକ୍ଷେତ୍ରକୁ ସେହିକାଳେ ବ୍ରଜ ମନେକରି
ଆନନ୍ଦ ମନରେ ଖେଳ ଖେଳାଇବେ ହୋରି ।
ସଂକ୍ଷେପେ କହିଲି ଦୋଳଲୀଳା ସମାଚାର
ଶ୍ରୀନୀଳାଚଳରେ ବ୍ରଜ ମାଧୁରୀ ବିସ୍ତର ।
ଜୈମିନିଙ୍କ ଭାଷଣ ଏ ପୁରାଣ ପ୍ରକାଶ
ଇଷ୍ଟଦେବ ଚିନ୍ତି ଭଣେ ବଇଷ୍ଣବ ଦାସ ।

—×—

## ଦଅଣା ମହିମା କଥନ

### ଶୌନକ ଉବାଚ

ପୁଚ୍ଛନ୍ତି ଶୌନକ ମୁନି ଜୈମିନିଙ୍କୁ ଚାହିଁ
କହ ଆହେ ମହାତମା ଆମ୍ଭଙ୍କୁ ବୁଝାଇ ।
ଚୈତ୍ର ଶୁକ୍ଳପକ୍ଷେ ତ୍ରୟୋଦଶୀରେ ଯେ ପର୍ବ
ପ୍ରଭୁଙ୍କର ଦମନକ ଭଞ୍ଜନ ଉତ୍ସବ ।
ତହିଁର ତତ୍ତ୍ୱ ଆମ୍ଭଙ୍କୁ ନୋହୁଏ ଗୋଚର
ଦମନକ ଅଟେ କେଉଁ କିବା ସମାଚାର ।
ପ୍ରଚ୍ଛିନ୍ନ କରିଣ ବ୍ୟକ୍ତ କରି କହ ଜୈମିନି
କୃତାର୍ଥ ହୋଇବୁଁ ଆମ୍ଭେମାନେ ତାହା ଶୁଣି ।
ଶୌନକ ମୁନିଙ୍କ ମୁଖୁଁ ଏ ବଚନ ଶୁଣି
ଜୈମିନି କହିଲେ ତହୁଁ ସୁମଧୁର ବାଣୀ ।

### ଜୈମିନି ଉବାଚ

ଏକମନ ହୋଇ ଶୁଣ ହେ ମୁନି ମଣ୍ଡଳୀ
ଶ୍ରୀଜଗନ୍ନାଥଙ୍କ ଲୀଳା କର୍ଣ୍ଣ କୁତୂହଳୀ ।
ପୂର୍ବେ ଦମନକ ନାମେ ଏକ ଦୈତ୍ୟବର
ସର୍ବଦା ସେ ରହୁଥାଏ ସମୁଦ୍ର ମଧ୍ୟରେ ।
କେବେ କେବେ [illegible] ଅସୁର ଜଳରୁ ବାହାରି
ମନୁଷ୍ୟଙ୍କୁ ଧରିଖାଏ ଉପଦ୍ରବ କରି ।
ତାହାଶୁଣି ବ୍ରହ୍ମା ଅତି ଚିନ୍ତିତ ହୋଇଲେ
ଜଗନ୍ନାଥଙ୍କର ପାଦପଦ୍ମେ ଜଣାଇଲେ ।
ବୋଇଲେ ମୋ ସୃଷ୍ଟିନାଶ ହୁଏ ଜନାର୍ଦ୍ଦନ
ଦମନକ ଅସୁରକୁ ମାରି ଦିଅ ଆପଣ ।
ବ୍ରହ୍ମାଙ୍କ ପ୍ରାର୍ଥନା ଶୁଣି ପ୍ରଭୁ ଦୟାମୟ
ପ୍ରବେଶ ହୋଇଲେ ଯାଇ ବରୁଣ ଆଳୟ ।
ଜଳମଧ୍ୟେ ଖୋଜି ଖୋଜି ପ୍ରଭୁ ରଙ୍ଗଧାରୀ
ଦୈତ୍ୟକୁ ଦେଖି ଟାଣିଲେ ତାର ଚୁଟିଧରି ।
କଚାଡ଼ି ଫିଙ୍ଗିଲେ ତାକୁ ସମୁଦ୍ର କୂଳରେ
ପ୍ରାଣଛାଡ଼ିଲା ସେ ଦୈତ୍ୟ ଘୋର ଶବଦରେ ।
ଚୈତ୍ରମାସ ଶୁକ୍ଳ ଚତୁର୍ଦ୍ଦଶୀର ଦିବସେ
ହତ ହୋଇନ୍ତେ ଦୈତ୍ୟ,ଦେବେ କୁସୁମ ବରଷେ ।
ସେ ଦୈତ୍ୟ ପ୍ରଭୁଙ୍କ କରସଙ୍ଗ ପାଇକରି
ହୋଇଲା ସୁଗନ୍ଧ ତୃଣ ସ୍ୱନାମକୁ ଧରି ।
ଚମତ୍କାର ହେଲେ ହରି ସେ ତୃଣ ସୁଗନ୍ଧେ
ମାଳାକରି ନିଜହସ୍ତେ ପିନ୍ଧିଲେ ଆନନ୍ଦେ ।
ଯେତେକ କୁସୁମ ଅଛି ଅବନୀରେ ବୁଝ
ସବୁ ଗନ୍ଧକୁ ଘୋଡ଼ାଏ ଏହି ତୃଣ ରାଜ ।
ଭଗବାନ ସୁଖେ ଗଳେ କଲେ ତା ଧାରଣ
ଦଅଣା ବୋଲି ବିଖ୍ୟାତ ସେ ତୃଣର ନାମ ।
ଶ୍ରୀହରିଙ୍କ ଅତିସ୍ନେହ ସେ ଦଅଣା ମାଳେ
ଦୋଷ ନ ଘଟଇ ଶୁଷ୍କ କମ୍ବା ବାସିହେଲେ ।
ତୁଳସୀ ମରୁଆ ଦଅଣାର ମାଳ ନେଇ
ଶ୍ରୀଜଗନ୍ନାଥଙ୍କୁ ଯେ ଦେଲେ ଶ୍ରଦ୍ଧାଭରେ କେହି !
ତହିଁରେ ପ୍ରଭୁଙ୍କ ପ୍ରୀତି ଅଧିକ ଜନ୍ମଇ
ଦେବା ପ୍ରାଣୀର ସୁକୃତ ମୁଖେ ନୁହେ କହି ।
କୃଷ୍ଣଙ୍କ ନିର୍ମାଲ୍ୟ ଯେହି ମହାମାୟା ବରେ
ଭକ୍ତଜନ ମସ୍ତକେ ବହନ୍ତି ଯେଉଁନରେ ।
ସହସ୍ରକ ଅଶ୍ୱମେଧ ଫଳ ସେ ଲଭନ୍ତି
ଅନ୍ତକାଳେ ତାହାଙ୍କୁ ନ ଲାଗେ ଯମଭ୍ରାନ୍ତି ।
ଦଅଣା ତୁଳସୀ ମିଶାଇ ବକୁଳ ଯେବଣି
ଶ୍ରୀଜଗନ୍ନାଥଙ୍କୁ ଯେହୁ ଶ୍ରଦ୍ଧାରେ ଦଅନ୍ତି ।
ଅନ୍ତକାଳେ ସେହିପ୍ରାଣୀ କୁସୁମ ବିମାନେ
ନିଶ୍ଚିନ୍ତେ ଯାଆନ୍ତି ଚଳି ବୈକୁଣ୍ଠ ଭୁବନେ ।
ଦଅଣା ମହିମା ଅଟେ ଅତିହିଁ ବିଶଦ
ନିମିଷେ ତ୍ୟାଗ କରନ୍ତି ତାହିଁ ପଦ୍ମନେଦ ।

ଯେପରେ ତୁଳସୀଙ୍କେ ବିଷ୍ଣୁଙ୍କର ପ୍ରୀତି
ଦଉଣା ଦଳରେ ତାଙ୍କ ସ୍ନେହ ସେହିମତି ।
ପଚାରିଲ ବୋଲି ଅହେ ମୁନି ମହାତମା
ସଂକ୍ଷେପି କହିଲି ମାତ୍ର ଦମୃଣା ମହିମା ।
ଏମନ୍ତେ ଜୈମିନି ଋଷି ମନ କୁତୁହଳେ
ପ୍ରକାଶିଲେ ଶୌନକାଦି ସର୍ବମୁନି ମେଳେ ।
ଦମୃଣା ମାଳଆ ଜଗନ୍ନାଥଙ୍କ ଚରଣେ
ଏଣିକି ବୈଷ୍ଣବ ଦାସ ଏ ପ୍ରବନ୍ଧ ଭଣେ ।

—:*:—

## ନିର୍ମାଲ୍ୟ ମହିମା ବର୍ଣ୍ଣନ

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ସର୍ବ ମୁନିଗଣ
ନିର୍ମାଲ୍ୟ ମହିମା ଅଟେ ଅତି ଅକଥନ ।
ନିର୍ମାଲ୍ୟ ତୁଳସୀମାଳା ଯେ ପିନ୍ଧନ୍ତି ଗଳେ
ଅଶ୍ୱମେଧ ଯଜ୍ଞଫଳ ସେ ପ୍ରାଣୀଙ୍କି ମିଳେ ।
ନିର୍ମାଲ୍ୟ ତୁଳସୀ ଯେବା କରନ୍ତି ଭକ୍ଷଣ
ସହସ୍ରେକ ଯୁଗ ବିଷ୍ଣୁଲୋକେ ମିଳେ ସ୍ଥାନ ।
ହରିଙ୍କ ପ୍ରସାଦ ଅନ୍ନ ତୁଳସୀ ମିଶ୍ରିତ
ପ୍ରତିଗ୍ରାସେ ସୁଧାପାନ ଫଳ ସୁନିଶ୍ଚିତ ।
ପ୍ରାଣୀମାନେ ଭୁଞ୍ଜିଲେହିଁ ମୁକ୍ତିପଦ ପାନ୍ତି
ଜନନ-ନିଧନେ ଭବାର୍ଣ୍ଣବ ତରିଯାନ୍ତି ।
ବିଷ୍ଣୁ ଅବଶେଷ ଆଦି ଆଚମନ ଜଳ
ଚରଣ ଉଦକ ସ୍ନାନଜଳ ଏ ସକଳ ।
ପ୍ରତି ଏକ ଏକ କରେ ପାପ ବିନାଶନ
ସର୍ବତୀର୍ଥ ଅଭିଷେକ ଫଳ ଉଦେ ଜାଣ !
ପାପଗ୍ରହ ଅଲକ୍ଷ୍ମୀ ରାକ୍ଷସ କରେ ନାଶ
ବେତାଳାଦି ଭୂତପ୍ରେତ ନାଶେ ସର୍ବନାଶ ।
ଶବାଦି ଅମେଧ୍ୟ ସ୍ପର୍ଶ-ଦୋଷ ନାଶକରେ
ସର୍ବପକ୍ଷ ବ୍ରତଫଳ ଧନବୃଦ୍ଧି କରେ ।
ଅକାଳ ମରଣ ନାଶେ ବ୍ୟାଧିକରେ ଧ୍ୱଂସ
ଶବାଦି ଗୋ ମାଂସ ଭକ୍ଷ ପାପ ହୁଏ ନାଶ ।
ଏସବୁ ନିର୍ମାଲ୍ୟେ ବ୍ୟାପ୍ତ ଶରୀର ଯାହାର
ମୃତ ଜାତ ଅଶୁଚ ନ ବାଧେ ସେ ତାହାର ।
ସର୍ବକର୍ମେ ଅଧିକାରୀ ହୁଏ ସେହିଜନ
କଦାଚିତ ପୀଡ଼ା ତାକୁ ନଦିଏ ଶମନ ।

ଏହିସବୁ ନିର୍ମାଲ୍ୟ କି ଅବା ଏକତାର
ଅଳ୍ପ କିମ୍ବା ବହୁ ଯେ କରଇ ସ୍ୱୀକାର ।
ସକଳ ପାତକୁଁ ସେହୁ ହୋଇବ ମୋଚନ
ସର୍ବଜପ୍ତ କଲେଲେ ବୈକୁଣ୍ଠ ଭୁବନ ।
ଏହିରୂପେ ଜୀବଗଣେ ଅନୁଗ୍ରହ କରି
ଶ୍ରୀନୀଳକନ୍ଦରେ ଲକ୍ଷ୍ମୀ ସଙ୍ଗେଛନ୍ତି ହରି ।
ନିର୍ମାଲ୍ୟ ମାହାତ୍ମ୍ୟ ଗୁଣ କେ କହି ପାରିବ
ଯାହାର କି ତତ୍ତ୍ୱ ନ ଜାଣନ୍ତି ସର୍ବଦେବ ।
ଆପଣେ ଶ୍ରୀମୁଖେ ଆଜ୍ଞା କରିଛନ୍ତି ହରି
ପରମ ପାବନ ଅଟେ ନିର୍ମାଲ୍ୟ ମୋହରି ।
ଏଣୁ ପତ୍ର ପୁଷ୍ପ ଆଦି ଯେତେକ ନିର୍ମାଲ୍ୟ
ଅଶେଷ ମହିମା ତାର ଫଳ ଯେ ଅତୁଲ୍ୟ ।
ସଂକ୍ଷେପେ କହିଲ ପ୍ରଭୁ ନିର୍ମାଲ୍ୟର ତତ୍ତ୍ୱ
ଶୁଣିଲେଟିକି ଶ୍ରଦ୍ଧାରେ ସର୍ବ ତପୋବନ୍ତ ।
ଏମନ୍ତେଣ ମହାଋଷି ଜୈମିନି କହନ୍ତି
ଶ୍ରବଣେ ସକଳ ମୁନି କୁତୁହଳୀ ଅତି !
ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନ ଆଜ୍ଞାରେ ପ୍ରକାଶ
ଭଣଇ ହରି ବୋଲଆ ବଇଷ୍ଣବ ଦାସ :

—:*:—

## ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟହ ଭୋଗ ମାହାତ୍ମ୍ୟ

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ମୁନିବର
ପଚାରିଲେ ଜୈମିନିଙ୍କି କରି ସମାଦର ।
ବୋଇଲେ ଆହେ ମହାତ୍ମା ସର୍ବଜ୍ଞ-ପୁରୁଷ
ଅନୁଗ୍ରହ କରି ଏବେ କହ ଆମ୍ଭ ପାଶ ।
ଶ୍ରୀଜଗନ୍ନାଥଦେବଙ୍କ ପ୍ରତ୍ୟହ ମୁଁ ଶୁଣିହିଁ
କେବଣ ବିଧାନେ ହୁଏ କି କି ଭୋଗ ତହିଁ ।
କେଉଁ ଧୂପେ କେଉଁ ଅହ୍ଲାଣିଆ ହୁଏ ନିତ୍ୟ
ପ୍ରକାଶ କରିବା ହେଉ ତାହର ମାହାତ୍ମ୍ୟ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଯାହା ପୁଚ୍ଛିଲ ହେ ମୁନି
ସଂକ୍ଷେପି କହୁଛି ଏବେ ତୁମ୍ଭେ ଶ୍ରଦ୍ଧା ଘେନି ।
ଶ୍ରୀଜଗନ୍ନାଥଙ୍କ ଭୋଗ ଅନେ[illegible]କାର
ପ୍ରତ୍ୟହ ହୁଅନ୍ତି ଭୋଗ ସେ ମଧ୍ୟରେ ସାର ।

ଶ୍ରୀମନ୍ଦିର ନିତ୍ୟ ନୀତି କାଳେ ଆହେ ମୁନି
ଅତି ମନୋହରେ ହୁଏ ଦୁନ୍ଦୁଭିର ଧ୍ୱନି ।
ଆରତିକି ଜାଗରଣ ମଙ୍ଗଳ ଆଳତି
ଦନ୍ତଧାବନେ ତୁଳସୀ କାଷ୍ଠ ସମର୍ପନ୍ତି ।
ଅବକାଶ ଅନ୍ତେ ପ୍ରଭୁ ବସ୍ତୁଲାଗି ହୋନ୍ତି
ନିତ୍ୟ ବେଶସାରି ବାଲ୍ୟଭୋଗକୁ ଭୁଞ୍ଜନ୍ତି ।
ବଲ୍ଲଭ କୋରା ମାଖନ ଦଧି ନାରିକେଳ
ଉତ୍ତମ ଫଳ କେତେକ ମଣୋହି କେବଳ ।
ତଦନ୍ତେଣ ରାଜଭୋଗ ଯେ ସକାଳ ଧୂପ
କ୍ଷୀରି ଖେଚଡ଼ି ସୁବାସ ଶାଲ୍ୟନ୍ନ କଳାପ ।
ନାନାବିଧ ବ୍ୟଞ୍ଜନ ସଙ୍ଗେ ମାଠପୋଳି ବରା
କାନ୍ତି ଏଣ୍ଡୁରି ଆରିସା ଗହମ-କାକରା ।
ଅନେକ ପ୍ରକାର ସ୍ୱାଦୁ ଫଳମାନ କେତେ
ଶାଗଭଜା କଦଳୀର ଭଜା ତା ସହିତେ ।
ସର ଅଧାମ ପାପଡ଼ି ଗୁଣ୍ଡୁଦା ଓଖର
ଘନାବର୍ତ୍ତି ବଡ଼ାଦହି ଛେନା ଦ୍ରବ୍ୟମାନ ।
ଏମନ୍ତେଣ ରାଜଭୋଗ ଭୁଞ୍ଜନ୍ତି ଶ୍ରୀହରି
ସେକାଳର ଯେ ଆନନ୍ଦ କେବା କହିପାରି ।
ରାଜଭୋଗ ବେଳେ ଦେବଦାସୀ କରେ ନୃତ୍ୟ
ଗନ୍ଧର୍ବ ବାଏ ମାଦଳ ସେ ନୃତ୍ୟ ସହିତ ।
ଶଙ୍ଖ ଧ୍ୱନି ଘଣ୍ଟ ଘଣ୍ଟା ହୁଅଇ ବାଜଣା
ସାରକାହାଳୀ ମହୁରୀ ବାଜେ ଅକଳଣା ।
ଶ୍ରୀହରି ନାମରେ ଜଗମୋହନ ଉଚ୍ଛୁଳେ
ଧୂପ ଆଳତି ହୁଅଇ ମହା କୁତୁହଳେ ।
ତଦନ୍ତେ ଦରଜାବନ୍ଦ କରନ୍ତି ସେବକେ
ଟେରାବନ୍ଦ ପୁଣି ଖୋଲି ହୁଏ ମୁହୂର୍ତ୍ତିକେ ।
ରାଜଭୋଗର ବିଧାନ ଅଟଇ ଏସନ
ଛତ୍ରଭୋଗ ବେଳକଥା ଶୁଣ ତପୋଧନ ।
ଭୋଗ ମଣ୍ଡପ ଧୂପ ଯେ ଅଶେଷ ପ୍ରକାର
ବିବିଧ ଅନ୍ନ ବ୍ୟଞ୍ଜନ ଭୁଞ୍ଜନ୍ତି ଶ୍ରୀଧର ।
ଗୋ-ଘୃତ ମିଶ୍ରିତ ଯେ ଖିରିଆ ଅନ୍ନଠିକା
ନାନାପରକାରେ କ୍ଷୀର ପାୟସ କାନିକା ।
ଅନେକ ଖଜା ପିଷ୍ଟକ ଅମୃତ ମଣୋହି
ଭୋଜନ କରନ୍ତି ପ୍ରଭୁ ଜଗତର ସାଇଁ ।
ଯେଉଁ ଭକ୍ତେ ସାଷ୍ଟାଙ୍ଗେ ଥାଆନ୍ତି [illegible]
ଭୋଗମଣ୍ଡପରେ ତା ଭୁଞ୍ଜନ୍ତି ଚକ୍ରପାଣି ।

ଏ ଅନ୍ତେ ଦୁଇ ପ୍ରହର ସମୟର ଧୂପ
ଯୋଗାଣରେ ମଣୋହି କରନ୍ତି ଦେବଭୂପ ।
ଆରିସା ପାଣି କାକରା ଲଡ଼ୁ ଝିଲି ପଣା
କଡ଼ମା ପୁରି ମରିଚଲଡ଼ୁ ଅକଳଣା ।
ଖେଚରାନ୍ନ ପରମାନ୍ନ ଚଷମଇ କ୍ଷୀରି
ଘୃତ ପଖାଳ ସୁବାସ ଅନ୍ନ ତରକାରି ।
ସର ସୁଆଳୀ ମାଣ୍ଡୁଅ ରସାବଳୀ କାନ୍ତି
ଦେବାଧିଦେବ ଏ ସବୁ ମଣୋହି କରନ୍ତି ।
ତଦନ୍ତେ ହବା ପହୁଡ଼ ବିଜୟେ ଶ୍ରୀପତି
ଅପରାହ୍ନ ଧୂପ କାଳେ ପହୁଡ଼ ଭାଙ୍ଗନ୍ତି ।
ମଧ୍ୟାହ୍ନକାଳର ଧୂପ ସାମଗ୍ରୀ ଯେସନ
ଗୋଧନ ବାହୁଡ଼ାକାଳେ ଯୋଗାଣ ତେସନ ।
କ୍ରମେ ସାୟଂକାଳେ ସନ୍ଧ୍ୟା ଆଳତି ବିଧାନ
ତଦନ୍ତେଣ ସନ୍ଧ୍ୟାଧୂପ ଭୋଗ ସୁପଚନ ।
ମାଲପୁଆ ଅମାଲୁ କଚୁରି ପୁଲି ଗଜା
ଲଡ଼ୁ ପାଚେଜାତ କୋରା ଜେନାମଣି ଖଜା ।
କଅଁଳପୋଳି ମୋହନଭୋଗ ମୋତିଚୁର
ଲକ୍ଷ୍ମୀବିଳାସ ଖଇରଚୂଳ ମନୋହର ।
ଖଳିଲୁଟି ଜଗନ୍ନାଥବଲ୍ଲଭ ଖରିମା
ନାନାବିଧ ସରପିଠା କେ କରିବ ସୀମା ।
କ୍ଷୀରି ଖେଚଡ଼ୀ କାନିକା ଓରିଆ ଯେ ଅନ୍ନ
ମିଷ୍ଟାନ୍ନ ଦଧି ପଖାଳ ବାସ ଶାଳିଅନ୍ନ ।
ମିଠା ପଖାଳ ସୁବାସ ପଖାଳ ସହିତେ
ବିବିଧ ପକ୍ୱାନ୍ନମାନ ଗୋରସ ସଙ୍ଗତେ ।
ଶାକରା ଆମ୍ବିଳ ଦହିକଡ଼ି ମଧୁରସ
ଡାଲି ଡାଲମା ମହୁର ବେସର ସୁରୁଚି ।
ଶାକ ଘନୁଳା ଶୁକ୍ତାନି ଦହି କାଞ୍ଜିସାର
ଏମନ୍ତେ ଅନ୍ନ ବ୍ୟଞ୍ଜନ ଅନେକ ପ୍ରକାର ।
ସନ୍ଧ୍ୟାଧୂପ ଅବକାଶ ଆଳତି ଉତ୍ତାରେ
ଦରଜା ବନ୍ଦ କରନ୍ତି ସେବକ ସୁଆରେ ।
ପୁଣି ଦ୍ୱାର ଖୋଲିହୁଏ ତହୁଁ କିଛିକ୍ଷଣେ
ଦର୍ଶନ ବନ୍ଦନ କରୁଥାନ୍ତି ଭକ୍ତଗଣେ ।
ରାତ୍ରି ଅର୍ଦ୍ଧକାଳେ ଭୋଗ ଯେ ବଡ଼ ସିଂହାର
ମନୋହର ବେଶ ହୋନ୍ତି ପ୍ରଭୁ ଚକ୍ରଧର ।
ଶ୍ରୀବଡ଼ ସିଂହାର ଧୂପ ସବୁହୁଁ ପରସ
ନାନା ପିଠାପଣା ସଙ୍ଗେ ମିଷ୍ଟାନ୍ନ [illegible] ।

ସୁବାସ କ୍ଷୀର ଖେଚେଡ଼ି ପକ୍ୱାନ୍ନ ବ୍ୟଞ୍ଜନ
ଛେନା ଚାଡ଼ୁଆ ସହିତେ ସରପିଠାମାନ ।
କେଳା ପୁଳି କଦମ୍ବା ଆଦି ଯେ ନାନା ଖଜା
ଶ୍ୱେତ ଖଜା ଭକ୍ତବର କରିଛନ୍ତି ଖଞ୍ଜା ।
କେତେ ବା କହିବି ସେହି ଭୋଗ ବିବରଣ
ଅସଙ୍ଖ୍ୟ ପ୍ରକାର ଯହିଁ ଖଜା ପିଠାମାନ ।
ଶ୍ରୀବଡ଼ ସିଂହାର ଧୂପ ଅନ୍ତେ ଆହେ ମୁନି
ସୁବାସ ବଡ଼ଆ ଲାଗି ହୋନ୍ତି ଚକ୍ରପାଣି ।
ଆଲତି ଶୃଙ୍ଗାରଲାଗି ଅନ୍ତେ ପୀତବାସ
ପହୁଡ଼କୁ ବିଜୟନ୍ତେ ଯେ କମଳା ବିଳାସ ।
ସୁବାସ ପଣାର ଜଳ ନାରିକେଳ ଜଳ
ବାସ କର୍ପୂର କୁସୁମମାଳ ଝୁରିଫୁଲ ।
ଗଜଦନ୍ତ ପଲଙ୍କର ପାରୁଶେ ଖଟଣି
ସେବକମାନେ ଖଟନ୍ତି ଯଥା ବେଳଜାଣି ।
ପଲଙ୍କଲାଗି ହୁଅନ୍ତି ଲକ୍ଷ୍ମୀ ଜଗନ୍ନାଥ
ବଳଭଦ୍ର ସୁଦର୍ଶନ ସୁଭଦ୍ରାଙ୍କ ସାଥ ।
ପହୁଡ଼ ବିଜେ ହୁଅନ୍ତେ ପ୍ରଭୁ ଚକ୍ରଧର
ନିଯୋଗେ ବନ୍ଦ କରନ୍ତି ସକଳ ଦୁଆର ।
ଛପନ ପ୍ରକାର ଭୋଗ ଏ ମଧ୍ୟରେ ଜାଣ
ଛତିଶ ନିଯୋଗେ ସେବା ମିତ ପରମାଣ ।
ମାଦଳା ପାଞ୍ଜି ମତେ ଯେ ଚଳେ ସେବା କାର୍ଯ୍ୟ
ଭିଆଇ ଅଛନ୍ତି ଆପେ ଶ୍ରୀଦେବାଧିରାଜ ।
ପ୍ରଭୁଙ୍କ ବେଶ ବିଧାନ ଶୁଣ ମୁନିଗଣ
ମଙ୍ଗଳ ଆଳତି ବେଶ ପ୍ରାତଃ ସମୟେଣ ।
ପୂର୍ବାହ୍ଣରେ ଫୁଲ ବେଶ ଅତି ମନୋହର
ନିତ୍ୟ ବେଶ ମଧ୍ୟାହ୍ନରେ ବଡ଼ ଚମତ୍କାର ।
ଗୋଧନ ବାହୁଡ଼ା ବେଶ ଅପରାହ୍ଣ କାଳେ
ସନ୍ଧ୍ୟା ଧୂପେ ରାଜବେଶ ନାନା ଫୁଲମାଳେ ।
ଶ୍ରୀବଡ଼ସିଂହାର ବେଶ ହୋନ୍ତି ରାତ୍ର ଅର୍ଦ୍ଧେ
ଆଉ ନାନା ବେଶ ହୋନ୍ତି ବରଷକ ମଧ୍ୟେ ।
ସବୁହିଁ ଅତି ସୁନ୍ଦର ନଟବର ବେଶ
ଅପୂର୍ବ ଠାଣିରେ ଉଭା ପ୍ରଭୁ ହୃଷୀକେଶ ।
ଶ୍ରୀଜଗନ୍ନାଥଙ୍କ ଲୀଳା ମହିମା ଅପାର
ଭକ୍ତଙ୍କୁ ବିତରନ୍ତି କୈବଲ୍ୟ ଭଣ୍ଡାର ।
ଦୀନବନ୍ଧୁ କୃପାସିନ୍ଧୁ ଦରିଦ୍ରଙ୍କ ଧନ
ନିର୍ମାଲ୍ୟ ପ୍ରଦାନେ ପାପ କରନ୍ତି ମୋଚନ ।

ଏହିରୂପେ ଜୀବଗଣେ କରନ୍ତି ଉଦ୍ଧାର
ଭକ୍ତଙ୍କ ଜୀବନ ପ୍ରଭୁ କରୁଣା-ସାଗର ।
ଅଯାଚତେ ଯାଚି ଦିଅନ୍ତି କୈବଲ୍ୟ ଭଣ୍ଡାର
ସର୍ବ ପ୍ରାୟଶ୍ଚିତ୍ତ ସାର ନିର୍ମାଲ୍ୟ ନିକର ।
ପତିତ ଜନମାନଙ୍କୁ ତାରିବାର ଛଳେ
ପତିତପାବନ ବାନା ଉଡ଼ାନ୍ତି ଦେଉଳେ ।
ଅଗତି ପ୍ରାଣୀଙ୍କ ଗତି ପ୍ରଭୁ ଲକ୍ଷ୍ମୀପତି
ଜୀବ ନିସ୍ତାରଣେ ଆପେ ଚତୁର୍ଦ୍ଧା ମୂରତି ।
ଦାରୁବ୍ରହ୍ମ ନାରାୟଣ ଜଗତ କାରଣ
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ ଧାରଣ ।
ଏମନ୍ତ ମହାପ୍ରଭୁ ଯେ ବ୍ରହ୍ମାଣ୍ଡ ଠାକୁର
ଶରଣାଗତ ପାଳକ ଦେବ ଦାମୋଦର ।
ଦୁରିତ ନାଶନ ହରି ଶ୍ୱେତପଦ୍ମ ଡୋଳା
ଭକତଙ୍କ ଭାବେ ସଦା ହୋଇଛନ୍ତି ଭୋଳା ।
ସେହି ଗମ୍ଭୀରି ସାମନ୍ତଙ୍କର ସେବା ଦାସ
ତାଙ୍କ ଦାସାନୁଦାସ ମୁଁ ବଇଷ୍ଣବ ଦାସ ।
ସ୍ୱପନ ଆଦେଶମତେ ଲେଖଇ ଏ ଗ୍ରନ୍ଥ
ଦୋଷ ନ ବାଛିବେ ମୋର ସର୍ବ ସାଧୁ ସନ୍ଥ ।

— × —

## ପୁଷ୍ପ ଫଳ ପ୍ରଦାନ ମହିମା

ଜୈମିନି ଉବାଚ

ଏଥିଅନ୍ତେ କହନ୍ତି ସେ ଶ୍ରୀଜୈମିନି ଋଷି
ଶୁଣ ସର୍ବ ମୁନିମାନେ ବିଶ୍ୱାସରେ ବସି ।
*ନିର୍ମାଲ୍ୟ ଚରଣାମୃତ ପ୍ରସାଦ ଦାନରେ
ସ୍ତବ ଦରଶନ ଉପହାର ପ୍ରଣାମରେ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମୁକ୍ତିଦାତା
ଜଗତ ମଧ୍ୟରେ କାହିଁ ନାହିଁ ଏ କ୍ଷମତା ।
କହୁଛି ମୁଁ ବାରମାସ ବ୍ରତର ନିୟମ
ପ୍ରତି ଦିବସ ପୂଜିବ ଶ୍ରୀପୁରୁଷୋତ୍ତମ ।
ଚୈତ୍ର ଠାରୁ ଫାଲ୍‌ଗୁନ ପର୍ଯ୍ୟନ୍ତ ସମସ୍ତୁଲେ
ଜଗନ୍ନାଥଙ୍କୁ ପୂଜିବ ନାନା ଫଳ ଫୁଲେ ।
କ୍ରମେ ତାହା କହୁଅଛି ଏକେ ଏକେ ମୁହିଁ
ସକଳ ତାପସେ ଏବେ ଶୁଣ ମନଦେଇ ।

*ନିର୍ମାଲ୍ୟ ପାଦାମ୍ବୁ ନୈବେଦ୍ୟାନାଂ ।
ଲେଶୈସ୍ତବାଲୋକନ ସ୍ତ ପ୍ରଣାମୈଃ ॥
ପୂଜୋପହାରୈନ୍ତି ବିମୁକ୍ତି ଦାତା ।
କ୍ଷେତ୍ରୋତ୍ତମେ ଶ୍ରୀପୁରୁଷୋତ୍ତମାଖ୍ୟଃ ॥

ଅଶୋକ ମାଳତୀ ଯୂଥି କଦମ୍ବ ପାଟଳୀ
କରବୀର କୁନ୍ଦ ଜାଇ ମଲ୍ଲିକା ନଆଳୀ ।
କମଳ କୁମୁଦ ନୀଳଉତ୍ପଳ ଟଗର
ବାସନ୍ତୀ ପୁନ୍ନାଗ ହେନା ଚମ୍ପା ନାଗେଶ୍ୱର ।
ସୁଗନ୍ଧରାଜ ସେବତୀ କେତକୀ ସୁମନା
ବକୁଳ ଗଙ୍ଗଶିଉଳୀ ଫୁଲ ତୁଳସୀଅନା ।
ଏହିପରି ବିଷ୍ଣୁ ପ୍ରିୟ ଫୁଲମାନ ଯେତେ
ସାଦରେ ସମରପିବ ପ୍ରଭୁ ଜଗନ୍ନାଥେ ।
ଯେଉଁ ଯେଉଁ ଫଳମାନ ହୁଏ ବାରମାସେ
ଶ୍ରୀହରିଙ୍କି ନିବେଦନ କରିବ ହରଷେ ।
ଆମ୍ବ ପଣସ ଖର୍ଜ୍ଜୁର ସପୁରି ଶ୍ରୀଫଳ
ଡାଳିମ୍ବ ଅମୃତଭଣ୍ଡା ଆଉ ନାରକେଳ ।
ତାଳସଜ ଦ୍ରାକ୍ଷା ଜାମ୍ବୁ ଜମ୍ବୀର ପିଜୁଳି
ଆମଳକୀ ହରିତକୀ ପକ୍ୱ କ୍ଷୀରକୋଳି ।
ପାଚିଲା କଦଳୀ ନିର୍ଗୁ ନାରଙ୍ଗ କମଳା
ଜାତିଫଳ କରମଙ୍ଗା କନ୍ଦମୂଳ ମୂଳା ।
ଯେଉଁ ସମୟରେ ଯେଉଁ ଫଳ ମୂଳମାନ
ଯତନେ ଜଗନ୍ନାଥଙ୍କୁ କରିବ ପ୍ରଦାନ ।
ଭକ୍ଷ୍ୟ ଭୋଜ୍ୟ ଲେହ୍ୟ ଚୂଷ୍ୟ ମିଷ୍ଟାନ୍ନ କରି
ଦ୍ୱାଦଶ ମାସରେ ଦେଇ ପୂଜିବ ଶ୍ରୀହରି ।
ସାମ୍ବତ୍ସରିକ ବ୍ରତ ଏ ସର୍ବ ଫଳଦାତା
କରିଥିଲେ ନାରଦାଦି ମହା ତପୋବନ୍ତା ।
ଦ୍ୱାଦଶ ବର୍ଷ ଏ ବ୍ରତ କରି ମୁନିବର
ଜୀବନ୍ମୁକ୍ତ ହୋଇଲେ ସେ ବ୍ରହ୍ମାଣ୍ଡ ମଧ୍ୟର ।
ଅଷ୍ଟୈଶ୍ୱର୍ଯ୍ୟ ଇନ୍ଦ୍ରପଦ ମିଳେ ଏହି ବ୍ରତେ
ସକଳ ବ୍ରତର ଫଳ ପ୍ରାପ୍ତ ହୁଏ ଏଥେ ।
ସର୍ବ ଅନ୍ତର୍ଯ୍ୟାମୀ ପ୍ରଭୁ ତ୍ରିଭୁବନପତି
ପ୍ରତିମା ଛଳେ ଶ୍ରୀନୀଳାଚଳେ ରହିଛନ୍ତି ।
ଅନ୍ୟ କି ସଂଶୟ ଏଥେ ଦେଖ ହେ ସାକ୍ଷାତ
ବ୍ରାହ୍ମଣ ଚଣ୍ଡାଳ ଏକପଙ୍କେ ଖାନ୍ତି ଭାତ ।
ଏଣୁକରି ଅନ୍ୟ ସବୁ କାମନାକୁ ତେଜ
ନୀଳାଚଳେ ବାସକରି ଜଗନ୍ନାଥେ ଭଜ ।
ଅପୂର୍ବ ସୁଖ ଆନନ୍ଦ କରିବ ହେ ଲଭ
କରୁଣା କରିବେ ଦୟାନିଧି ପଦ୍ମନାଭ ।
ସେ ଚକା ନୟନ ଜଗନ୍ନାଥଙ୍କ ଚରଣ
ଶରଣାଗତ ଏ ଦାସ ବୈଷ୍ଣବ ଚରଣ ।

## କ୍ଷେତ୍ର ଯାତ୍ରା ଫଳ

( ସୁଦନ୍ତ ସୁମନ୍ତ ଆଖ୍ୟାନ )

ଶୌନକ ଉବାଚ

ଶୌନକ ମୁନିବର ଯେ ଏଥିଅନ୍ତେ ପୁଣି
ପଚାରିଲେ ଜୈମିନିଙ୍କୁ ମଧୁରେ ବଚନ ।
ହେ ସର୍ବଜ୍ଞ ଋଷି ତୁମ୍ଭେ ମହାଭାଗ୍ୟବନ୍ତ
କ୍ଷେତ୍ର ଯାତ୍ରା ଫଳ ଏବେ ଆମ୍ଭଙ୍କୁ କହନ୍ତ ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଚିତ୍ତେ ଆନନ୍ଦିତ ମନେ
ମନକର୍ଣ୍ଣ ଦେଇ ଶୁଣ ମୁନି ସାବଧାନେ ।
ଅତି ବିଚିତ୍ର ଅଟଇ କ୍ଷେତ୍ର ଯାତ୍ରା ଫଳ
ସଂକ୍ଷେପି କହୁଅଛି ତୁମ୍ଭ ଆଗେ ତା ସକଳ ।
ଶ୍ରୀକ୍ଷେତ୍ରରେ ମଲେ ମୁକ୍ତି ମିଳଇ ନିଶ୍ଚୟ
ଏଥିରେ କିଞ୍ଚିତ ମାତ୍ର ନାହିଁଟି ସଂଶୟ ।
ବିଦ୍ୱାନ ଧାର୍ମ୍ମିକ କିବା ମହାପାପୀ ନରେ
ମୁକତି ଲଭ କରନ୍ତି ସର୍ବେ ଅବଶ୍ୟରେ ।
ପଶୁ ପକ୍ଷୀ ପତଙ୍ଗ ଯେ କୀଟ ଆଦି କରି
ସର୍ବଙ୍କି ସମାନ ମୁକ୍ତି ଦିଅନ୍ତି ଶ୍ରୀହରି ।
ମରଣ ଇଚ୍ଛନ୍ତି ଦେବେ ଅନ୍ୟର କି କଥା
ମିଳଇ ସାରୂପ୍ୟ ମୁକ୍ତି ନୁହଇ ଅନ୍ୟଥା ।
ଭାଗ୍ୟବାନ ଶ୍ରଦ୍ଧାକରେ ଏ ସବୁ ବଚନେ
ଅବିଶ୍ୱାସ ଏଥିରେ କରନ୍ତି ପାପୀମାନେ ।
ଅନାଦି ଭ୍ରମରେ ଅନ୍ଧ ଅଧମ ଅଜ୍ଞାନ
କଦାଚିତ ନ ଜାଣନ୍ତି ଏ ସବୁ ସନ୍ଧାନ ।
ଯୋଗସାଧି ମୁକ୍ତି ପାନ୍ତି ଯେତେ ଯୋଗୀଜନ
ଶ୍ରୀକ୍ଷେତ୍ରରେ ମଲେ ମୁକ୍ତି ନାହିଁ ଯେ ନିୟମ ।
ଏହି ପ୍ରସଙ୍ଗରେ ଶୁଣ ଏକ ଇତିହାସ
ଯାହା ଶୁଣିଲେ ଚିତ୍ତରେ ବଢ଼ଇ ଉଲ୍ଲାସ ।
ରୁଦ୍ର ଅଂଶେ ଜନମ ଦୁର୍ବାସା ଋଷିବର
ଶ୍ରୀକ୍ଷେତ୍ର ମହିମା ଶୁଣି ବ୍ରହ୍ମାଙ୍କ ପାଖର ।
ଆନନ୍ଦରେ ଶୁଣାଇଲେ ବୁଲି ତ୍ରିଭୁବନେ
ଏକଦିନ ପୃଥିବୀକି ଚଳିଲେ ଆପଣେ ।
ମର୍ତ୍ତ୍ୟଜନ ଆଚାର ଦେଖନ୍ତି ମୁନିବର
ମଧ୍ୟ ନିଦାଘରେ ମିଳିଲେ ହୋଇ ହର୍ଷଭର ।

ସେହି ମଧ୍ୟଦେଶେ ଦୁଇ ବ୍ରାହ୍ମଣ ନନ୍ଦନ
ଏକ ତପନିଷ୍ଠ, ବିଷ୍ଣୁ ଭକ୍ତ ଏକ ଜଣ ।
ସୁଦନ୍ତ ସୁମନ୍ତ ଅଟନ୍ତି ସେ ଦୁହିଙ୍କ ନାମ
ସେ ବେନି ସୋଦର ସର୍ବଗୁଣେ ଅନୁପମ ।
ସଦାଭକ୍ତି ଭାବେ ପୂଜନ୍ତି ଭଗବାନେ
ଦୈବେ ମତିଚ୍ଛନ୍ନ ହେଲା କୁ-ସଙ୍ଗ କାରଣେ ।
ଏକ ବଉଦ୍ଧ ନାସ୍ତିକ ମିଳିଲା ସେଠାରେ
ବୁଦ୍ଧିହତ କରାଇଲା କୁମାର୍ଗ ବର୍ତ୍ମରେ ।
ନାସ୍ତିକଙ୍କ ମତେ ସେହି ଦୁଷ୍ଟ ବଳବାନ
ସୁମନ୍ତର ନିଜମତ କଲା ବିଖଣ୍ଡନ ।
ଆପଣା ମତ ତାହାକୁ ପ୍ରଦାନ ସେ କଲା
ମୁକ୍ତିବନେ ଭକ୍ତିଭାବ ତାର ଛଡ଼ାଇଲା ।
ବିଷ୍ଣୁ ପୂଜା ଗୁଡ଼ି ହେଲା ବିଷୟରେ ରତ
କୁ-ସଙ୍ଗୀଙ୍କ ସଙ୍ଗରେ ଭୁଲିଲା ଧର୍ମପଥ ।
ପରହିଂସା ଚୋର ନାରୀ କଲା ସେ ବିସ୍ତର
ପରଦ୍ରୋହୀ ପରନିନ୍ଦା କରେ ନିରନ୍ତର ।
ଦୈବେ ଦିନକର ଏକ ଦୈବଜ୍ଞ ପ୍ରଧାନ
ସେ ଦୁହିଁଙ୍କ ନିକଟକୁ କଲେ ଆଗମନ ।
ବିନୟେ ଦୁହେଁ ପୁଚ୍ଛିଲେ ସେ ଜ୍ୟୋତିଷପାଶେ
ଆମ୍ଭ ପରମାୟୁ କେତେ କହନ୍ତୁ ବିଶେଷେ ।
ଗଣନା କରି ଗଣକ କହିଲେ ସତ୍ୱରେ
ପଞ୍ଚବିଂଶ ଦିବସ ଦେଖିଲି ଗଣନାରେ ।
ଆଜଠାରୁ ଯେ ପଚିଶ ଦିନ ଅନ୍ତେ ଜାଣ
ଦୁଇ ଭାଇଙ୍କର ନିଶ୍ଚେ ଘଟିବ ମରଣ ।
ତା ଶୁଣି ବିଷାଦେ ଦୁହେଁ ଭାବିହେଲେ ମନେ
ମରଣ ନିକଟ ହେଲା ଉପାୟ କେସନେ ।
ତପରେ ସୁଦନ୍ତ ତହୁଁ ନିଯୋଗିଲା ମନ
ବ୍ରାହ୍ମଣଙ୍କୁ ଦେଲା ଘରେ ଥିଲା ଯେତେ ଧନ ।
ସୁମନ୍ତ ପୁଚ୍ଛେ ଗଣକେ କରି ବିନୟ
କେଉଁ ସ୍ଥାନେ ମୁଁ ମରିବି କହ ମହାଶୟ ।
ଗଣକ ଗଣି କହଇ ତୁମ୍ଭେ ଭାଗ୍ୟବାନ
ବୃହସ୍ପତି ହନ୍ତି ତବ ନିଧନର ସ୍ଥାନ ।
ଦେବକ୍ଷେତ୍ରେ ଯାଇ ହେବ ତୁମ୍ଭର ମରଣ
କୈବଲ୍ୟ ପାଇବ ନିଶ୍ଚେ ସତ୍ୟ ଏ ବଚନ ।
ତାହାର କାରଣ ବିପ୍ର କହୁଛି ମୁଁ ଶୁଣ
ପୁରୁଷୋତ୍ତମ ନାମେଣ କ୍ଷେତ୍ର ସୁପାବନ ।

ଦାରୁରୂପେ ଭଗବାନ ଯହିଁ ଦୟାମୟ
ସଦା ବାଞ୍ଛନ୍ତି ମୁକ୍ତ କରୁଣ ହୃଦୟ ।
ବ୍ରହ୍ମ-ନିର୍ବାଣ ଯେ ତୁମ୍ଭେ ପ୍ରାପ୍ତ ହେବ ତହିଁ
ସତ୍ୟ କହୁଛି ଏଥିରେ ସଂଶୟ ଯେ ନାହିଁ ।
ଏହା ଶୁଣି ଗଣକକୁ ମେଲାଣି ସେ ଦେଲା
ସୁମନ୍ତ ଦ୍ୱିଜ ଏକାନ୍ତେ ବସିଣ ଭାବିଲା ।
କି ରୂପେ ଯିବି ଶ୍ରୀକ୍ଷେତ୍ରେ ଅଟଇ କେଉଁସ୍ଥାନ
ପରମାୟୁ ଶେଷହେଲା ନିକଟ ମରଣ ।
ଏହିମତେ ମନେ ଚିନ୍ତା କରେ ସେ ବ୍ରାହ୍ମଣ
ଯେଉଁକାଳେ ଆଇଲେ ଦୁର୍ବାସା ତପୋଧନ ।
ସମ୍ଭ୍ରମେ ଉଠି ସେ ଦ୍ୱିଜ ପାଦ୍ୟ ଅର୍ଘ୍ୟଦେଇ
ଦଣ୍ଡବତ କଲା ତାଙ୍କୁ ଆସନେ ବସାଇ ।
ବେନିକର ଯୋଡ଼ି କହେ ଗଦ୍‌ଗଦ ବଚନ
ମୋ ଭାଗ୍ୟକୁ ଏଥି ହେଲା ତବ ଆଗମନ ।
କୃତାର୍ଥ ହୋଇଲି ଆଜ ଦର୍ଶନେ ତୁମ୍ଭର
ପୂର୍ବ ଜନ୍ମାର୍ଜିତ ପୁଣ୍ୟ ଫଳିଲା ମୋହର ।
ଯଦ୍ୟପି କୃତାର୍ଥ ମୁହିଁ ତବ ଆଗମନେ
ତଥାପି ଅମୃତ ଆଜ୍ଞା ବାଞ୍ଛଇ ଶ୍ରବଣେ ।
ତା ଶୁଣି ହସି କହନ୍ତି ତହୁଁ ମୁନିବର
ନ ଜାଣ କି ବିପ୍ର ତୁମ୍ଭେ ମହାଭାଗ୍ୟ ଧର ।
ମୁକ୍ତିହେବ ଶ୍ରୁତି ଆଦି ସାଧନ ବିହୀନେ
ତୁମ୍ଭର ଭାଗ୍ୟର ସୀମା ନାହିଁ କରେ ମନେ ।
ଏହାଶୁଣି କହେ ଦ୍ୱିଜ କରିଣ ବିନୟ
ଦାସେ ପରିହାସ ଏ କି କରୁଣା ଭରଣି ।
ଅନୁଗ୍ରହ ହୋଇ ଯଦି କହ ସତ୍ୟ କରି
ମୁହିଁ ଅତି ଦୁରାଚାର ମହାପାପକାରୀ ।
ନିରବଧି ସେବିଲଇଁ ଏ ଇନ୍ଦ୍ରିୟଗଣେ
କର୍ମଫଳ ଲୋଭି ମୁଁ ଏ ପାପିଷ୍ଠ ଜୀବନେ ।
କେମନ୍ତେ ପାଇବି ମୁକ୍ତି ଅସମ୍ଭବ ବାଣୀ
ଅନୁଗ୍ରହ କରି ମୋରେ କହ ମହାମୁନି ।
ଏହାଶୁଣି ସେ ଦୁର୍ବାସା କହିଲେ ସତ୍ୱରେ
ପୂର୍ବର ବୃତ୍ତାନ୍ତ ଶୁଣ କହୁଛି ତୁମ୍ଭରେ ।
ଗତଜନ୍ମେ ତୁମ୍ଭେ ଯେବେ ନିଜ ବନ୍ଧୁଗଣ
ଶ୍ରୀପୁରୁଷୋତ୍ତମ କ୍ଷେତ୍ରେ କଲ ଯେ ଗମନ ।
ମାଘମାସେ ଭୈମୀ ଏକାଦଶୀର ଦିବସ
ମହାସ୍ନାନେ କ୍ଷୀଣ ହେଲା ସକଳ କଲ୍ମଷ ।

ଏକାଦଶୀ ବ୍ରତ ଆଉ ରାତି ଜାଗରଣ
ଉପରାନ୍ତରେ କଲ ଜଗନ୍ନାଥଙ୍କୁ ପୂଜନ ।
ପୁଣି ପ୍ରାତଃ ସ୍ନାନକରି ପୂଜି ଜଗନ୍ନାଥେ
ଦ୍ୱିଜଗଣେ ବହୁଦାନ କଲ ହର୍ଷଚିତ୍ତେ ।
ବନ୍ଧୁଗଣ ସାଥେ ଗୃହେ ବାହୁଡ଼ି ଆସିଲ
ସକଳ କର୍ମ୍ମ ବନ୍ଧନୁ ମୁକତ ହୋଇଲ ।
ଅତି ଗୋପନ ଶ୍ରୀକ୍ଷେତ୍ର ଅଟଇ ଉତ୍କଳେ
ଅଭାଗ୍ୟବନ୍ତ ଜନଙ୍କୁ ସେ କ୍ଷେତ୍ର ନମିଳେ ।
ଶୁଣ ଆହେ ଦ୍ୱିଜବର କହୁଛି ତୁମ୍ଭରେ
ମୁକ୍ତହେଲ ସତ୍ୟ ପାପସାଗରୁ ସତ୍ୱରେ ।
ମାତ୍ର ତୁମ୍ଭେ ଗୃହେ ପୁଣି କରନ୍ତେ ଗମନ
ବାଟରେ ଅଶୁଚି ଅନ୍ନ କଲ ଯେ ଭୋଜନ ।
ବିଶେଷେ ପାଷଣ୍ଡ ସଙ୍ଗେ ଦୁର୍ବୁଦ୍ଧି ଘଟିଲ
ଏଣୁ ପୁନର୍ବାର ମର୍ତ୍ତ୍ୟେ ଜନ୍ମିବାକୁ ହେଲ ।
କିନ୍ତୁ ପୂର୍ବଜନ୍ମେ କଲ ଶ୍ରୀହରି ଦର୍ଶନ
ଅକ୍ଷୟ ସେଫଳ ନଷ୍ଟ ନୁହେ କଦାଚନ ॥
ସେହି ଯେ ଦର୍ଶନ ବୀଜ ସୁବୃକ୍ଷ ହୋଇଲା
ତାହାର ଫଳ ଅକ୍ଷୟ ସମ୍ପ୍ରତି ଫଳିଲା ।
ଶ୍ରୀପୁରୁଷୋତ୍ତମେ ହେବ ତୁମ୍ଭର ମରଣ
ନିଶ୍ଚୟ ତୁମ୍ଭେ କୈବଲ୍ୟ ପାଇବ ହେ ଜାଣ ।
ଏଣୁ ତୁମ୍ଭର ଗୃହରେ ଅଛି ଯେତେ ଧନ
କୁଟୁମ୍ବ ବ୍ରାହ୍ମଣଗଣେ କର ସମର୍ପଣ ।
ଶୀଘ୍ରେ ଚଳ ଜଗନ୍ନାଥ ଦର୍ଶନ କାରଣ
କ୍ଷଣେମାତ୍ର ବିଳମ୍ବ ନକର କଦାଚନ ।
ଜୈମିନି କହନ୍ତି ପୁଣି ଶୁଣ ମୁନିଗଣ
ମହିମା ଖଣ୍ଡରେ ଏହି ପୀୟୂଷ ମିଳନ ।
ଦୁର୍ବାସାଙ୍କ ଉପଦେଶ ପାଇ ଦ୍ୱିଜବର
ମାୟା ମୋହ ତେଜି ଧନ ବାଣ୍ଟିଦେଲା ତାର ।
ସକଳ ବିଷୟେ ହେଲା ବିବେକ ସୁମନ୍ତ
ବାହାର ହୋଇଲା ଘରୁ ଶ୍ରୀହରିଙ୍କି ଚିନ୍ତି ।
ଦୁର୍ବାସାଙ୍କ ସଙ୍ଗେ ଦ୍ୱିଜ ଚଳିଲା ବହନ
ଦୁଇଦିନ ଏକତ୍ର ଗମିଲେ ଦୁଇଜଣ ।
ତୃତୀୟ ଦିବସେ ଯେ ଦୁର୍ବାସା ତପୋଧନ
ସୁମନ୍ତର ଶୁଦ୍ଧମନ ପରୀକ୍ଷା କାରଣ ।
ବିଶେଷେ କେମନ୍ତ ଜଗନ୍ନାଥେ ଭକ୍ତିମୟ
ଜାଣିବାକୁ ହେଲେ ମୁନି କୌତୁକ ହୃଦୟ ।

ଆଚମ୍ବିତେ ଅନ୍ତର୍ଦ୍ଧାନ ହେଲେ ମୁନିବର
ତାହାଙ୍କୁ ନ ଦେଖି ଦ୍ୱିଜ ହୋଇଲା କାତର ।
କାନ୍ଦଇ ସୁମନ୍ତ ଦ୍ୱିଜ ବିକଳ ହୋଇଣ
କି କର୍ମ୍ମ କଲିଟି ମୁହିଁ ତେଜିଣ ସଦନ ।
କାହିଁ ରହିଲେ ମୋପୁତ୍ରେ କାହିଁ ମୋଘରଣୀ
ଏବେ ମୋତେ ଛାଡ଼ି କେଉଁଣେ ଗଲେ ମହାମୁନି ।
କେଉଁଦେଶେ ଅଛେ ଦୁର୍ବାସାଙ୍କ ଯେ ବସନ୍ତି
ଆହା କେଉଁଣେ ଯିବି କି ହୋଇବ ମୋର ଗତି ।
ସେପରି ସୁହୃଦ ସବେ ମୋ କୁଟୁମ୍ବମାନେ
କାହିଁକି ବା ତେଜି ମୁଁ ଆଇଲି ଘୋରବନେ ।
ଅପ୍ରାପ୍ତ ଯେଉଁ ଶ୍ରୀକ୍ଷେତ୍ର ମୁକ୍ତିର କାରଣ
ଅଟି ଅସମ୍ଭବ ଅଟେ ସେ ସ୍ଥାନ ଦର୍ଶନ ।
ଭିକ୍ଷାସୀ ଗଣିକ ସେ ଯେ ପ୍ରବଞ୍ଚକଜନ
ବିଶ୍ୱାସ କଲି ମୁଁ ତାର କହିବା ବଚନ ।
ମିଥ୍ୟା ବାକ୍ୟ ଶୁଣି ତେଜିଲି ମୋ ପତ୍ନୀପୁତ୍ରେ
ଦୈବେ ପ୍ରବଞ୍ଚନା କରି କଲାଭିକ୍ଷୁ ମୋତେ ।
ଆହା ଗୃହରେ ମୋହର ଥିଲା ବହୁଧନ
ତାହାଛାଡ଼ି ଚୋରସମ କଲିଯେ ଭ୍ରମଣ ।
ଚିନ୍ତାକରି କାନ୍ଦି କାନ୍ଦି ସେ ଦ୍ୱିଜ ଏମନ୍ତେ
ଗମନ କଲାକ ସେହି ଶୂନ୍ୟ ବନପଥେ ।
ସେହି କାଳରେ ଆଶ୍ଚର୍ଯ୍ୟ କରେ ଦରଶନ
ଦୁର୍ବାସା ନିର୍ମିତ ମାୟା ଅତି ମନୋରମ ।
ସୁନ୍ଦରୀ ରମଣୀ ଏକ ଜଣି ବିଦ୍ୟାଧରୀ
ମୁନି ମନ ମୋହି ହେବ ଦେଖି ତା ମାଧୁରୀ ।
କୁଞ୍ଚିତ କୁନ୍ତଳା ସ୍ନିଗ୍ଧ ପୂର୍ଣ୍ଣଚନ୍ଦ୍ରାନନା
ସୁନ୍ଦର ଶ୍ରବଣ ନାସା ତିଳଫୁଲ ଜିଣି ।
ଲୁଚିଅଛି କନ୍ଦର୍ପ ତାର ନୟନର କୋଣେ
ଯୋଖି ତା କଟାକ୍ଷ ବାଣ ଭ୍ରୂର କମାଣେ ।
ଯୁବା ପୁରୁଷଙ୍କ ହୃଦେ ବିନ୍ଧେ ଅନିବାର
ତାରୂପ ଦେଖି ଅପ୍ସରା ତେଜେ ଅହଂକାର ।
ସୁରଙ୍ଗ ଅଧର ଦନ୍ତ ମୁକୁତାର ପନ୍ତି
କଣ୍ଠେ ରଞ୍ଜିତ ନେତ୍ର ମନେ ହର କାନ୍ତି ।
ଲଲାଟେ ସିନ୍ଦୂର ବିନ୍ଦୁ ଚିବୁକ ଚିକ୍କଣ
ବଦନ ଦେଖିଲେ କାନ୍ଦି ଭୁଲିବ ମଦନ ।
କଟି କ୍ଷୀଣ ଜିଣି ତାର ପୀନ-ପୟୋଧର
ମୃଣାଳ ବାହୁ ଯୁଗଳ କୋକନଦ କର ।

କ୍ଷୀଣ ମଧ୍ୟମା ଅଳସଭାଙ୍ଗେ ଅଙ୍ଗଭରେ
ବାନ୍ଧି ବାନ୍ଧିଅଛୁ ତାହା ନୀବିଳୀର ଡୋରେ ।
ବିପୁଳ ନିତମ୍ବ ଉରୁ କି ହେମ-କଦଳୀ
ଯୌବନ ଭରେ ମନ୍ଥର ଭାବେ ଯାଏ ଚଳି ।
ନାନାଅଳଙ୍କାରେ ଅଙ୍ଗ ଶୋଭାପାଏ ଅତି
ଅଙ୍ଗ ସୌରଭେ ଭ୍ରମରେ ପଛେ ଧାଉଁଛନ୍ତି ।
ତାହାକୁ ଦେଖି ବ୍ରାହ୍ମଣ ଚକିତ ହୁଅଇ
କେଉଁ ଦେବୀ ମାନବୀରୂପେ କି ବିହରଇ ।
ଆଚମ୍ବିତ କଥା ଶୁଣ ଆହେ ମୁନିଗଣ
ମୋହିନୀ ବାଳୀକି ଦେଖି ମୋହିତ ବ୍ରାହ୍ମଣ ।
ମନେ ମନେ ଭାବନା କରଇ ଦ୍ୱିଜବର
ଏକାକିନୀ ଯାଏ ବାଳା ନଗର ଭିତର ।
ଏମନ୍ତ ସୁନ୍ଦରୀକି ଯା ନ ଧରେ ନୃପତି
ଦେବଲୋକେ ଏହି ନାରୀ ସୁଦୁର୍ଲ୍ଲଭ ଅତି ।
ଏ ଶୂନ୍ୟ ବନଦେଶକୁ କରଇ ଭୂଷିତ
ଦୃଷ୍ଟିମାନେ ମନହରି ନେଉଅଛୁ ଏତ ।
ଭାବୁଁ ଭାବୁଁ ସେ ସୁନ୍ଦରୀ ନିକଟେ ଅଇଲା
ଅନୁରାଗେ ଦ୍ୱିଜ ମୁଖ ଚାହିଁ ଠିଆହେଲା ।
ତାକୁ ଚାହିଁ ଦ୍ୱିଜହେଲା କାମରେ ପୀଡ଼ିତ
ଅସ୍ଥିର ହୋଇ ତାହାକୁ ପୁଚ୍ଛଇ ତୁରିତ ।
କିଏବା ତୁହି ସୁନ୍ଦରୀ କହ ସତ୍ୟକରି
କାନ୍ତ ଭାବେ ମୋ ମୁଖକୁ ଅନାଉଁ ଏପରି ।
ସୁମନ୍ତର ଶଠବୁଦ୍ଧି କହେ ସେ ରମଣୀ
ନ ଜାଣିକି ପ୍ରାଣନାଥ ମୁଁ ତୁମ୍ଭ ଘରଣୀ ।
ଅତି ପିଲାକାଳେ ବିଭା ହୋଇଥିଲ ମୋରେ
ଭୁଲିଏତେ ଦିନ ତୁମ୍ଭେ ଥିଲ ଦେଶାନ୍ତରେ ।
ଦବା ରହି ଏକା ମୁଁ ତୁମ୍ଭଙ୍କୁ କରି ଧ୍ୟାନ
ଯୌବନ ବିଫଳ କଲି ଏବେ ରଖ ପ୍ରାଣ ।
ମଦନେ ପୀଡ଼ିତା ମୁହିଁ ତବ ଅଦର୍ଶନେ
ଆଜି ପ୍ରାଣ ରକ୍ଷାକର ଅନୁଗ୍ରହ ଦାନେ ।
ବିବାହ ହୋଇ କିଏ ବା ପରିତ୍ୟାଗ କରେ
ଅନ୍ତେ ନରକରେ ପଡ଼େ ଶାସ୍ତ୍ରର ବିଚାରେ ।
ଏହିଆଗେ ଦେଖ ତୁମ୍ଭ ଶ୍ୱଶୁରଙ୍କ ଘର
ଯେତେକ ସମ୍ପତ୍ତି ସବୁ ନିଶ୍ଚୟ ତୁମ୍ଭର ।
ମୋର ପିତାଙ୍କର ଆଉ ନାହିଁ କେ ସନ୍ତାନ
ସର୍ବସମ୍ପତ୍ତି ତୁମ୍ଭରି ଏଥେ ନାହିଁ ଆନ ।

ଏଣୁ ତୁମ୍ଭେ ଶୀଘ୍ର ଚଳ ବିଳମ୍ବ ନ ସହେ
ତୁମ୍ଭଙ୍କୁ ଦେଖି ମୋପିତା ସୁଖୀ ହେବେ ଗୁଏଁ ।
ଏକାକିନୀ ଆସିଲି ମୁଁ ତୁମ୍ଭଙ୍କୁ ନେବାକୁ
ଏତେକହି ମାୟାନାରୀ ଧଇଲା ହାତକୁ ।
କନ୍ୟାର ବଚନେ ହର୍ଷ ହୋଇଲା ବ୍ରାହ୍ମଣ
ପଛେ ପଛେ ତାର ଗଲା ଛନ ଛନ ମନ ।
ଏକେ ତ ପୀଡ଼ିତ ସେହୁ ମଦନର ବାଣେ
ବିଶେଷରେ ଧନଲୋଭୀ ହୋଇଅଛୁ ମନେ ।
ଶ୍ୱଶୁର ଘର ନିକଟେ ଯାଇ ପହୁଞ୍ଚିଲା
ଶ୍ୱଶୁର ଦେଖି ତାହାକୁ ଅତିସ୍ନେହ କଲା ।
ସେଦ୍ୱିଜ ପାଦ ଧୋଇଲେ ଦାସ ଦାସୀମାନେ
ସୁସ୍ଥହୋଇ ବସିଲା ସେ ଉତ୍ତମ ଆସନେ ।
ନାନା ମିଷ୍ଟାନ୍ନ ବ୍ୟଞ୍ଜନ କଲାକ ଭୋଜନ
ଦିବ୍ୟ ପଲଙ୍କେ ବସିଲା ହୋଇ ତୋଷମନ ।
ସୁନ୍ଦରୀ ଯୁବତୀମାନେ ଆସି ତାର ପାଶେ
ନାନାବାଦ୍ୟ ବାଇ ଗୀତ ଗାଇଲେ ହରଷେ ।
ସୁମନ୍ତ ଦ୍ୱିଜର ମନ କୌତୁକେ ମୋହିଲେ
ଆଲଟ ବିଞ୍ଚଣୀଘେନି ସାଦରେ ବିଞ୍ଚିଲେ ।
ତଦନ୍ତେ ପଲଙ୍କେ ସେ ମୋହିନୀନାରୀ ସଙ୍ଗେ
ଶୋଇଲା ସୁମନ୍ତ ଦ୍ୱିଜ କାମ କେଳିରଙ୍ଗେ ।
ହାସ୍ୟ ପରିହାସ ନାନା ରତିରସ ସୁଖେ
ରଜନୀ ବଞ୍ଚିଲେ ଦୁହେଁ ପରମ କୌତୁକେ ।
ଆନନ୍ଦେ ମାତିଛି ଦ୍ୱିଜ ସେ ମୋହିନୀ ସାଥ
ସ୍ୱପ୍ନେ ସୁଦ୍ଧା ସ୍ମରଣ ନ କରେ ଧର୍ମ୍ମପଥ ।
ଏରୂପେ ରହିଛି ଦ୍ୱିଜ ହରଷିତ ମନେ
ଦୁର୍ବାସାଙ୍କ ମାୟା ସେହି କିଛିହିଁ ନଜାଣେ ।
ଶ୍ରୀକ୍ଷେତ୍ର ନିକଟେ ଯାଇଅଛି ଦ୍ୱିଜବର
ବିଡ଼ମ୍ବନେ ଭୁଲିଗଲା ମାୟା ଯେ ଦୁସ୍ତର ।
ଜୈମିନି ବୋଲନ୍ତି ଶୁଣ ସାଧୁ ମୁନିଗଣ
ଜଗନ୍ନାଥଙ୍କ ଚରିତ ବିଚିତ୍ର କଥନ ।
ଯାହା ଶୁଣିଲେ ପରମାନନ୍ଦ ଜନ୍ମେ ଚିତ୍ତେ
ଅଜ୍ଞାନ ଅବିଦ୍ୟା ନାଶଯାଏ ଅଚିରତେ ।
ଏହିରୂପେ ମାୟାନାରୀ ସଙ୍ଗେ ପ୍ରତିଦିନେ
ସୁମନ୍ତ ବ୍ରାହ୍ମଣ ଥାଏ କଉତୁକ ମନେ ।
କ୍ରମେ ପରମାୟୁ ଶେଷ ହୋଇଲା ତାହାର
[illegible]ବ୍ୟାଧି ଘୋଟିଗଲା ଆସି ତା ଶରୀର ।

ପରିଜନମାନେ ସର୍ବେ ହାହାକାର କଲେ
ଶ୍ୱଶୁର ବୁଢ଼ା ତାହାର କାନ୍ଦଇ ଅକୁଳେ ।
ସେହି ଯେ ମାୟା ମୋହିନୀ ନାରୀଥିଲା ତାର
ଅତି ଆକୁଳେ କାନ୍ଦଇ କରୁଣ ସ୍ୱର ।
ଅସ୍ଥିର ହୋଇ କାନ୍ଦିଲେ ଦାସ ଦାସୀମାନେ
ହାହାକାର ପଡ଼ିଗଲା ସେ ମାୟା ସଦନେ ।
ସେ କ୍ରନ୍ଦନ ଧ୍ୱନି ଶୁଣି ସୁମନ୍ତ ବ୍ରାହ୍ମଣ
ବିଷାଦ ହୃଦୟ ତହିଁ ହେଲା ଅଚେତନ ।
ଦୂରହେଲା ଘରଦ୍ୱାର ସମ୍ପଦ ଭଣ୍ଡାର
ଦୂର ହୋଇଗଲେ ତାର ରମଣୀ ଶ୍ୱଶୁର ।
ଦାସ ଦାସୀମାନେ କେଣେ ହୋଇଗଲେ ଦୂର
କେଣେ ଦୂରହେଲା ସେହି ମାୟାର ନଗର ।
ଏକାମାତ୍ର ଘୋରବନେ ସୁମନ୍ତ ବ୍ରାହ୍ମଣ
ଆଶ୍ରୟ ବିନେ ପଡ଼ିଛି ହୋଇ ଅଚେତନ ।
ଦୀନବନ୍ଧୁ କୃପାସିନ୍ଧୁ ଅନାଥ ଆଶ୍ରୟ
ଦେବ ଦେବ ଜଗନ୍ନାଥ ପ୍ରଭୁ କ୍ଷମାମୟ ।
ସୁଦର୍ଶନ ଚକ୍ରକୁ ବୋଇଲେ ସୁପ୍ରସନ୍ନେ
ଶୀଘ୍ର ସୁଦର୍ଶନ ଚକ୍ରଯାଅ ଘୋରବନେ ।
ମୋରଦୂତ ବୈଷ୍ଣବମାନଙ୍କୁ ଘେନି ସାଥେ
ପ୍ରବେଶ ହୁଅ ସୁମନ୍ତ ଦ୍ୱିଜର ଅଗ୍ରତେ ।
ମୋଦର୍ଶନ ଲାଗି ଥିଲା ସେ ଦ୍ୱିଜବର
ବାଟରେ ଯେ କାଳ ପୂର୍ଣ୍ଣ ହୋଇଲା ତାହାର ।
ଆସି ନପାରିଲା ଏହି କ୍ଷେତ୍ରବରେ ସେହି
ଏଣୁ ଚକ୍ରବର ତୁମ୍ଭେ ବେଗେଯାଅ ତହିଁ ।
ସେ ଯେ ମୋହର ଭକତ ଅନ୍ୟ କେ ନୁହଇ
ମୋହର ଦର୍ଶନ ଆଶାରେ ଆସୁଥିଲା ଧାଇଁ ।
ଯାଅ ଯାଅ ସୁଦର୍ଶନ ବୈଷ୍ଣବଙ୍କ ସାଥେ
ଅଣଆୟତ୍ତ ହୋଇ ସେ ପଡ଼ିଅଛି ପଥେ ।
ପ୍ରଭୁଙ୍କର ଆଜ୍ଞା ଘେନି ଚକ୍ର ସୁଦର୍ଶନ
ଦ୍ୱିଜପାଶେ ଉପସ୍ଥିତ ହୋଇଲା ବହନ ।
ସଙ୍ଗରେ ଯେ ବିଷ୍ଣୁଙ୍କର ପାରିଷଦଗଣ
ସର୍ବେ ଚତୁର୍ଭୁଜଧାରୀ ପରମ ଶୋଭନ ।
ସେହି ବାଟୋଇ ଦ୍ୱିଜକୁ ଯକଳେ ଆଗୋର
ଚଉପାର୍ଶ୍ୱେ ତାହାର ବସିଲେକ ଘେରି ।
ସେହିକାଳେ ଆରମ୍ଭିତେ ଯମଦୂତଗଣ
ତେତେରକାର ତାଙ୍କ ଶୁଣି ଆଇଲେ ଧାଇଁଣ ।

କାଳପାଶଧାରୀ ସର୍ବେ ବିକଟ ଆକାର
ପ୍ରକାଣ୍ଡ ଶରୀର ତାଙ୍କ ମହାଭୟଙ୍କର ।
ବିଷ୍ଣୁଦୂତମାନଙ୍କୁ ସେ ଦେଖି ତତକ୍ଷଣ
ମହା କ୍ରୋଧଭର ହୋଇ କଲେ ଗରଜନ ।
ମନେ ଗର୍ବବନ୍ଧି ଘୋଷେ କର୍କଶ ବଚନେ
ବିଷ୍ଣୁଦୂତଙ୍କୁ ବୋଇଲେ ଆରକ୍ତ ବଦନେ ।

### ଯମଦୂତା ବାଚଃ

*କାହିଁ ପାଇଁ କହ ତୁମ୍ଭେ ବଇଷ୍ଣବଗଣ
ଏଠାକୁ ଆସିଛ ସର୍ବେ କେବଣ କାରଣ ।
ମହାପାପୀ ଅଟଇ ସେ ଏ ମୂଢ଼ ବ୍ରାହ୍ମଣ
ନଜାଣ କି କେହି ଏହା ମନ୍ଦ ଆଚରଣ ।
ଏହି ଯେ ଦୁରାତ୍ମା ମନ୍ଦମତି ଏଥି ମରେ
କେଉଁ ପାପ ଅବା କରି ନାହିଁ ଦେହକରେ ।
ଅକାରଣେ ତୁମ୍ଭେମାନେ ଆସିଲ କାହିଁକି
ଏ ବିଷୟର ତୁମ୍ଭ ପକ୍ଷେ ଭଲ ହୋଇଲା କି ?।
ଏ ପାପୀକି ରକ୍ଷା କରିବାକୁ ସୁଦର୍ଶନ ।
କି ବୋଲି ଅଇଲ ଏଥି ନୁହେ ଏ ଶୋଭନ ।
ଯେଉଁ ଚକ୍ର ଦୁଷ୍ଟାଚାରମାନଙ୍କୁ ବିନାଶେ
ସେ ପୁଣି ଆଗତ ଏହି ମହାପାପୀ ପାଶେ ।
ଏମନ୍ତ ଯେ ଜଡ଼ ବୁଦ୍ଧି ପ୍ରାଣୀକି ଛୁଇଁଲେ
ପାପ ଲାଗଇ ଅଙ୍ଗରେ ନ ଛାଡ଼ଇ ଭଲେ ।
କେମନ୍ତ ବିଷୟରେ ଏଥି ଆସିଅଛ ତୁମ୍ଭେ
କହ କିନା ଏ ମରମ ପଚାରୁଛୁଁ ଆମ୍ଭେ ।
ବାରମ୍ବାର କରି ଯମରାଜା ଜନ୍ତୁପତି
ଆମ୍ଭମାନଙ୍କୁ ସେ ବୁଝାଇଣ କହିଛନ୍ତି ।
ବୈଷ୍ଣବମାନଙ୍କ ପାଖ ନ ମାଡ଼ିବ କେବେ
ମୋହର ପରମ ବନ୍ଧୁ ଅଟନ୍ତି ବୈଷ୍ଣବେ ।
ସେହି ଆଜ୍ଞା ଆମ୍ଭେମାନେ ପ୍ରତିପାଳ ଥାଉଁ
ବିଷ୍ଣୁଭକ୍ତମାନଙ୍କର ପାଶକୁ ନ ଯାଉଁ ।
ବିଷ୍ଣୁଙ୍କ ଶ୍ରେଷ୍ଠ ଆୟୁଧ ଚକ୍ର ସୁଦର୍ଶନ
ନିର୍ମଳ ଆତ୍ମା ଆବର ବିଷ୍ଣୁଭକ୍ତଗଣ ।

---

*କଥଂ ତ୍ୱେ ବୈଷ୍ଣବା ଏନଂ
ଅନେନ କାନି ପାପାନି ନ କୃତାନି ଦୁରାତ୍ମନା ।
କଥମେନଂ ରକ୍ଷିତ ବୈ ସୁଦର୍ଶନ ମୁପାଗତଂ ।
ତଥମେତଦ୍‌ବୈଷ୍ଣବଂ ହି ଦୁଷ୍ଟାଚାର ନିସୂଦନଂ ॥

ସ୍ୱପ୍ନେ ସୁଦ୍ଧା କଦାଚନ ତାହାଙ୍କ ନିଦର୍ଶ
ଦେଖିଲା ମାତ୍ରେ ମସ୍ତକେ ବେନ କରମର୍ଶ ।
ଯେବଣ ପ୍ରାଣୀର ପୁଣ୍ୟ ହୋଇଅଛି ଲୁପ୍ତ
ସାକ୍ଷୀ ତାହାର ଯେ ଏକା ମନ୍ତ୍ରୀ ଚିତ୍ରଗୁପ୍ତ ।
ସେହି ଯମଙ୍କ କାରଣ କହିଲେ ଆପଣେ
ନେଇ ଯିବା ପାଇଁ ଏହି ପାତକୀ ବ୍ରାହ୍ମଣେ ।
ଯେଉଁ ଜୀବ ଅଟେ ବିଷ୍ଣୁଭକ୍ତି ବହିର୍ମୁଖ
ସେହି ପ୍ରାଣୀକି ଯେ ଦେବା ପାଇଁ ମହାଦୁଃଖ ।
ଆମ୍ଭ ସମସ୍ତଙ୍କ ବିଷ୍ଣୁ ନିଯୋଗି ଅଛନ୍ତି
ତୁମ୍ଭମାନଙ୍କର କିବା ଅଧିକାର ଏଥି ।
ଏହି ଯେ ବ୍ରାହ୍ମଣ ମତ୍ତ ମହା ପାପାଚାରୀ
ଏହାଠାରେ ଯମ ରାଜା ପୂର୍ଣ୍ଣ ଅଧିକାରୀ ।
ଅବସରରେ ତୁମ୍ଭେମାନେ ଆସିଲ କମ୍ପାଇଁ
ଆମ୍ଭେମାନେ ନେଇ ଯିବୁଁ ଗଳେ ପାଶଦେଇ ।
ଜୈମିନ ବୋଲନ୍ତି ଶୁଣ ଆହେ ମୁନିଗଣ
ଯମଦୂତମାନେ ରୋଷେ କହନ୍ତେ ଏସନ ।
ଶ୍ରବଣ କରି ସକଳ ବିଷ୍ଣୁ ଦୂତମାନେ
କହି ଲାଗିଲେ ତାହାଙ୍କୁ ସମ୍ବୋଧ ବଚନେ ।

ବିଷ୍ଣୁଦୂତା ଉଚୁଃ

*ଅତି ଅବୋଧ ତୁମ୍ଭେ ହେ ଯମଦୂତଗଣ
କିଛିହିଁ ନ ଜାଣ ଯାହା ପ୍ରକୃତ କାରଣ ।
ମୂଢ଼ ନର ଆମ୍ଭ ସଙ୍ଗେ ହିଂସକ ଅଜ୍ଞାନ
କେ ପାପୀ କିଏ ଧାର୍ମ୍ମିକ ନ ଜାଣ ସନ୍ଧାନ ।
କେବା ମୋକ୍ଷ ଅଧିକାରୀ କିଛିହିଁ ନଜାଣ
କେବଳ ଉନ୍ମତ୍ତ ହୋଇ କରୁଛ ଭ୍ରମଣ ।
ଏହାର ଯେ ଭାଇ ଅଟେ ଅତି ସଦାଚାରୀ
ଧାର୍ମ୍ମିକ ନିର୍ମ୍ମଳ ବୁଦ୍ଧି ସଦା ଚକ୍ରଧାରୀ ।
ଦାତା ସତ୍ୟବାଦୀ ଜିତେନ୍ଦ୍ରିୟ ସେ ନିଶ୍ଚୟେ
ତଥାପି ଅଯୋଗ୍ୟ ସେହି ବିଷ୍ଣୁଭକ୍ତ ନୁହେ ।
କର୍ମ୍ମରେ କାମନା-ଯୁକ୍ତ ଅଛି ନିଜ ଗୃହେ
ଏବେ ଜ୍ୱର ମୋହ ପ୍ରବେଶିଲା ତାର ଦେହେ ।
ଯୋଗ୍ୟଅଟ ତୁମ୍ଭମାନେ ନେବାକୁ ତାହାକୁ
ଅକାରଣେ କାହିଁ ପାଇଁ ଆସିଛ ଏଠାକୁ ।

*ମୂଢ଼ାଯୁଯଂ ନ ବୋଧବ୍ୟଂହ ଗ୍ରମ୍ଭନୋ ହିଂସକ ।
କଃ ପାପୀ ଧାର୍ମ୍ମିକୋ ବାପିକୋବା ମୋକ୍ଷାଧିକାରବାନ

ଶ୍ରୀକ୍ଷେତ୍ରେ ମରିବ ଏହି କରିଛି ନିୟମ
ଏଠାରେ ପହୁଞ୍ଚି ଅଛି ଭକତ-ବ୍ରାହ୍ମଣ ।
ଏହାଜାଣି ଜଗନ୍ନାଥ କରୁଣା-ସାଗର
ଆମ୍ଭମାନଙ୍କୁ ପଠାଇଛନ୍ତି ସେ ସତ୍ୱର ।
ଏଥି ତୁମ୍ଭମାନଙ୍କୁ ଦେଖିଣ ଆମ୍ଭେ ସର୍ବେ
ଦେଇ ଯିବୁ ନାହିଁ ଯେ ଆମ୍ଭର ଖଣେ ଏବେ ।
ସାବଧାନେ ବାହୁଡ଼ ହେ ଯମଦୂତ ତମ୍ଭେ
ଗୋଇଠା ଆଘାତେ ଚୂର୍ଣ୍ଣ କରିବୁଁ ନିଶ୍ଚୟ ।
ଏମନ୍ତେଣ କଳହ କରନ୍ତି ଦୁଇଦଳେ
ସୁମନ୍ତ୍ରର ମୋହ ଦୂର ହେଲା ସେହି କାଳେ ।
ଦେଖେ ଘୋର ବନ ମଧ୍ୟେ ପଡ଼ିଅଛି ସେହି
ସଚକିତେ ବସି ହୀଡ଼ା ମନରେ ଭାବଇ ।
ବିସ୍ମରଇ ସ୍ୱପ୍ନେ କିବା କୌତୁକ ଦେଖିଲି
କିବା ମୋହ କିବା ସତ୍ୟ ଜାଣି ନପାରିଲି ।
ଏଥି ଆଗୁଁ କାନ୍ତାକୁ କରିଛି ଆଲିଙ୍ଗନ
ଶ୍ୱଶୁରଙ୍କ ଖେଦବାଣୀ କରିଛି ଶ୍ରବଣ ।
ଆଶ୍ଚର୍ଯ୍ୟ ଏ ବିଷ୍ଣୁ ମାୟା ଅକଥ୍ୟ କଥନ
ଅଦ୍ୟାପି ସେ ମୋତେ କରି ନାହାନ୍ତି ବର୍ଜ୍ଜନ ।
ସକଳ ମମତା ତେଜି ଦୁର୍ବାସାଙ୍କ ସାଥେ
ମୃତ୍ୟୁକାଳ ଜାଣି ଆଇଲିଁ ମୁଁ ଶ୍ରୀକ୍ଷେତ୍ରେ ।
ମୁନି କହିଥିଲେ ବିଷ୍ଣୁ ସାଯୁଜ୍ୟ ପାଇବ
ଏବେ କି କରିବ ମୋର କି ଗତି ହୋଇବ ।
ଏହିରୂପେ ଚିନ୍ତି ଚଉଦିଗକୁ ଚାହିଁଲା
ପଛରେ ଦୁର୍ବାସାଙ୍କୁ ସେ ଦେଖି ଭୟ କଲା ।
ଯଦିବା ଦୁର୍ବଳ ଦେହ ଉଠି ନ ପାରଇ
ତଥାପି ଉଠି ମୁନିଙ୍କି ପ୍ରଣାମ କରଇ ।
ପୁଣି ଅଚେତନ ହୋଇ ପଡ଼ିଲା ତକ୍ଷଣେ
କୌତୁକ ଦେଖନ୍ତି ମୁନି ସହାସ୍ୟ ବଦନେ ।
କି କହିବ ଆହେ ମୁନି ତୁମ୍ଭ ସନ୍ନିଧାନ
ଅଦ୍ଭୁତ ଅମୃତ କଥା କରସି ଶ୍ରବଣ ।
ଯମଦୂତଗଣ ବିଷ୍ଣୁଦୂତଙ୍କ ତାଡ଼ନେ
ସେଠାରୁ ବାହୁଡ଼ି ଯାଇ ବିରସ ବଦନେ ।
ଯମରାଜଙ୍କ ସମ୍ମୁଖରେ କରଯୋଡ଼ି କରି
ଏକାବେଳେ ସର୍ବେ ତହିଁ କହିଲେ ଗୁହାରି ।
ତାହା ଶୁଣି ଯମ କଲେ ଅତି କ୍ରୋଧି ମନ
ସୁମନ୍ତ୍ର ପାଖକୁ ବେଗେ କଲେ ଗମନ ।

ମୁଦ୍‌ଗର ପଟ୍ଟିଷ ଦଣ୍ଡ କୁନ୍ତ ପାଶ କରେ
ମୃତ୍ୟୁ କାଳ ସଙ୍ଗେ ଗଲେ ମହିଷ ଉପରେ ।
ସଙ୍ଗରେ ଚଳିଲେ କେତେ ଭୂତ ପ୍ରେତଗଣ
ମାର ମାର ଶବ୍ଦେ ସର୍ବେ କରନ୍ତି ଗମନ ।
ଘୋର ନାଦରେ ଧାମନ୍ତି ଯମଙ୍କର ସାଥେ
ଦୂରରୁ ସେ ଶବଦ ଶୁଣିଲେ ବିଷ୍ଣୁ ଦୂତେ ।
ଭୁଞ୍ଜ ଭାବ ବୋଇଲେ ଶୁଣରେ ପ୍ରେତରାଜ
ଅହଂକାରେ ନ ବୁଝୁଛୁ ଆପଣାର କାର୍ଯ୍ୟ ।
କାହାଁ ଅଧିକାରୀ ତୁହି ନ ଜାଣୁଛୁ ମନେ
ଯହିଁ ଉଚିତ ତୋହର ଯା ଯା ସେହି ସ୍ଥାନେ ।
ଯାହାକୁ ଦେଖିବାକୁ ତୁ ଅଯୋଗ୍ୟ ନିଶ୍ଚୟ
ତା ପାଖେ ଆସିଛୁ କମ୍ପା ମୂଢ଼ ଦୁରାଶୟ ।
ଏହି ବିପ୍ର ପ୍ରେତଦେହୁ ହୋଇ ବିମୋଚନ
ଜଗନ୍ନାଥଙ୍କର ଭକ୍ତ ହୋଇଅଛି ଜାଣ ।
ବଟ ସାଗର ମଧ୍ୟରେ ଏହି ମୁକ୍ତି ସ୍ଥାନେ
ଏହାକୁ ରଖି ଅଛନ୍ତି ସିଦ୍ଧ ସାଧୁମାନେ ।
ଏହିଟି କୈବଲ୍ୟ ସ୍ଥାନ କଲେକ ଶ୍ରୀହରି
ପାପଶୂନ୍ୟ ପ୍ରାଣୀ ହେନ୍ତି ଏଥି ଅଧିକାରୀ ।
ଶ୍ରୀକ୍ଷେତ୍ର ବାହାରେ ପଞ୍ଚକ୍ରୋଶୀ ସ୍ଥାନ ଯେହି
ତହିଁ କେମନ୍ତ ହୋଇ ତହିଁ ଅଧିକାର ନାହିଁ ।
ଯେଉଁ ପର୍ଯ୍ୟନ୍ତ ଦିଶଇ ନୀଳଚକ୍ର ଧ୍ୱଜା
ସେ ସ୍ଥାନରେ ଅଧିକାରୀ ନୁହି ଯମ ରାଜା ।
ନିଶ୍ଚୟ ଏହିଟି ମୋକ୍ଷ-ଅଧିକାରୀ ସ୍ଥାନ
ଏହାର ମହିମା ତୁମ୍ଭେ କିଛିହିଁ ନ ଜାଣ ।
ବୃଥାରେ ଏଠାରେ ଯମ କରୁଛୁ ଗର୍ଜନ
ଯହିଁ ବସେ ଜଗନ୍ନାଥ ହେତୁପାବନ ।
ଯେନ ଜନଗଣେ ସଦା କରନ୍ତି ରକ୍ଷଣ
ପାପୀତାପୀ ଦୁଷ୍ଟଙ୍କରେ କରନ୍ତି ତାଡ଼ନ ।
କୃପାରେ ହାସ୍ୟମୁଖ ପଦ୍ମ ମନୋହର
ଅଟନ୍ତି ଆଶ୍ୱାସନ୍ତି ପ୍ରସାଦେଣ କର ।
ଏହି କ୍ଷେତ୍ରେ ଦେହଧରି ଛନ୍ତି ଭଗବାନ
କ୍ଷେତ୍ରେ ଯହିଁ ତହିଁ ମଲେ ଦାନ୍ତି ମୁକ୍ତିଧନ ।
ପୂର୍ବର ବୃତ୍ତାନ୍ତ କାହିଁ ନ କରୁଚ ମନେ
ଆକ ଚତୁର୍ଭୁଜ ହୋଇଅଛି ଯେଉଁ ସ୍ଥାନେ ।
ଅଧିକାର ନାହିଁ ଏଥୁ ବାହୁଡ଼ ଯା ଯମ
ଏହିସ୍ଥାନେ ଉପଦେଶ କଲିତ ଶବଦ ।

ଏ କ୍ଷେତ୍ରବର୍ଜନ ଅନ୍ୟ ଯେ କର୍ମ୍ମ ଭୂମିମାନ
ତହିଁ ତୁମ୍ଭ ଅଧିକାର ଦେଲେ ନାରାୟଣ ।
ପ୍ରଭୁ ଇନ୍ଦ୍ରନୀଳମଣି ବିଗ୍ରହ ଶ୍ରୀହରି
ତୋତେ କରିଥିଲେ ପରା ମୃତ୍ୟୁ ଅଧିକାରୀ ।
ସେହି ପ୍ରଭୁ ଜଗନ୍ନାଥ କମଳାଙ୍କ ପତି
ଦାରୁବ୍ରହ୍ମ ରୂପେ ସଦା ନୀଳାଚଳେ ଛନ୍ତି ।
ମହାରାଜ ଅଧିରାଜ ମହା ଯୋଗେଶ୍ୱର
ବୈଷ୍ଣବ ଅଗ୍ରଣୀ ଇନ୍ଦ୍ରଦ୍ୟୁମ୍ନ ନୃପବର ।
ସହସ୍ରେକ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନେ
ସୁ-ପ୍ରସନ୍ନ କରି ସେ ଆଣିଲେ ନାରାୟଣେ ।
ତ୍ରିଲୋକବାସୀ ଯେ ସିଦ୍ଧ ଦେବଋଷି ଯତି
ପୃଥିବୀ ମଧ୍ୟରେ ଆଉ ଯେତେ ନରପତି ।
ବ୍ରହ୍ମା ଆଦି ଦେବଗଣ ମିଳିଣ ସକଳେ
ପୂଜିଲେ ଶ୍ରୀଜଗନ୍ନାଥେ ଅତି କୁତୁହଳେ ।
ଅନାଦି ସଞ୍ଚିତ ଯେତେ ପାପ ତାପମାନ
ତୁଳାରାଶି ସମ ତହିଁ ଦହେ ଭଗବାନ ।
ଦର୍ଶନ ଯେ କରେ ପୁଣି ଶ୍ରୀକ୍ଷେତ୍ରରେ ମରେ
ଅନାୟାସେ ଜଗନ୍ନାଥ ମୁକ୍ତି ଦିଅନ୍ତି ତାରେ ।
ନ ଦେଖ କି ତବ ଆଗେ ଚକ୍ର ସୁଦର୍ଶନ
ଚକ୍ରସଦା ପାପୀପାପ କରନ୍ତି ଛେଦନ ।
ଏଥି ଅଧିକାର ଆଶା ଛାଡ଼ି ହୋ ଶମନ
ନହୁବା ମଙ୍ଗଳ ତବ ନାହିଁ କଦାଚନ ।
ଏତେକହି ବୈଷ୍ଣବେ ଉଠିଲେ ଯୁଦ୍ଧସାଜେ
ସେହିଠାରୁ ଭୟେ ପଳାଇଲେ ଯମ ଲାଜେ ।
ଏହାଶୁଣି ମୁନିମାନେ ମଣିଲେ ଚକିତ
ଶ୍ରୀଜଗନ୍ନାଥଙ୍କ ପାଦେ ସମର୍ପିଲେ ଚିତ୍ତ ।
ସେହି ଶ୍ରୀକଳା ଶ୍ରୀମୁଖ ଜଗତନାଥଙ୍କ
ପାଦପଦ୍ମରେ ଭ୍ରମର ହେବାକୁ ମନ ରଙ୍କ ।
ସାଧୁ ଭକ୍ତମାନେ ଏଥି ରଖ ଦୃଢ଼ ବିଶ୍ୱାସ
ଅବିଶ୍ୱାସ କଲେ ଘଟିବଟି ସର୍ବନାଶ ।
ମହାବଳୀଯୁଗବିଜ୍ଞ ଶ୍ରେତପଦ୍ମ ଡୋଳା
ବନ୍ଧୁଦେଉଳଆ ପ୍ରଭୁ ଭକ୍ତବତ୍ସଳ ଭୋଳା ।
ନୀଳାଦ୍ରିଜଟି ନିକଟ୍ଟୁ ସଦାକରି ଧ୍ୟାନ
ରଚଇ ବୈଷ୍ଣବ ଦାସ ବର୍ଣ୍ଣି ଏ ପ୍ରବନ୍ଧ ।

——×

## ସୁମନ୍ତ ବ୍ରାହ୍ମଣର ମୁକ୍ତିଲାଭ

ଶୌନକ ଉବାଚ

ଏଥି ଅନନ୍ତରେ ଯେ ଶୌନକ ମୁନିବର
ପଚାରିଲେ ଜୈମିନିଙ୍କି କରି ସମାଦର ।
କହ କହ ଆହେ ଋଷି ବ୍ୟାସଙ୍କର ଶିଷ୍ୟ
ସୁମନ୍ତ ଦ୍ୱିଜ ପ୍ରସଙ୍ଗ ଅମିୟ ସୁରସ ।
କେମନ୍ତ ପ୍ରକାରେ ସେହୁ ଲଭିଲା ମୁକତି
ତାହା ଶୁଣିବାକୁ ଆମ୍ଭ ଶ୍ରଦ୍ଧାବନ୍ତେ ଅଛି ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ହେ ମୁନି ପ୍ରବର
ଯେଉଁପରି ମୁଁ ତୁମ୍ଭ ଆଗେ କରୁଛି ଗୋଚର ।
ସୁମନ୍ତ ଦ୍ୱିଜର ଦେହ ସୁଦର୍ଶନ ନେଇ
ଶ୍ୱେତଗଙ୍ଗା ତଟେ ଚଳେ ହରଷିତ ହୋଇ ।
ପାଞ୍ଚଜନ୍ୟ ଶଙ୍ଖଧ୍ୱନି ହୁଏ ଘନ ଘନ
ଦୂରରୁ ଶୁଣିଲେ ଯମ ଯମଦୂତଗଣ ।
ଆକାଶ ମାର୍ଗରୁ ପୁଷ୍ପ ପଡ଼େ ରାଶି ରାଶି
ବ୍ରାହ୍ମଣେ ପୂଜନ୍ତି ସର୍ବ ଦାଗପାଳେ ଆସି ।
ଶ୍ୱେତ ଗଙ୍ଗାଘାଟରେ ଚକ୍ର ଫିଙ୍ଗିଲା ଦ୍ୱିଜକୁ
ଆଦ୍ୟଅବତାର ମତ୍ସ୍ୟ ରୂପ ନିକଟକୁ ।।
ତାହାର ଆଗରେ ଶ୍ୱେତମାଧବ ପ୍ରକଟେ
ଅତ୍ୟନ୍ତ ଦୁର୍ଲ୍ଲଭ ସେହି ମୁକ୍ତିସ୍ଥାନ ଅଟେ ।
ତହୁଁ ପ୍ରଭୁ ଜଗନ୍ନାଥ କରୁଣା-ସାଗର
ଗରୁଡ଼ ପିଠି ଉପରେ ଚଢ଼ି ଧାଉଁଡାର ।
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭନ
ପ୍ରସନ୍ନ କଲା ଶ୍ରୀମୁଖ କମଳ-ନୟନ ।
ଅଭିନବ-ଘନକାନ୍ତି ତନୁ-ମନୋହର
ତଡ଼ିତ ଜଡ଼ିତ ପରିଧାନ ପୀତାମ୍ବର ।
ଶ୍ରୀବତ୍ସ କୌସ୍ତୁଭମଣି ବକ୍ଷେ ଶୋଭାବନ
ବନମାଳା ବୈଜୟନ୍ତୀ ହାର ସୁଘଟନ ।
ବାହୁ ବାହୁଟି ଶ୍ରୀକରେ ବଳୟ-କଙ୍କଣ
ମସ୍ତକେ ଝାଳିଆ ଶୋଭା ଅତି ଅନୁପମ ।
ଶ୍ରବଣ ଯୁଗଳେ ଲୁଚକ ମକର କୁଣ୍ଡଳ
ନାସାରେ ଗଜ ମୁକୁତା ବର୍ଣ୍ଣି ନ ହୁଏ ଭଲ ।
କଟିରେ ଘଣ୍ଟି ଘାଗୁଡ଼ି ରତନ କିଙ୍କିଣୀ
ରୁଣୁ ଚରଣେ ଶୋଭଇ ନୂପୁର ବାଜେଣି ।
ଏମନ୍ତେ ସର୍ବାଙ୍ଗଯାକେ ରତନ ଭୂଷଣ
ଭୁବନ ମୋହନ ବେଶ ଜଗତ ଜୀବନ ।
ଦରହସିତ ବଦନେ ପ୍ରଭୁ ଯେ କାଳରେ
ଉପସ୍ଥିତ ହେଲେ ସେ ସୁମନ୍ତ ନିକଟରେ ।
ଗରୁଡ଼ ପିଠିରୁ ଓହ୍ଲାଇଲେ ଖରତରେ
ବ୍ରହ୍ମମନ୍ତ୍ର ଦେଲେ ପ୍ରଭୁ ଦ୍ୱିଜର କର୍ଣ୍ଣରେ ।
ଅନାଦି ଅଜ୍ଞାନ ମାୟା ଗଲା ତତକ୍ଷଣ
ପାଇଲା ବୈଷ୍ଣବ ଜ୍ଞାନ ସୁକୃତି ବ୍ରାହ୍ମଣ ।
ବାମଦେବ ଶୁକଦେବ ଯେଉଁଜ୍ଞାନ ପାଇ
ମୋକ୍ଷପ୍ରାପ୍ତ ହେଲେ ଅଜ୍ଞାନରୁ ମୁକ୍ତ ହୋଇ ।
ବ୍ରହ୍ମମନ୍ତ୍ର ପାଇବାରେ ସୁମନ୍ତ ତେସନ
ସୂର୍ଯ୍ୟସମ ଦିବ୍ୟ ତେଜ କଲା ସେ ଧାରଣ ।
ଚତୁର୍ଭୁଜେ ଶଙ୍ଖ ଚକ୍ର ଗଦା ପଦ୍ମ ଧରେ
ଦୁର୍ବାସା ଆଦି ଦେଖନ୍ତି ଆନନ୍ଦ ମନରେ ।
ସୁମନ୍ତକୁ ମୁକ୍ତ କରି ପ୍ରଭୁ ନାରାୟଣ
ଅନ୍ତର୍ଦ୍ଧାନ ହୋଇ କଲେ ଦେଉଳେ ଗମନ ।
ସୁଦର୍ଶନ ଆଦି ସର୍ବେ ହେଲେ ଅନ୍ତର୍ଦ୍ଧାନ
ମହାବୈକୁଣ୍ଠକୁ ଗଲା ବିପ୍ର ଭାଗ୍ୟବାନ ।
ବିମାନରେ ବସି ବିପ୍ର ବିଷ୍ଣୁରୂପ ହୋଇ
ମୋକ୍ଷଧାମେ ଗଲା ସମସ୍ତଙ୍କ ପୂଜାପାଇ ।
ଦୁର୍ବାସା ବିସ୍ମୟ ହୋଇ ବ୍ରହ୍ମଲୋକେ ଗଲେ
ଶ୍ରୀକ୍ଷେତ୍ର ମହିମା ସବୁ ବ୍ରହ୍ମାଙ୍କୁ କହିଲେ ।
ଏକଥା ଶୁଣିବାମାନେ ସର୍ବ ପାପହରେ
ଶ୍ରଦ୍ଧାକରି ଶୁଣେ ଯେହୁ ଭବସିନ୍ଧୁ ତରେ ।
ଦୃଢ଼ଭକ୍ତିରେ ଯେ ଜନ କରଇ ଶ୍ରବଣ
ପୁନର୍ଜ୍ଜନ୍ମ ନ ହୁଅଇ ପାଏ ମୋକ୍ଷ ଜାଣ ।
ମୂଳଟି ବିଶ୍ୱାସ ଏକା ଆହେ ମୁନିଗଣ
ଅବିଶ୍ୱାସ କଲେ ଆଉ ନାହିଁ ପରିତ୍ରାଣ ।
ଯୁଗେ ଯୁଗେ ଜଗନ୍ନାଥ ଶ୍ରୀନୀଳକନ୍ଦରେ
ବିଜେ କରିଛନ୍ତି ସଦା ମହା ଆନନ୍ଦରେ ।
ମନଜାଣି ଯାଚିଦିଅନ୍ତି ଜୀବେ ମୁକ୍ତିଧନ
ପରମ ଦୟାଳୁ ପ୍ରଭୁ ପତିତପାବନ ।
ଯାର ମନ ଯେତେ ଦୃଢ଼ ତାର ପ୍ରଭୁ ତେତେ
ଯାମନେ ବିଶ୍ୱାସ ନାହିଁ ସେ ନରକେ ପଡ଼େ ।
ଅଧିକ ମୁଁ କି କହିବି ଆହେ ମୁନିଗଣ
କାଳ ଚତୁର୍ଭୁଜ କଥା କରି ତ ସ୍ମରଣ ।

ଏମନ୍ତେ ଜୈମିନି ଋଷି ନୈମିଷ କାନନେ
ବଖାଣିଲେ ଶୌନକାଦି ମୁନି ସନ୍ନିଧାନେ ।
ପତିତପାବନ ହରି ଜଗତର ନାଥ
ଭକ୍ତଙ୍କ ନିମନ୍ତେ ପ୍ରଭୁ ଶଙ୍ଖ ଚକ୍ର ହାତ ।
ସେହି ଚକାଡ଼ୋଳାଙ୍କର ଅଭୟ ଚରଣ
ଅଧମ ବୈଷ୍ଣବ ଦାସ ପଶିଲା ଶରଣ ।

—x—

## ମହାବୈକୁଣ୍ଠତତ୍ତ୍ୱ ଓ ମହିମା

ଶୌନକ ଉବାଚ

ଏଥୁ ଅନନ୍ତରେ ଯେ ଶୌନକ ମୁନିବର
ପୃଚ୍ଛା କଲେ ଜଇମିନି ଋଷିଙ୍କ ଆଗର ।
ହେ ସର୍ବଜ୍ଞ ମହାମତି ବ୍ୟାସଙ୍କର ଶିଷ୍ୟ
ଯାହା ସୁମନ୍ତ ଆଖ୍ୟାନ କଲହେ ପ୍ରକାଶ ।
ତହିଁରେ ଆମ୍ଭ ମନରେ ସଂଶୟ ରହିଲା
ସେ ଯେ ମୋକ୍ଷ ଧାମ ମହାବୈକୁଣ୍ଠକୁ ଗଲା ।
ସେହି ମହାବଇକୁଣ୍ଠ କାହାକୁ କହନ୍ତି
ଏ ତତ୍ତ୍ୱ ବୁଝାଇ କହ ଆମ୍ଭଙ୍କୁ ସଂପ୍ରତି ।

ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ଆହେ ତପୋଧନ
ଯହିଁରେ ହୋଇବ ତୁମ୍ଭ ସଂଶୟ ଭଞ୍ଜନ ।
ମହାବୈକୁଣ୍ଠ ଅଟଇ ଶ୍ରୀମନ୍ଦିର ସ୍ଥଳୀ
ରତ୍ନ ସିଂହାସନ ନାମ ଯାହାକୁଟି ବୋଲି ।
ଯହିଁ ପରେ ବିଜୟେ ଶ୍ରୀଚତୁର୍ଦ୍ଧା ମୂରତି
ସେହିଟି ଶୂନ୍ୟବୈକୁଣ୍ଠ ଠାରୁ ଶ୍ରେଷ୍ଠ ଅତି ।
ନିତ୍ୟବୈକୁଣ୍ଠ ତାହାକୁ କହନ୍ତି ସକଳେ
ବିନାଶ ନୁହଇ ସେହୁ ପ୍ରଳୟର କାଳେ ।
ଏମନ୍ତ ବୈକୁଣ୍ଠେ ଯେତେ ସେବକେ ସେବନ୍ତି
ଦେବଙ୍କୁ ନ ମିଳେ ଯାହା ସେ ତାହା ଭୁଞ୍ଜନ୍ତି ।
ସାକ୍ଷାତେ ପରଂବ୍ରହ୍ମଙ୍କ ସଙ୍ଗେ ବିହରନ୍ତି
କୈବଲ୍ୟ ମୁକ୍ତି ତାହାଙ୍କୁ ପ୍ରଭୁ ପାଶ ଦିଅନ୍ତି ।
ନାନାଭାବେ ପ୍ରଭୁଙ୍କୁ ଯେ ବେଶ କରୁଥାନ୍ତି
ବିବିଧ ରସ ପ୍ରଭୁଙ୍କୁ ଭୁଞ୍ଜାଇ ଭୁଞ୍ଜନ୍ତି ।
ବୈଷ୍ଣବ ବୋଲନ୍ତି ସେହି ସେବକ ନିକଟେ
ବିଷ୍ଣୁଙ୍କ ମନ ମନାଇ ଆମ୍ଭ ନିରନ୍ତରେ ।

ବୈକୁଣ୍ଠ ସମ୍ପଦେ ସେ ସର୍ବଦା ଅଧିକାରୀ
ନାନାମତେ ବିଳସନ୍ତି ଐଶ୍ୱର୍ଯ୍ୟ ବିସ୍ତାରି ।
ସୁରସିଦ୍ଧ ମୁନିମାନେ ହେଉଛନ୍ତି ଭଲି
ସେବକ ରୂପେ ଜନ୍ମିବା ପାଇଁ କ୍ଷେତ୍ରସ୍ଥଳୀ ।
ଏମନ୍ତେ ଜଗନ୍ନାଥଙ୍କ ଶ୍ରୀଅଙ୍ଗ ସେବକେ
ସେମାନଙ୍କର ବିଭବ ବର୍ଣ୍ଣି ପାରିବ କେ ।
ଯାଙ୍କୁ ଘେନି ପ୍ରଭୁ ନାନାଲୀଳା କରୁଛନ୍ତି
ମର୍ତ୍ତ୍ୟଧାମେ ଜନମି ସେ ସାମାନ୍ୟ ନୁହନ୍ତି ।
ତାହାଙ୍କ ମହିମା ମୁଖେ କିଏ କହିପାରେ
ଆଠ ପ୍ରହର ଯେ ଛନ୍ତି ପ୍ରଭୁଙ୍କ ସେବାରେ ।
ଦିବ୍ୟ ଯୋଗୀମାନେ ନାନା ମତେ ଯୋଗ ଧ୍ୟାନେ
ଅଷ୍ଟାଙ୍ଗ ଯୋଗକୁ ସାଧି ନ ପାନ୍ତି ତା ଧ୍ୟାନେ ।
ମର୍ତ୍ତ୍ୟ ବୈକୁଣ୍ଠ ଅଟଇ ଶଙ୍ଖନାଭି କ୍ଷେତ୍ର
ତା ମଧ୍ୟେ ମହାବୈକୁଣ୍ଠ ବୁଝ ତପୋବନ୍ତ ।
ମଧ୍ୟ ବୈକୁଣ୍ଠେ ସେବକମାନଙ୍କର ବାସ
ଆଉ ଯେ ଅଷ୍ଟ ବୈକୁଣ୍ଠ ହୋଇଛି ପ୍ରକାଶ ।
ଅନ୍ୟ ବନ୍ଧ ବୈକୁଣ୍ଠ ଅଟଇ ଯାର ନାମ
ଜନ ମୁଖରେ ବିଖ୍ୟାତ ଶ୍ରୀପୁରୁଷୋତ୍ତମ ।
ସକଳ ବୈକୁଣ୍ଠ ଠାରୁ ସେହିତ ଉତ୍ତମ
ଆବର ତହିଁ ବୈକୁଣ୍ଠ ପଞ୍ଚ ଆତ୍ମାଧାମ ।
ନିତ୍ୟ ବୈକୁଣ୍ଠ ଯେ ମହା ବୈକୁଣ୍ଠକୁ କହି
ଯହିଁ ରତ୍ନ ସିଂହାସନେ ବ୍ରହ୍ମାଣ୍ଡ ଗୋସାଇଁ ।
ସେ ବୈକୁଣ୍ଠ ଭିନ୍ନ ନବ ବଇକୁଣ୍ଠ ସ୍ଥିତି
ତା ମଧ୍ୟେ ନିଜ ବୈକୁଣ୍ଠ ଶ୍ରେଷ୍ଠତର ଅତି ।
ନୀଳାଦ୍ରି ସ୍ଥିର ବେଢ଼ରେ ସ୍ଥିର ବଇକୁଣ୍ଠ
ମଧ୍ୟ ବୈକୁଣ୍ଠରେ ପ୍ରଭୁଙ୍କର ଯୋଗ ପୀଠ ।
ନୀଳାଦ୍ରି ଶଙ୍ଖ ମଧ୍ୟରେ ଶତ ଦଳପଦ୍ମେ
ଦାରୁବ୍ରହ୍ମ ସ୍ଥିର ମୂର୍ତ୍ତି ପୂଜିତ ଆନନ୍ଦେ ।
ରତ୍ନ ସିଂହାସନେ ପ୍ରଭୁ ଅଲେଖ ତିଳକ
ଦିବ୍ୟ ଭୋଗ ଭୁଞ୍ଜୁଛନ୍ତି ଯୁଗଯୁଗ ଯାକ ।
ମହା ବୈକୁଣ୍ଠର ତତ୍ତ୍ୱ କଲି ପରକାଶ
ଶୁଣିଲେଟି କହେ ମୁନି ମନ କରି ତୋଷ ।
ମହା ମୋକ୍ଷ ଧାମ ଅଟେ ରତ୍ନ ସିଂହାସନ
ତିନିଦି ବ୍ରହ୍ମାଣ୍ଡେ ନାହିଁ ତା ସମ ଆସ୍ଥାନ ।
ଏମନ୍ତ ଜୈମିନି ଋଷି କଲେକ ପ୍ରକାଶ
ଚକାଡୋଳା ଚରଣେ ଭଣେ ବଇଷ୍ଣବ ଦାସ ।

## ଅଷ୍ଟ ବୈକୁଣ୍ଠ ବିବରଣ

ଜୈମିନି ଉବାଚ

ଜୈମିନି ବୋଲନ୍ତି ମୁନି ଏଥୁ ଅନ୍ତେ ଶୁଣ
ଆଜ ଯେ ଅଷ୍ଟ ବୈକୁଣ୍ଠ ତାର ବିବରଣ ।
କୋଇଲି ବୈକୁଣ୍ଠ ଅଛି ଉତ୍ତର ଦିଗରେ
ଯେ ଉତ୍ତରାୟଣୀ ଦେବୀ ଦ୍ୱାରୀ ସେହିଠାରେ ।
ଏହି ବୈକୁଣ୍ଠେ ମହାଲକ୍ଷ୍ମୀ ଦେବୀଙ୍କର ସାଥ
ନିତ୍ୟ ବିହାର କରନ୍ତି ପ୍ରଭୁ ଜଗନ୍ନାଥ ।
ପଶ୍ଚିମ ବୈକୁଣ୍ଠେ ଯେ ବିମଳା ଦେବୀଛନ୍ତି
ତାହାଙ୍କ ନିକଟେ ଛନ୍ତି ଲକ୍ଷ୍ମୀ ସରସ୍ୱତୀ ।
ଲକ୍ଷ୍ମୀ ବୈକୁଣ୍ଠର ଦ୍ୱାର ଜଗୁଆଳୀ ଯେହି
ସେ ଯେ ମହା ପ୍ରଚଣ୍ଡା କାଳିକା ମହାମାୟୀ ।
ସେ ବୈକୁଣ୍ଠେ ନୃସିଂହ ବାମନ ଆଦି ରୂପେ
ନାନା ଅବତାର ମୂର୍ତ୍ତି ଦେବୀଙ୍କ ସମୀପେ ।
କମଳାଙ୍କ ସଙ୍ଗରେ ଯେ ଅଷ୍ଟ ପାଟବଂଶୀ
ପ୍ରଭୁଙ୍କ ଖଟଣି ଖଟିଛନ୍ତି ଦିବା ନିଶି ।
ବତିଶ ସହସ୍ର ରାଣୀ ଅଛନ୍ତି ସେବାରେ
ପଶ୍ଚିମ ବୈକୁଣ୍ଠ ଲୀଳା ଏହି ପରକାରେ ।
ସବୁ ଗୋପଲୀଳା ଖେଳା ପଶ୍ଚିମ ବୈକୁଣ୍ଠେ
ଜିହ୍ୱାଭକ୍ତମାନେ ତା ଦେଖନ୍ତି ମନ ହୃଷ୍ଟେ ।
ଦକ୍ଷିଣ ବୈକୁଣ୍ଠ ବୋଲି ଅଟେ ଯାର ନାମ
ତହିଁ ଅଛନ୍ତି ଯେ ଅନନ୍ତ ପୁରୁଷ ଉତ୍ତମ ।
ସେ ବୈକୁଣ୍ଠଦ୍ୱାରୀ ଦେବୀ ଯେ ବଟମଙ୍ଗଳା
ନିତିଦିନ ଜଗିଛନ୍ତି ଭକ୍ତ ପଦ୍ମଦୋଳା ।
ପୁଣି ସେ ଦ୍ୱାରରକ୍ଷକ ଦେବ କ୍ଷେତ୍ରପାଳ
ତାଙ୍କ ସଙ୍ଗେ ଯେ ଶଙ୍କର ନନ୍ଦି ମହାକାଳ ।
ଅନନ୍ତ ଶୟନେ ଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ
ତେଣୁ ଅନନ୍ତ ବୈକୁଣ୍ଠ ବୋଲାଏଟି ସେହି ।
ଦକ୍ଷିଣ ବୈକୁଣ୍ଠେ ପୁରୁଷୋତ୍ତମ ଅନନ୍ତ
ନିଦ୍ରାଗତ ଶୟନ ଯେ ବଟପୃଷ୍ଠେ ରମାକାନ୍ତ ।
ସେ ଅକ୍ଷୟ କଳ୍ପବଟ ଦ୍ରୁତ ଯୁଗେ ଥାଏ
ମହା ପ୍ରଳୟ କାଳରେ ବିନାଶ ନୋହେ ।
ଅକ୍ଷୟ କଦମ୍ବ କଳ୍ପବଟ ନାମଧରେ
ଦକ୍ଷିଣ ପର୍ବ ବୈକୁଣ୍ଠକୁ ସେ ଆଶ୍ରା କରେ ।
ପୂର୍ବ ଦକ୍ଷିଣକୁ ବେଢ଼ି ବିସ୍ତାରିଛି ଡାଳ
ତହିଁ ଆସି ଗୁହାଶ୍ରା ଦେବତା ସକଳ ।
ଶ୍ରୀପୁରୁଷୋତ୍ତମ ପାଦଶ କରନ୍ତି ଜଣାଣ
ତାଙ୍କଠାରୁ ରୁମାବଳୀ ଅବତାର ଜାଣ ।
ବଟ ପୃଷ୍ଠେ ଦକ୍ଷିଣ ବୈକୁଣ୍ଠେ ତାଙ୍କ ସ୍ଥିତି
ପୂର୍ବଦ୍ୱାରେ ଯେବଣ ବୈକୁଣ୍ଠ ଶୋଭେ ନିତି ।
ନିଜ ଅଙ୍ଗେ ସେ ବୈକୁଣ୍ଠେ ବିଜେ ଲକ୍ଷ୍ମୀପତି
ପତିତପାବନ ବୋଲି ନାମ ବହିଛନ୍ତି ।
ସେ ପୂର୍ବ ବୈକୁଣ୍ଠ ଦ୍ୱାରୀ ଅଟେ ପକ୍ଷୀବର
ଜୟ ବିଜୟ ଦ୍ୱାରୀ ଯେ ମଧ୍ୟ ବୈକୁଣ୍ଠର ।
ଚାରି ଦିଗେ ଚାରି ବଇକୁଣ୍ଠ ସୁଶୋଭନ
ମଧ୍ୟେ ନୀଳସୁନ୍ଦର ବୈକୁଣ୍ଠ ମନୋରମ ।
ସେ ବୈକୁଣ୍ଠ ତ୍ରିଭୁବନ ପ୍ରାଣୀ ମନ ଲୋଭା
ପ୍ରସନ୍ନ ବଦନେ ପ୍ରଭୁ ଶ୍ରୀଭଙ୍ଗୀରେ ଉଭା ।
ମହୋଦଧି ତଟରୁ ଦକ୍ଷିଣ ଦ୍ୱାର ଯାଏଁ
ସ୍ୱର୍ଗଦ୍ୱାରହୁଁ ଅମର ବୈକୁଣ୍ଠ ବୋଲାଏ ।
ଦେବଲୋକଙ୍କ ସେ ଅଟେ ବିଶ୍ରାମର ସ୍ଥାନ
ସେହି ଠାବରେ ଶ୍ରୀହରି କରନ୍ତି ଶୟନ ।
ତହିଁ ଦ୍ୱାରୀ ହୋଇଅଛି ପବନ ନନ୍ଦନ
ତଥି ପୂର୍ବେ ପାପ ହରି ହରି ଦରଶନ ।
ସେଠାରେ ଆକାଶ ଗଙ୍ଗା ପ୍ରଭୁଙ୍କ ସ୍ୱଚ୍ଛନ୍ଦେ
ଆଜ୍ଞାମାଗି ଶ୍ୱେତରାଜା ଯଜ୍ଞ କୁଣ୍ଡେ ହାଦେ ।
ଶ୍ୱେତ ଗଙ୍ଗା ବୋଲି ନିଜନାମ ଅଛି ବହି
ତାହାର ମହିମା ଅତି ବିଚିତ୍ର ଅଟଇ ।
ସେ ଶ୍ୱେତ ଗଙ୍ଗାରେ ସ୍ନାନ କରେ ଯେଉଁଜନ
ଆକାଶ ଗଙ୍ଗାର ସ୍ନାନ ଫଳ ପାଏ ଜାଣ ।
ସେହି ଶ୍ୱେତରାଜା ଯଜ୍ଞ କାଳେ ମେଘମାନେ
ଘୃତ ସମୁଦ୍ରରୁ ଘୃତ ବୃଷ୍ଟି କରୁଥିଲେ ।
ଯଜ୍ଞକାଳେ ଅଗ୍ନିକୁଣ୍ଡ ଶୀତଳ ନିମନ୍ତେ
ଆକାଶ ଗଙ୍ଗାକୁ ଦେବେ ଆଣିଲେ ଭୂତଳେ ।
ଶ୍ୱେତଗଙ୍ଗା ଜଳେ ସ୍ନାନ କଲେ ମାନବେ ପାଇ
ସପ୍ତସିନ୍ଧୁ ସ୍ନାନଫଳ ଅନ୍ତରେ ମିଳଇ ।
ଶ୍ୱେତ ଗଙ୍ଗାରେ ସତତ ସିନ୍ଧୁଜଳ ପୂର୍ଣ୍ଣ
ଶ୍ୱେତ ବୈକୁଣ୍ଠ ବୋଲାଏ ସେହି ରମ୍ୟସ୍ଥାନ ।
ଅମର ବୈକୁଣ୍ଠ ପୁରୁଷୋତ୍ତମ ଯେ କ୍ଷେତ୍ର
ଶ୍ୱେତଗଙ୍ଗା ତୀରେ ନିର୍ମଳ ବୈକୁଣ୍ଠ କହିତ ।

ସ୍ୱର୍ଗରୁଁ ସବୁ ତୀର୍ଥଙ୍କୁ ଆଣି ଦେବଗଣେ
ସେହିଠାରେ ରଖାଇ ଅଛନ୍ତି ଅନୁକ୍ଷଣେ ।
ଅମର ବୈକୁଣ୍ଠ ଯେ ପ୍ରଭୁଙ୍କୁ ସ୍ତୁତିକରି
ରହିଅଛି ସେ ଦକ୍ଷିଣ ପାରୁଶ ଆବୋରି ।
ଦର୍ଶନକୁ ଆସିବାର କାଳେ ସର୍ବଦେବେ
ବିଶ୍ରାମ କରନ୍ତି ଆନନ୍ଦରେ ସେହିଠାବେ ।
ସ୍ୱର୍ଗଦ୍ୱାର ଠାରୁ ଯେ ଦକ୍ଷିଣଦ୍ୱାର ଯାଏଁ
ଦେବଙ୍କ ପ୍ରାର୍ଥନେ ସ୍ୱର୍ଗ ବୈକୁଣ୍ଠ ବୋଲାଏ ।
ସ୍ୱର୍ଗରେ ଯେତେକ ତୀର୍ଥଥିଲେ ଯେ ପୂର୍ବରେ
ସମସ୍ତେ ରହିଲେ ଆସି ଶ୍ୱେତଗଙ୍ଗା ନୀରେ ।
ଏଣୁ ଶ୍ୱେତଗଙ୍ଗାରେ ସ୍ନାହାନ କଲେ ପ୍ରାଣୀ
ସ୍ୱର୍ଗତୀର୍ଥ ସ୍ନାନଫଳ ପାଆନ୍ତି ସେକ୍ଷଣି ।
ସେ ବୈକୁଣ୍ଠେ ହରି ଶ୍ୱେତମାଧବ ମୂର୍ତ୍ତିରେ ।
ବିରାଜନ୍ତି ନିରନ୍ତର ପ୍ରିୟାଙ୍କ ସାଥିରେ ।
ଜ୍ଞାନେ ବା ଅଜ୍ଞାନେ ପାପ କରିଥିବେ ଯେହି
ତାହାଙ୍କ ଦର୍ଶନେ ସବୁ କଳୁଷ ତୁଟଇ ।
ଶ୍ୱେତଗଙ୍ଗାରେ ଗାଧୋଇ ସାରି ଯେଉଁଜନ
ଶ୍ୱେତମାଧବ ମୂର୍ତ୍ତିଙ୍କି କରଇ ଦର୍ଶନ ।
ଶ୍ରୀମହାପ୍ରସାଦ ପାଦେ ମାଡ଼ିଥିବା ଦୋଷ
କ୍ଷମା କରନ୍ତି ସେ ଶ୍ୱେତମାଧବ ଅବଶ୍ୟ ।
ପଣ୍ଡୁରାଜା କରିଥିବା ବ୍ରହ୍ମହତ୍ୟା ପାପ
ସେହିଠାରେ କ୍ଷୟହେଲା ହେ ମୁନି କଳାପ ।
ଏଣୁ ପଣ୍ଡୁ ଆଶ୍ରମ ବୋଲାଏ ସେହି ସ୍ଥାନ
ସେ ଅମର ବଇକୁଣ୍ଠ ମହିମା ଅସୀମ ।
ଶ୍ୱେତଗଙ୍ଗାର ମହିମା ଅପାରୁଁ ଅପାର
ସୁରନର ମୁନିଙ୍କି ଯେ ଅତି ଅଗୋଚର ।
ଦକ୍ଷିଣ ଦିଗରେ ବେଢ଼ା ବାହାର ଭିତରେ
ଶ୍ରୀମାଳ ବୈକୁଣ୍ଠ ସ୍ଥିତ ମହା ମନୋହରେ ।
ଶ୍ରୀପୁରୁଷୋତ୍ତମ ମଧ୍ୟେ ସେସ୍ଥାନ ଗରିଷ୍ଠ
ଅନ୍ୟ ସପତ ବୈକୁଣ୍ଠଠାରୁ ଅଟେ ଶ୍ରେଷ୍ଠ ।
ବାହାର ବେଢ଼ା ପଶ୍ଚିମଠାରୁ ଅଟେ ଜାଣ
ଲିଙ୍ଗକେଶ୍ୱର ଦେବତା ଦ୍ୱାର ପର୍ଯ୍ୟନ୍ତେଣ ।
ପାତାଳ ବୈକୁଣ୍ଠ ବୋଲି ନାମ ଯେ ବୋଲାଏ
ଏଥିର କାରଣ ଶୁଣ କହୁଛି ଥୋକାଏ ।
ପୂର୍ବେ ନାରାୟଣ ଯେ ବାମନ ଅବତାରେ
ବଳିକି ଚାପିଲେ ପାତାଳକୁ ଚରଣରେ ।

ପାଦପଦ୍ମ ଲାଗି ବଳି ପାତାଳକୁ ଗଲା
ସେଠାରେ ପାଦପଦ୍ମକୁ ବହୁସ୍ତୁତି କଲା ।
ତେଣୁ ସୁ-ପ୍ରସନ୍ନ ହୋଇ ଆପଣେ ଶ୍ରୀହରି
ପାତାଳ ବୈକୁଣ୍ଠେ ସ୍ଥାନ ଦେଲେ ଯାଚକରି ।
ପ୍ରଭୁଙ୍କର ଆଜ୍ଞାଅନୁସାରେ ବଳି ହୃଷ୍ଟେ
ମହା ଆନନ୍ଦେ ରହିଲା ପାତାଳ ବୈକୁଣ୍ଠେ ।
ନିତ୍ୟ ବୈକୁଣ୍ଠ ପାରୁଶେ ପଶ୍ଚିମ ଦୁଆରେ
କରଯୋଡ଼ି ବଳିରାଜା ସଦା ସ୍ତୁତି କରେ ।
ସାତକୋଟି ତୀର୍ଥ ସଙ୍ଗେ ଘେନି ସେହି ବଳି
ଆବୋରି ଅଛିଯେ ସେ ପଶ୍ଚିମ ଦ୍ୱାରସ୍ଥଳି ।
ଶିବଙ୍କ କର୍ଣ୍ଣରୁ ଯେ ଅମୃତମଣି ଗୋଟି
ଯେବଣ ସ୍ଥାନେ ପଡ଼ିଲା ନାଚନ୍ତେ ଧୂର୍ଜଟି ।
ସେହିସ୍ଥାନ ବୋଲାଇଲା ଶ୍ରୀମଣିକର୍ଣ୍ଣିକା
ପ୍ରଧାନ ତୀର୍ଥ ସେ ଶ୍ରୀକ୍ଷେତର ମଧ୍ୟେ ଏକା
ପୂର୍ବେ ଏକଥା ଭୁଷଣ୍ଡି ମାର୍କଣ୍ଡଙ୍କ ଆଗେ
ଯଥାକାଳେ କହିଥିଲେ ଅତି ଅନୁରାଗେ ।
ତଦନ୍ତେ ମାର୍କଣ୍ଡେୟ ଯେ ଶୁକଦେବ ପାଶେ
ପ୍ରକାଶ କଲେ ଏ କଥା ପରମ ବିଶ୍ୱାସେ ।
ଶୁକ ଯେକାଳେ ନୃପତି ପରୀକ୍ଷିତେ ଭଣି
ସେହି ସମୟରେ ଜାଣ ଥିଲଇଁ ମୁଁ ଶୁଣି ।
ଆବର ଶ୍ରବଣ କରିଛନ୍ତି ସୂତ ଯତି
ସବାରେ ତୁମ୍ଭମାନଙ୍କୁ କହିଲି ସମ୍ପ୍ରତି ।
ପୁଣି ଶୁଣ ଆହେ ସର୍ବ ତପୀ ମୁନିଗଣ
ସେଠାରେ ଅଛନ୍ତି ଶିବ କପାଳମୋଚନ ।
କେମନ୍ତେ ସେ କପାଳମୋଚନ ବୋଲାଇଲେ
ସେକଥା ତୁମ୍ଭ ନିକଟେ କହୁଛି ମୁଁ ଭଲେ ।
ସଦାଶିବ ଯେ କାଳରେ କ୍ରୋଧଭରି ହୋଇ
ବ୍ରହ୍ମାଙ୍କ କପାଳ ଦେଲେ ସ୍ୱହସ୍ତେ ଛିଣ୍ଡାଇ ।
ସେ ବ୍ରହ୍ମ କପୋଳ ଯାହିଁ ସେ ସ୍ଥାନେ ପଡ଼ିଲା
ଶିବଙ୍କ ନାମ କପାଳମୋଚନ ହୋଇଲା ।
ସେଠାକୁ ମଣିକର୍ଣ୍ଣିକା କାଶୀରୁ ଆଇଲା
ସପ୍ତକୋଟୀ ତୀର୍ଥ ଯେ ସଙ୍ଗରେ ଆଣିଥିଲା ।
ସେ ମଣିକର୍ଣ୍ଣିକା ନାମେ ମହାତୀର୍ଥ ବର
କପାଳମୋଚନ ଶିବ ଯହିଁ ମନୋହର ।
ପାତାଳ ବୈକୁଣ୍ଠେ ମହାପ୍ରଭୁଙ୍କ ପାରୁଶେ
ପଶ୍ଚିମଦିଗ ଆବୋରି ରହିଲା ହରଷେ ।

ହରଚଣ୍ଡୀ ବାସେଲୀ ଯେ ସେ ବୈକୁଣ୍ଠ ଦ୍ୱାରେ
କପାଳମୋଚନଲଣ୍ଡ ବୈକୁଣ୍ଠ ଆବୋର ।
ମର୍ଣିକର୍ଣ୍ଣିକା ତୀର୍ଥ ଯେ କୋଟିତୀର୍ଥ ଯେହ୍ନ
କରକର ହସି ଜଟେ ଦବସ ରଜନୀ ।
ତହିଁରେ ଯେବଣ ଜନ ସୁଖେ ସାରେ ସ୍ନାନ
କପାଳମୋଚନ ଶିବେ କରଇ ଦର୍ଶନ ।
ଗୋ-ହତ୍ୟା ବ୍ରହ୍ମ ହତ୍ୟାରୁ ସେ ପ୍ରାଣୀ ମୁକୁଳେ
ସ୍ୱର୍ଗରେ ନୃତ୍ୟ କରନ୍ତି ତାର ପିତୃକୁଳେ ।
ଶ୍ରୀମାନ ବୈକୁଣ୍ଠ ପଛେ ଲକ୍ଷ୍ମୀ ବଇକୁଣ୍ଠ
ତାପଛେ ପଶ୍ଚିମ ଦଗେ ପାତାଳ ବୈକୁଣ୍ଠ ।
ଅନନ୍ତ ବେଢ଼ା ବାହାର ଭିତରେ ପଶ୍ଚିମେ
ଏ ବେନ ବୈକୁଣ୍ଠ ବିରାଜଇ ମନୋରମେ ।
ଏ ବୈକୁଣ୍ଠର ମହିମା ଅତି ଅଲୌକିକ
ପୂର୍ବର ଇତିହାସ ଯା ହୋଇଛୁ କଥିତ ।
ତାହା ବିସ୍ତାର ବର୍ଣ୍ଣନେ କେବା ହେବ କ୍ଷମ
ଯହିଁ କରଯୋଡ଼ି ସ୍ତୁତି କରୁଛନ୍ତି ଯମ ।
ବାମନଙ୍କ ପାଦପଦ୍ମ ରହିଅଛି ଯହିଁ
ତାହାର ମହିମା ମୁଖେ କେ ପାରିବ କହି ।
କୋଇଲି ବୈକୁଣ୍ଠର ଉତ୍ତର ଦ୍ୱାରଠାରୁ
ଖର୍ଗୋଲା ନଦୀ ପର୍ଯ୍ୟନ୍ତ ସ୍ଥାନ ଯେ ସୁରୁଚୁ ।
ବ୍ରହ୍ମ ବୈକୁଣ୍ଠ ବୋଲଣ ନାମ ସେ ବହଇ
ସାତ ଭଉଣୀ ଅଛନ୍ତି ତହିଁ ଦ୍ୱାରୀ ହୋଇ ।
ପୁଣି ଯେ ସର୍ବମଙ୍ଗଳା ମହାମାଈ ତଥି
ଚକାପାଡ଼ି ଆନନ୍ଦରେ ଦ୍ୱାର ଜଗିଛନ୍ତି ।
ସେ ବ୍ରହ୍ମ ବୈକୁଣ୍ଠେ ଛନ୍ତି ମାରକଣ୍ଡେଶ୍ୱର
ତାହାଙ୍କ ମହିମା ସୁରସୁରେ ଅଗୋଚର ।
ସେ ମାର୍କଣ୍ଡ କେତେକଳ୍ପ ବ୍ରହ୍ମା ହୋଇଥିଲେ
ବ୍ରହ୍ମଲୋକ ରୁଦ୍ର ବ୍ରହ୍ମ ବୈକୁଣ୍ଠ ସେ କଲେ ।
ବ୍ରହ୍ମଲୋକରେ ଯେ ବ୍ରହ୍ମ ବଇକୁଣ୍ଠ ଥିଲା
ବାମନାବତାରେ ତଥି ଯେଉଁପାଦ ଗଲା ।
ସେହି ପାଦପଦେ ଚଉରାଶି କୋଟି ଗଙ୍ଗା
ଢାଳିଲେ ବିଧାତା ଆଣି ତରଳ ତରଙ୍ଗା ।
ସେହି ଠାବରେଯେ ସେ ବୈକୁଣ୍ଠ ବିସ୍ତରଣ
ସ୍ତୁତି କରିଥିଲା ରହିବାକୁ ପାରୁଶେଣ ।
ଏମନ୍ତ ଆଜ୍ଞା ମାଗିଲା ଭକତି ଭାବରେ
ମୋତେରଖ ପ୍ରଭୁ ମହାବୈକୁଣ୍ଠ ଠାବରେ ।

ଏଣୁ ପ୍ରଭୁ ସେ ପ୍ରାର୍ଥନା ଅଙ୍ଗୀକାର କଲେ
ରଜତର ପାରୁଶରେ ଆଣି ରଖାଇଲେ ।
ବ୍ରହ୍ମଲୋକେ ଯେ ଚଉଦ କୋଟିତୀର୍ଥ ଥିଲା
ସେ ତୀର୍ଥ ସକଳ ମାରକଣ୍ଡ ସର ହେଲା ।
ମାର୍କଣ୍ଡେୟ ହର ତାର ତଟରେ ବିରାଜିଲେ
ମାତୃହରଣ ଦୋଷକୁ ଆପଣେ ଖଣ୍ଡିଲେ ।
ବୃଷଳୀଗତି ପାତକ ଆଦି ପାପମାନ
ମାର୍କଣ୍ଡ ହ୍ରଦ ସ୍ନାନରେ ହୁଅଇ ମୋଚନ ।
ତହିଁ ସ୍ନାନ ଧ୍ୟାନକରି ବ୍ରହ୍ମାହର ଭୁଲେ
ସେହି ବୈକୁଣ୍ଠରେ ମହା ଆନନ୍ଦେ ରହିଲେ ।
ମାର୍କଣ୍ଡେୟ ଋଷି ଯେ ଶିବଙ୍କୁ ଆରାଧିଣ
ମାରକଣ୍ଡେଶ୍ୱର ବୋଲି ନାମଦେଲେ ଜାଣ ।
ହର ବ୍ରହ୍ମା ଦୁହେଁ ମିଳି ଆନନ୍ଦରେ ତଥି
ଏକଇ ଶମ୍ଭୁରୂପରେ ସଦା ବିରାଜନ୍ତି ।
ମହାମହିମାମୟ ସେ ଲିଙ୍ଗ ବ୍ରହ୍ମ ହର
ଭୁବନେ ବିଖ୍ୟାତ ନାମ ମାରକଣ୍ଡେଶ୍ୱର ।
ମାର୍କଣ୍ଡ ପୁଷ୍କରଣୀରେ ବଡ଼ାଇଣ ସ୍ନାନ
ମାର୍କଣ୍ଡେଶ୍ୱରଙ୍କୁ ଯେହୁ କରଇ ଦର୍ଶନ ।
ପଞ୍ଚ ମହାପାତକ ସେ ନିଜ ଅଙ୍ଗୁ ହରେ
ଚୌଦକୋଟିତୀର୍ଥ ଫଳ ଶୀଘ୍ର ଲଭକରେ ।
ବ୍ରହ୍ମ ବୈକୁଣ୍ଠରେ ବାସ କରଣ ଦେହିକ
ଐଶ୍ୱର୍ଯ୍ୟ ସମ୍ପଦ ପାଇ ଲଭେ ମହାସୁଖ ।
ଅନ୍ତେ ବ୍ରହ୍ମ ବୈକୁଣ୍ଠରେ ବସଇ ସେ ଜନ
ପୁନର୍ଜନ୍ମ ନ ହୁଅଇ ମର୍ତ୍ତ୍ୟେ କଦାଚନ ।
ବେଢ଼ା ବାହାର ଭିତରେ ବେନ ବଇକୁଣ୍ଠ
ଏ ବେନପୁର ମହିମା ଅତିହିଁ ଗରିଷ୍ଠ ।
ଏକଇ ବୈକୁଣ୍ଠେ ହର ବ୍ରହ୍ମା ସଙ୍ଗହୋଇ
ବିଜେଯେ କରିଅଛନ୍ତି ଏକତନୁ ବହି ।
ଦୁଇଦେବ ଏକମୂର୍ତ୍ତି ଶମ୍ଭୁ ମାର୍କଣ୍ଡେୟ
ସାତକଳ୍ପ ଜୀବୀ ଋଷି କରିଛନ୍ତି ଥୟ ।
ରଜୋଗୁଣୀ ତମୋଗୁଣୀ ସେ ଯେ ଧାତା ହର
ବିଖ୍ୟାତ ବ୍ରହ୍ମ ବୈକୁଣ୍ଠେ ମାରକଣ୍ଡେଶ୍ୱର ।
ଯେଉଁ ବ୍ରହ୍ମପୁରୀ ପାଦପଦ୍ମରେ ଲୁଚିଲା
ଚଉରାଶୀକୋଟି ଗଙ୍ଗା ଯହିଁ ଲୀନହେଲା ।
କେ କହି ପାରିବ ଅଲ୍ପ ସେ ପୁରୀ ମହିମା
କେଉଁ ଅଛି ଦେଇ ପାରିବ ତାହାକୁ ଉପମା ।

ସେ ଯେ ବ୍ରହ୍ମ ବୈକୁଣ୍ଠର ମାହାତ୍ମ୍ୟ ଅଶେଷ
ସହସ୍ର ବଦନେ ବର୍ଣ୍ଣି ନ ପାରନ୍ତି ଶେଷ ।
ଶୁକ ଶନକାଦି ଯେତେ ସିଦ୍ଧରୂପି ସବୁ
ବ୍ରହ୍ମ ବୈକୁଣ୍ଠର ଅନ୍ତ କେହି ଯେ ନ ପାନ୍ତି ।
ଦକ୍ଷିଣରେ ହରିହର ବିରାଜନ୍ତି ଆପେ
ଉତ୍ତରେ ଯେ ହର ବ୍ରହ୍ମା ଛନ୍ତି ଲିଙ୍ଗରୂପେ ।
ଏମନ୍ତେ ଜୈମିନି ବଖାଣିଲେ ମୁନିମେଳେ
ବୈଷ୍ଣବ ଦାସ ନମଇ ମହାପ୍ରାଣି ତଳେ ।

—:×:—

## କୋଇଲ ବୈକୁଣ୍ଠ ମହିମା

ଶୌନକ ଉବାଚ

ଶୌନକ ବୋଲନ୍ତି ହେ ଜୈମିନି ମହାତ୍ମା
କହିବା ହେଉ କୋଇଲ ବୈକୁଣ୍ଠ ମହିମା ।
ଉତ୍ତର ଦୁଆରେ ଯେଉଁ କୋଇଲ ବୈକୁଣ୍ଠ
ତାହାର ତତ୍ତ୍ୱ ବୁଝାନ୍ତୁ ଆହେ ଋଷିଶ୍ରେଷ୍ଠ ।
କୋଇଲ ବୈକୁଣ୍ଠ ନାମ କାହିଁକି ହୋଇଲା
ପକ୍ଷୀନାମରେ ବୈକୁଣ୍ଠ କାହିଁପାଇଁ ଯେ ହେଲା ।
ଅନ୍ୟ ପକ୍ଷୀତ ଅନେକ ଅଛନ୍ତି ସଂସାରେ
କୋଇଲ କି ତପ କରିଥିଲା କେଉଁଠାରେ ।
ତାହା ନାମରେ କିମ୍ପାଇଁ ବୈକୁଣ୍ଠ ପ୍ରକାଶ
ଏକଥା ସମ୍ପ୍ରତି କହ ହେ ବ୍ୟାସଙ୍କ ଶିଷ୍ୟ ।
ଶୌନକ ମୁନିଙ୍କ ମୁଖୁଁ ଏ ବଚନ ଶୁଣି
କହି ଆରମ୍ଭିଲେ ତହୁଁ ମହାତ୍ମା ଜୈମିନି ।

ଜୈମିନି ଉବାଚ

ଶୁଣିମା ହେଉ ହେ ମୁନିବର ଶଉନକ
କହୁଛି ମୁଁ ତୁମ୍ଭ ଆଗେ କରି ଠିକ ଠିକ ।
ନାରାୟଣ ବୈକୁଣ୍ଠ ଯେ ଉତ୍ତର ଦୁଆରରେ
କୋଇଲଟିଏ ସେଠାରେ ନିତ୍ୟ ସ୍ୱନ କରେ ।
ତାର ସେ ମଧୁର ଧ୍ୱନି ଅତି ମନୋହର
ଶ୍ରବଣେ ପଶିଲେ ଝରେ ଅମୃତର ଧାର ।
ପୂର୍ବେ ଯେ ନୀଳସୁନ୍ଦର ବଇକୁଣ୍ଠ ଥିଲା
ପରେ ନାରାୟଣ ବଇକୁଣ୍ଠ ବୋଲାଇଲା ।
ଲକ୍ଷ୍ମୀ ନାରାୟଣଙ୍କର କ୍ରୀଡ଼ା ବିହାର ସ୍ଥାନ
ସକଳେ ଜାଣନ୍ତି ସେ ଗୁପତ ବୃନ୍ଦାବନ ।
ନିତ୍ୟଲୀଳା ଯେଉଁଠାରେ କରନ୍ତି ଶ୍ରୀହରି
ଅବସରେ ସେ ବନର ବନେ ବିହାରି ।
ନାନା ସୁବାସିତ ଫୁଲ ଫୁଟି ମହକଇ
ତରୁଲତା ପାଖରେ ସୁଗନ୍ଧ ଚହଟଇ ।
ଯେବା ଯେଉଁପୁଷ୍ପ ଫଳ ତହିଁ ଇଚ୍ଛାକରେ
ତାହା ପ୍ରାପ୍ତହୁଏ ଲକ୍ଷ୍ମୀ ହରିଙ୍କ କୃପାରେ ।
ନାନାପକ୍ଷୀ ସେ ବୈକୁଣ୍ଠେ ସଦା ଚରୁଥାନ୍ତି
ନିଜ ନିଜ ସ୍ୱରେ ସର୍ବେ ଧ୍ୱନି ଯେ କରନ୍ତି ।
ସବୁହିଁ ଅତି ମଧୁର କୋଇଲର ଧ୍ୱନି
ଶୁଣି ଅତି ଶ୍ରଦ୍ଧା ବଳାଇଲେ କମଳିଣୀ ।
ପଞ୍ଚମ ତାନେ କୋଇଲି ଡାକେ କୁହୁ କୁହୁ
ଶ୍ରବଣ ଡେରି କମଳା ଶୁଣନ୍ତି ଯେ ତହୁଁ ।
ପ୍ରିୟାଙ୍କର ମନ ଜାଣି ପ୍ରଭୁ ଜଗନ୍ନାଥ
କୋଇଲ ରୂପ ହୋଇଲେ ତହିଁ ଅକସ୍ମାତ୍ ।
ସବୁକୋକିଳ ଧ୍ୱନି ହୁଁ ସେ ଧ୍ୱନି ବଳଇ
ସଦାବେଳେ ରବକଲେ ପ୍ରଭୁ ରମାପାଇଁ ।
ତାହାଶୁଣି ସକଳ କୋକିଳ ଆଚମ୍ବିତେ
ଅବାକହୋଇ ଶୁଣନ୍ତି ସେ ପିକସ୍ୱନ ନିତେ ।
କୃଷ୍ଣଙ୍କ ମୋହନବଂଶୀସ୍ୱନ ତାର ସଙ୍ଗେ
ତାନେ ତାନେ ବାଜଉଠେ ଅପୂରବ ରଙ୍ଗେ
ଭିତରପୁରେ ଥାଇ ତା କମଳା ଶୁଣିଲେ
ବନ ଦେଖିବାକୁ ତହୁଁ ବାହାର ହୋଇଲେ ।
ପାଇ ଦେଖିଲେ କଦମ୍ବ ବୃକ୍ଷର ଉପରେ
ସବୁ ପିକଧ୍ୱନି ଜିଣି ପକ୍ଷୀଧ୍ୱନି କରେ ।
ଅପୂର୍ବ ସେ କୋଇଲଟି ଅତିହିଁ ସୁନ୍ଦର
ତା ବେନି ଚକ୍ଷୁ ଦିଶଇ ମାଣିକ୍ୟ ପ୍ରକାର ।
ଇନ୍ଦ୍ରନୀଳମଣି ଜିଣି ତା ସର୍ବାଙ୍ଗପାକ
ପଦ୍ମରାଗମଣି ପରି ତା ପାଦ ଯୋଡ଼ିକ ।
ସେହି ଅପୂର୍ବ କୋଇଲଟିକି ଲକ୍ଷ୍ମୀରୂହିଁ
କୋମଳ ସ୍ୱରେ କହନ୍ତି ସେନେହ ବଳାଇ ।
ସବୁ ପିକହୁଁ ତୋ ସ୍ୱନ ଅତି ସୁମଧୁର
କାହୁଁ ଆଇଲୁ ଏଥକୁ ଆରେ ପିକବର ।
ଆଜଠାରୁ ଆନନ୍ଦରେ ରହ ମୋ ନିବରେ
ସନ୍ତୋଷ କରିବି ତୋତେ ନିତ୍ୟ କ୍ଷୀରସରେ ।
ଭୁଞ୍ଜାଇବି ସୁରସ ଅମୃତ-ରସାବଳୀ
ଖାଇ ସୁଖୀହେବୁ ପିକ ତାଳମ୍ବ କଦଳୀ ।

ବୋଲେ ଦେଖି ମୋର ବଡ଼ ଶରଧା ହୋଉଛି
ତୋ ମଧୁର ଧ୍ୱନି ମୋର ମନକୁ ମୋହୁଛି ।
ନିତି ଅମୃତ-ଦରବ ଦେବଇଁ ମୁଁ ତୋତେ
ଏହି ସ୍ୱନ ତୋର କର୍ଣ୍ଣେ ଶୁଣୁଥିବି ନିତ୍ୟେ ।
ନ ଯା ନ ଯା ପକ୍ଷୀମଣି ଆନେ କେଉଁ କତି
ମୋ ନବରେ ପୋଷିବଇଁ ସରାଗରେ ଅତି ।
ପୁଲକ ଉଠିବ ଦିନ୍‌ଦିନ କଳେବର
ଅମୃତ ପାନେ ପିକ ତୁ ହୋଇବୁ ଅମର ।
ସର୍ବଦା ଥିବୁ ପିକ ମୋ ଗୁପ୍ତ ବୃନ୍ଦାବନେ
ଅନ୍ୟ ବନ ଆଉ ତୋର ନ ପଡ଼ିବ ମନେ ।
ଆସ ଆସ ପିକବର ମୋର ଅତିପ୍ରୀୟ
ମୋ କଣ୍ଠର ଚନ୍ଦ୍ରକାନ୍ତ ମୁକ୍ତାମାଳ ନିଅ ।
ତହୁଁ ସେହି ପିକ ଉଡ଼ିଆସି ଆନନ୍ଦରେ
ପରବେଶ ହେଲା କମଳାଙ୍କ ଶ୍ରୀଛାମୁଁରେ ।
ଅତି ହରଷରେ ଯେ କମଳା ଗେଲେ ଗେଲେ
ନିଜକଣ୍ଠୁ ମୋତିମାଳ ତାର କଣ୍ଠେ ଦେଲେ ।
ତହୁଁ ନିଜରୂପକୁ ଧଇଲେ ଦେବରାଜ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ ।
ନାନାରତ୍ନେ ନାନାପୁଷ୍ପେ ଶ୍ରୀଅଙ୍ଗ ସୁବେଶ
ସୁରଙ୍ଗ ଅଧରେ ପରିଅଛି ମୃଦୁହାସ ।
ଏମନ୍ତ ମୋହନ ମୂର୍ତ୍ତି ହୁଅନ୍ତେ ଶ୍ରୀହରି
ଦେଖିଣ କମଳା ଲାଜଲାଜ ହୋଇକରି ।
ମଧୁରବାଣୀ ଭାଷନ୍ତି ପ୍ରଭୁଙ୍କ ସାକ୍ଷାତେ
ତୁମ୍ଭେ ମାୟାଧର ହରି ଭୁଲାଇଲ ମୋତେ ।
ଲୀଳାଛଳେ ପିକରୂପ ଧଇଲ ହେ ଯେବେ
ମୋହର ଦଇନ ପ୍ରଭୁ ଘେନାକର ଏବେ ।
ଏ ଯେ ଗୁପ୍ତ ବୃନ୍ଦାବନ ହେ ପୁରୁଷୋତ୍ତମ
ଆଜୁଁ କୋଇଲ ବୈକୁଣ୍ଠ ହେଉ ଏହା ନାମ ।
କମଳାଙ୍କ ବଚନକୁ ପାଳି ଚକ୍ରଧର
ହେଉବୋଲି ଦରହାସେ କଲେ ସୀଉକାର ।
ଏଣୁ କୋଇଲି ବୈକୁଣ୍ଠ ବୋଲାଇଲା ଜାଣ
ମାଧବୀଲତା ନିକୁଞ୍ଜ ପରମ ଶୋଭନ ।
ନୀଳସୁନ୍ଦର ଉତ୍ତର ପାରୁଶେ ହେ ସ୍ଥାନ
ଦର୍ଶନ କରନ୍ତି ଯେହୁ ମହାଭାଗ୍ୟବାନ ।
ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ମହିମା
କେ ଅବା କହିପାରିବ ଲୀଳାଗୁଣ ସୀମା ।

ଏମନ୍ତେ ଜୈମିନି ଋଷି କଲେକ ବଖାଣ
ଶୁଣି ପରମ ଆନନ୍ଦ ହୋଇଲେ ମୁନିଗଣ ।
ନିରନ୍ତରେ ଧ୍ୟାନ କରି କମଳାବିଳାସ
ଭାଷା ପ୍ରବନ୍ଧେ ଭଣଇ ବଇଷ୍ଣବ ଦାସ ।

—ଃ*ଃ—

## ପାବନ ବୈକୁଣ୍ଠାଦି ବର୍ଣ୍ଣନ

ଜୈମିନି ଉବାଚ

ଜୈମିନି କହନ୍ତି ପୁଣି ଏଥୁ ଅନନ୍ତରେ
ଶ୍ରବଣ କରିବାହେଉ ସର୍ବ ମୁନିବରେ ।
ପୂର୍ବ ଦିଗର ଯେ ଭୋଗମଣ୍ଡପ ଠାବରୁ
ସିଂହ ଦୁଆର ପର୍ଯ୍ୟନ୍ତେ ଅତ୍ୟନ୍ତ ସୁରୁରୁ ।
ପତିତପାବନ ନାମେ ବୈକୁଣ୍ଠ ବୋଲାଏ
ପତିତ ଜନଙ୍କ ହିତେ ସେ ବୈକୁଣ୍ଠ ଶୋହେ ।
ପତିତ ପ୍ରାଣୀମାନେ ଯେ ଭିତରେ ନ ଯିବେ
ତେଣୁ ପତିତପାବନ ହରି ସେହିଠାବେ ।
ସିଂହଦ୍ୱାର ଯାଏଁ ଆସି ପତିତ ମାନବେ
ଦର୍ଶନ କରନ୍ତି ପତିତପାବନ ଦେବେ ।
ପତିତପାବନ ମୂରତିଙ୍କ ଦରଶନେ
ଅମୁକ୍ତ ଜନେ ମୁକତ ହୋନ୍ତି ପ୍ରତିଦିନେ ।
ପତିତ ପ୍ରାଣୀମାନଙ୍କୁ ନିସ୍ତାରିବା ଛଳେ
ପତିତପାବନ ବାନା ନୀଳଚକ୍ରେ ଚଳେ ।
ସିଂହଦ୍ୱାର ଠାରୁ ବେଳେଶ୍ୱରଙ୍କ ପର୍ଯ୍ୟନ୍ତେ
ଲୀଳାବୈକୁଣ୍ଠ ବୋଲାଇ ନାମବହେ ନିତ୍ୟେ ।
ଶ୍ରୀନୃସିଂହ ନୀଳକଣ୍ଠେଶ୍ୱର ଦ୍ୱାରୀ ତହିଁ
ଅନାଦି କାଳରୁ ସେହୁ ଛନ୍ତି ଜଗିରହି ।
ନାନାଲୀଳା ଯାତ୍ରାମାନ ହୁଏ ସେହି ସ୍ଥାନେ
ଲୀଳାବଇକୁଣ୍ଠ ନାମ ତେଣୁ ସେ ବିଧାନେ ।
ଇନ୍ଦ୍ର ଆଣି ସ୍ୱର୍ଗ ଯମୁନାକୁ ଯେ ରଖିଲା
ଇନ୍ଦ୍ର ଯମୁନା ବୋଲି ତା ନାମ ଦେଇଗଲା ।
ଇନ୍ଦ୍ରଦ୍ୟୁମ୍ନ ମହାରାଜାର ଯେ କେତେ ଗାଈ
ସେଠାବରେ ପାଦପଦ୍ମେ ଗୋଷ୍ଠହୋଇ ଥାଇ ।
ଯଜ୍ଞକାଳେ ସେ ଗାଈମାନଙ୍କୁ ଦେଇ ଦାନ
ଗୁଣ୍ଡିଚଦ୍ୱାର ଆଦ୍ୟରେ ଥିଲା କୁଞ୍ଜବନ ।
ଏବେ ସେ ଗୁଣ୍ଡି[illegible]ଦ୍ୱାର[illegible]ବେଢ଼ା ସୀମେ
ବ[illegible] ହୋଇଛି ଜାଣ ଶିବାକ୍ଷେତ୍ର ଧାମେ ।

ଶ୍ରୀବଡ଼ଦେଉଳ ପ୍ରକାଶରେ ନାମଚନ୍ଦ୍ରମା
ସଙ୍ଗକଲେ ଯହିଁ ବ୍ରହ୍ମା ସେ ଇନ୍ଦ୍ରଦ୍ୟୁମ୍ନ ।
ସଙ୍ଗବେଢା ନାମ ତାକୁ ଦେଲେ ଗଲେ ଧାତା
ଆଦ୍ୟରୁ ଗୁଣ୍ଡିଚ୍ଚା ନାମ ବିଦିତ ସର୍ବଥା ।
ଜଗନ୍ନାଥ ନାନାଲୀଳା କରି ଆନନ୍ଦରେ
ଯାଇଣ ରହନ୍ତି ଆପେ ସେ କୁଞ୍ଜ ଗୃହରେ ।
ଯେଉଁକାଳୁ ଦାରୁବ୍ରହ୍ମ ରୂପ ଧରିଛନ୍ତି
ସେହିକାଳୁରୁ ଗୁଣ୍ଡିଚ୍ଚା ଯାତ୍ରା ସେ କରନ୍ତି ।
କେତେଯୁଗ ଏହିପରି ଗଲାଣି ସେ ବହି
କେତେ ଦାରୁବ୍ରହ୍ମ ରୂପ ହେଲେଣି ଶ୍ରୀପତି ।
ସେହି ଇନ୍ଦ୍ର ଯମୁନାରେ ନବହନ ଯାଏଁ
ସର୍ବତୀର୍ଥ ଯେଜଣ ପୁଷ୍କର ଦେବ ଥାଏ ।
ତହିଁରେ ଯେବଣ ଜନେ ସ୍ନାନାଦି କରନ୍ତି
ସର୍ବତୀର୍ଥ ସ୍ନାନଫଳ ଅନାୟାସେ ପାନ୍ତି ।
ବଳରାଜା ଯହିଁ କରେ ଗୁଣ୍ଡିଚ୍ଚା ଦର୍ଶନ
ସେହି ସ୍ଥାନଟି ବୋଲାଏ ବଳଗଣ୍ଡି ନାମ ।
ନୀଳାଦ୍ରି ଲୀଳା ବୈକୁଣ୍ଠ ସବୁଠୁଁ ଉତ୍ତମ
ଏମନ୍ତେ ନବ ବୈକୁଣ୍ଠ ଶ୍ରୀପୁରୁଷୋତ୍ତମ ।
ବୈକୁଣ୍ଠମାନଙ୍କ ଶ୍ରେଷ୍ଠ ଅଷ୍ଟବଇକୁଣ୍ଠ
ତହୁଁ ଶ୍ରୀନୀଳସୁନ୍ଦର ବଇକୁଣ୍ଠ ଶ୍ରେଷ୍ଠ ।
ମହାଲକ୍ଷ୍ମୀ ପଦ୍ମପୁଷ୍ପ ବଢ଼ଏ ଯେଜଣ
ନୀଳସୁନ୍ଦର ବୈକୁଣ୍ଠ ସହିଁରନ୍ତି ଜାଣ ।
କର୍ପୂର ଚନ୍ଦନ ଚୁଆ ଦ୍ରବ୍ୟନ୍ତ ମହାମାଣ
ସେହିପୁର ସଦା ମହମହ ବାସୁଥାଇ ।
ଗଙ୍ଗା ଯମୁନା ଯେ ସରସ୍ୱତୀ ତିନଧାରେ
ଏକହୋଇଣି ବହନ୍ତି ସେହି ବୈକୁଣ୍ଠରେ ।
ଦେଖେ ସେ ଉତ୍ତର ଗିରିତଟ ଶୋଭାପାଏ
ପୂର୍ବ ପଶ୍ଚିମ ଭେଦିଣ ସେ ଯମୁନା ବହେ ।
ପଶ୍ଚିମକୁ ଭେଦି ଯମୁନା ଯେ ଯାଏ ବହି
ସାଗରମଧ୍ୟରେ ସମ୍ଭାଏ ଲହରୀ ଖେଳାଇ ।
ପୂର୍ବଦିଗ ଭେଦି ବଳଗଣ୍ଡିଠାକୁ ଧାରେ
ବାଙ୍କି ମୁହାଁଣରେ ମିଶି ସମ୍ଭାଏ ସାଗରେ ।
ସମୁଦ୍ର ତ୍ରିବେଣୀ ବେଢ଼ି ବହେ ଚଉପାଶ
ମଧ୍ୟେ ଶ୍ରୀଜଗନ୍ନାଥଙ୍କ ଗୃପତ ନିବାସ ।
ସର୍ବକାଳେ [illegible] ଦେ [illegible]
ସର୍ବଦା ଶ୍ରୀପାଦପଦ୍ମ ରଜ ପଡ଼େ ଯହିଁ ।

କାହିଁ ନ ଦେଖିବା ନ ଶୁଣିବା ଏ ବଖାନ
ଯହିଁ କୈବଲ୍ୟ ହେଉଛି ପାଦଧୂଳି ଜାଣ ।
ଯେବଣ ଠାବରେ ଅଷ୍ଟଶମ୍ଭୁ ହେଲେ ଶୂଳ
ସର୍ବାଙ୍ଗେ ବୋଳିଲେ ଯେଉଁ ପାଦପଦ୍ମ ଧୂଳି ।
ଏମନ୍ତ ଶ୍ରୀବୈକୁଣ୍ଠ ନୀଳାଦ୍ରି ମହାରମ
ସକଳ ଶାସ୍ତ୍ର ପୁରାଣେ ବର୍ଣ୍ଣିତ ଉତ୍ତମ ।
ସାମବେଦ ବାଣୀ ଏ ସେ ଅପୂର୍ବ ମହିମା
କେ କହି ପାରିବ ନିତ୍ୟ-ବୈକୁଣ୍ଠର ସୀମା ।
ବ୍ରହ୍ମାଙ୍କ ମୁଖୁ ଏ କଥା ଶଙ୍କର ଶୁଣିଲେ
ସବୁଦେବେ ଶୁଣି ମହାଆନନ୍ଦ ହୋଇଲେ ।
ଅନନ୍ତକୋଟି ବୈକୁଣ୍ଠ ଯେଉଁ ନିଜଧାମ
ନୀଳାଦ୍ରିରେ ବିଜୟେ ଠାକୁର ଜଗନ୍ନାଥ ॥
ସକଳ ବୈକୁଣ୍ଠ ପୁରୁଷୋତ୍ତମୁଁ ଉତ୍ପତ୍ତି
ଏହା ଧାତା ମୁଖୁଁ ଶୁଣି ତୋଷ ଉମାପତି ।
ସେ ହରପାର୍ବତୀ ଅଷ୍ଟଶମ୍ଭୁ ଅଷ୍ଟଚଣ୍ଡୀ
ଯୁଗେ ଯୁଗେ ବେଢ଼ି ଶ୍ରୀକ୍ଷେତ୍ରକୁ ଛନ୍ତି ମଣ୍ଡି ।
ବାହାର ବୈକୁଣ୍ଠମାନଙ୍କର ସେତୁ ଭଲେ
ଅଷ୍ଟଶମ୍ଭୁ ଅଷ୍ଟଚଣ୍ଡୀ ହୋଇଣ ରହିଲେ ।
ଭିତର ବଇକୁଣ୍ଠକୁ ଆଜ୍ଞା ନୋହିଲାକୁ
ଯାଇ ନପାରିଲେ ହରପାର୍ବତୀ ସେଠାକୁ ।
ଅଷ୍ଟବୈକୁଣ୍ଠରେ ହରଷରେ ହର ଉମା
ନିଶ୍ଚିନ୍ତେ ରହି ପ୍ରକାଶ କରନ୍ତି ମହିମା ।
ଶ୍ରୀନୀଳସୁନ୍ଦର ବୈକୁଣ୍ଠରେ ଲକ୍ଷ୍ମୀନାଥ
ମହାଗୁପତ ରସରେ ନିତ୍ୟ ଜଗନ୍ନାଥ ।
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଅକ୍ଷୟ ପ୍ରକଟ
ଅକ୍ଷୟ ସିଂହାସନ ଅକ୍ଷୟ କଳ୍ପବଟ ।
କାଳେ କାଳେ ଜଗନ୍ନାଥ ଅକ୍ଷୟେ ବିଜୟେ
ତହିଁସେତେ ଦେବାଦେବୀ ସମସ୍ତେ ଅକ୍ଷୟେ ।
ଅକ୍ଷୟ ଅଙ୍ଗେ ସେବକେ ପ୍ରଭୁସଙ୍ଗେ ଥାନ୍ତି
ଅକ୍ଷୟ ଆନନ୍ଦେ ସଦା ଐଶ୍ୱର୍ଯ୍ୟ ଭୁଞ୍ଜନ୍ତି ।
ଏମନ୍ତେ ଜୈମିନି ଋଷି ନୈମିଷ କାନନେ
ବଖାଣିଲେ ମୁନିମାନଙ୍କର ସନ୍ନିଧାନେ ।
ଶ୍ରୀଦଣ୍ଡକର ଶୌନକ ଆଦି ମୁନିଗଣ
ଜୟ ଜଗନ୍ନାଥ ବୋଲି ଆନନ୍ଦେ ମଗନ ।
ଶ୍ରୀଜଗନ୍ନାଥ ପୁରାଣ ଏ ଅମୃତ ରସ
ଲକ୍ଷ୍ମୀ ପ୍ରବନ୍ଧେ ଭଣଇ ବଇଷ୍ଣବ ଦାସ ।

## ଶ୍ରୀମନ୍ଦିର ଚଉପାର୍ଶ୍ୱେ ଦେବଦେବୀ ପରିଚୟ

ଶୌନକ ଉବାଚ

ପଚାରନ୍ତି ଶଉନକ ମୁନି ଏଥୁ ଅନ୍ତେ
ହେ ଜୈମିନି ଋଷି କହ ଆମ୍ଭର ଅଗ୍ରତେ ।
ଶ୍ରୀନୀଳବୈକୁଣ୍ଠ ବେଢ଼ା ମଧ୍ୟରେ କେମନ
କେଉଁଦିଗେ ଅଛନ୍ତି କେଉଁ ଦେବ ଦେବୀଗଣ ।
ସେମାନଙ୍କ ପରିଚୟ ଦିଅ ମହାତ୍ମା
ଶ୍ରବଣ କରିବୁଁ ବେଢ଼ା ଭିତର ମହିମା ।
ଏହା ଶୁଣି ବ୍ୟାସଶିଷ୍ୟ ଜୈମିନି ତାପସ
କହି ଆରମ୍ଭିଲେ ତହିଁ ହୋଇ ହସ ହସ ।

ଜୈମିନି ଉବାଚ

ଶ୍ରବଣ କର ହେ ମୁନି ହୋଇ ଏକମନ
ସଂକ୍ଷେପି ତୁମ୍ଭ ଆଗେ ମୁଁ କରୁଛି ବର୍ଣ୍ଣନ ।
ଶ୍ରୀନୀଳବୈକୁଣ୍ଠପୁର ବେଢ଼ା ମଧ୍ୟସ୍ଥଳୀ
ଚଉପାଶେ ଅଛନ୍ତି ବେଢ଼ି ଦେବତା ମଣ୍ଡଳୀ ।
ପୂର୍ବଦିଗେ ରାଧାକୃଷ୍ଣ ମୂର୍ତ୍ତି ମନୋହର
ରାମ ଅଭିଷେକ ମୂର୍ତ୍ତି ଅତ୍ୟନ୍ତ ସୁନ୍ଦର ।
ଶ୍ରୀଚୈତନ୍ୟ-ପାଦପଦ୍ମ ଆନନ୍ଦ ବଜାର
ସ୍ନାନମଣ୍ଡପ ଗୁହାଁଣିମଣ୍ଡପ ରୁଚିର ।
ଅଗ୍ନୀଶ୍ୱର ନାମେ ଶିବ ସତ୍ୟନାରାୟଣ
ଲକ୍ଷ୍ମୀପାକ ରୋଷଶାଳ ଅପୂର୍ବ ଘଟଣ ।
ଅଛି ଯେ ଗଙ୍ଗା ଯମୁନା ନାମେ କୂପବେନି
ତଣ୍ଡୁଳ କୁଣ୍ଠା ଘର ଯେ ତା ପାରୁଶେ ପୁଣି ।
ବାଇଶ ପାବଚ୍ଛ ଶ୍ରୀନୃସିଂହ ରାମଚନ୍ଦ୍ର
ଫତେ ମହାବୀର ହନୁମନ୍ତ-କପି ଇନ୍ଦ୍ର ।
କାଶୀ ବିଶ୍ୱନାଥ ଦେବ ଶ୍ରୀମଣିବିଗ୍ରହ
ଦ୍ୱାବିଂଶ ଭୁଜରେ ଅଛି ବାଜପେୟ ନୃସିଂହ ।
ଅଗତିଜନ ତାରଣ ପତିତପାବନ
ସିଂହଦୁଆର ଅରୁଣସ୍ତମ୍ଭ ସୁଶୋଭନ ।
ଏମନ୍ତେଣ ବେଢ଼ା ପୂର୍ବଦିଗ ବିବରଣ
ଦକ୍ଷିଣ ଦିଗେ ଯେ ଅଛନ୍ତି ଦେବା ଦେବୀଗଣ ।
ଶ୍ରବଣକର ସକଳେ ମନକର୍ଣ୍ଣ ଦେଇ
ଏକ ଏକ କରି ଏବେ କହୁଛି ବୁଝାଇ ।
ଦକ୍ଷିଣେ ମୁକ୍ତିମଣ୍ଡପ ନୃସିଂହ ପ୍ରଚଣ୍ଡ
କାକ ଚତୁର୍ଭୁଜ ପଛେ ଶ୍ରୀରୋହିଣୀ କୁଣ୍ଡ ।
ପରମ ବୈଷ୍ଣବୀ ଠାକୁରାଣୀ ବିମଳାଇ
ଦୁର୍ଗା ମାଧବ ମୂରତି ବିରାଜନ୍ତି ତହିଁ ।
ଜଳକ୍ରୀଡ଼ା ମଣ୍ଡପ ଶ୍ରୀମାର୍ଜଣା ମଣ୍ଡପ
ଝୁଲଣ ମଣ୍ଡପ ଶୋଭା ପାଏ ତା ସମୀପ ।
ଅଯୋଧ୍ୟା ପରିକ୍ରମଣ ଦେବତା ମନ୍ଦିର
ମହାଦେବ ମୂର୍ତ୍ତି କଳ୍ପବଟ ବୃକ୍ଷବର ।
ଶ୍ରୀଅନନ୍ତ ବାସୁଦେବ ଅପୂର୍ବ ମୂରତି
ମାର୍କଣ୍ଡେୟ ଆଦିକଳ୍ପ ଶିବମୂର୍ତ୍ତି ଅଛି ।
ବଟମଙ୍ଗଳା ଆବର ବଟ ଗଣେଶ୍ୱର
ବଟକୃଷ୍ଣ ପତିତପାବନ କଳେବର ।
ଶଙ୍କର ଗଉରୀ ମୂର୍ତ୍ତି ରାଧାବଂଶୀଧାରୀ
ବୁଢ଼ୀମାତା ଠାକୁରାଣୀ ରୂପେ ମାହେଶ୍ୱରୀ ।
ଷଡ଼ଭୁଜେ ଶ୍ରୀଚୈତନ୍ୟ ମୂର୍ତ୍ତି ମନୋହର
ଏମନ୍ତେ ଦକ୍ଷିଣ ବେଢ଼ା ପାବଚ୍ଛ ଦୁଆର ।
ଭୀଷଣ ମୂରତି ଧରି ବୀର ହନୁମାନ
ଦକ୍ଷିଣମୁଖେ ଉଭାଅଛନ୍ତି ଅନୁକ୍ଷଣ ।
ପଶ୍ଚିମ ଦିଗରେ ସ୍ଥିତ ଯେତେ ଦେବା ଦେବୀ
ଶୁଣ ମୁନିଗଣ ତାହା ସଂକ୍ଷେପି କହିବି ।
ପ୍ରଭୁଙ୍କର ପାଟରାଣୀ ଲକ୍ଷ୍ମୀ ସରସ୍ୱତୀ
ସତ୍ୟଭାମା ଷଷ୍ଠୀଦେବୀ କାଳୀ ଭଗବତୀ ।
ଶ୍ରୀନୀଳମାଧବ ମୂର୍ତ୍ତି ଶବର ପୂଜିତ
ତାହାଙ୍କ ପାରୁଶେ କ୍ଷୀରଚୋରା ଗୋପୀନାଥ ।
ଜାହ୍ନବୀ ଯମୁନା ସରସ୍ୱତୀ ସୁପ୍ରକାଶ
ସିଦ୍ଧ ବିନାୟକ ନାମେ ଯେ ବଡ଼ ଗଣେଶ ।
ଶ୍ରୀମନ୍ଦିର ସଂଲଗ୍ନ ଯେ ନୃସିଂହ ଅଛନ୍ତି
ମହା ଭୟଙ୍କର ଅତି ବିକଟାଳ ମୂର୍ତ୍ତି ।
କଳିଯୁଗ ଭେଣ୍ଡା ବଳି ବାମନ ବିଗ୍ରହ
ଏକାଦଶୀ ମୂର୍ତ୍ତି ତହିଁ ଅଦଭୁତ ଛାୟ ।
କୁସୁମ ଉଦ୍ୟାନ ଗୋଟି ପରମ ଶୋଭନ
ବିବିଧ ମାଧବୀ ଲତା ବଦ୍ରିନାରାୟଣ ।
ତଣ୍ଡୁଳ ଭଣ୍ଡାର ପାଶେ ଅଛନ୍ତି ନବଗ୍ରହ
ବୀର ହନୁମାନ ଅଛନ୍ତି ଧରି ଦିବ୍ୟ ଦେହ ।
ଉତ୍ତର ବେଢ଼ା କଥାକୁ ଶୁଣ ମୁନିଗଣ
[illegible] ଭଣ୍ଡାର ପାଶେ ସୂର୍ଯ୍ୟ-ନାରାୟଣ ।

ପାଦୁକ କୁଣ୍ଡ ଶ୍ରୀରାମ ପାତାଳ ଈଶ୍ୱର
ଈଶାନେଶ୍ୱର ଲିଙ୍ଗ ଯେ ଲୋକନାଥ ହର ।
ଶ୍ରୀବୈକୁଣ୍ଠ ରାଧାକୃଷ୍ଣ ଶ୍ରୀପଞ୍ଚଲେଶ୍ୱର
ଶ୍ରୀହରିହର ମିଳନ ମହା ମନୋହର ।
ଉତ୍ତରାୟଣୀ ଶୀତଳା ଝାଡ଼େଶ୍ୱରୀ ଦେବୀ
ସୁବର୍ଣ୍ଣ କୂପ ପାନ୍ତେଶ ପରମ ବୈଷ୍ଣବୀ ।
ଏମନ୍ତେ ଉତ୍ତରଦିଗ ଦେବ ଦେବୀ ସ୍ଥାନ
ବେଢ଼ା ପ୍ରଦକ୍ଷିଣ କାଳେ କରନ୍ତୁ ଦର୍ଶନ ।
ଆବର ଶ୍ରବଣକର ସର୍ବ ତପୋଧନ
ଶଙ୍ଖନାଭି ମଣ୍ଡଳରେ ସାଧଙ୍କ ଆସ୍ଥାନ ।
ପୂର୍ବ ଦିଗରେ ଅଙ୍ଗିରା ଋଷିଙ୍କ ଆଶ୍ରମ
ପୈଳ ମହାତମାଙ୍କ କୁଟୀର ମନୋରମ ।
ଦକ୍ଷିଣଦିଗେ ଯେ ବୈଶମ୍ପାୟନଙ୍କ ମଠ
ଯଜୁର୍ବେଦୀ ମହର୍ଷି ସେ ବ୍ୟାସଙ୍କର ଶିଷ୍ଟ ।
ପଶ୍ଚିମ ଦିଗରେ ମୋର ଆଶ୍ରମ ଅଛଇ
ସାମବେଦ ସ୍ୱରନ୍ତରେ ଗାନ କରୁଥାଇ ।
ଉତ୍ତରେ ଯେ ସପ୍ତକଳ୍ପ ଜୀବୀ ଋଷିବର
ଭୁବନେ ବିଖ୍ୟାତ ନାମ ମାର୍କଣ୍ଡେୟ ହର ।
ଅଥର୍ବବେଦୀ ସୁମନ୍ତ ଋଷି ତାଙ୍କ ପାଶେ
ବାସ କରିଅଛନ୍ତି ସେ ଭୁକ୍ତି ମୁକ୍ତି ଆଶେ ।
ଏମନ୍ତେ ଅନେକ ଋଷିମୁନି ଯୋଗୀ ଯତି
ଶ୍ରୀକ୍ଷେତ୍ର ମଧ୍ୟରେ ବାସ କରି ରହିଛନ୍ତି ।
ଭୋଗ କରଣ ଐଶ୍ୱର୍ଯ୍ୟ ପାନ୍ତି ଯୋଗଫଳ
ଯେଣୁ ଭୁକ୍ତି ମୁକ୍ତି ସଦା ଶ୍ରୀକ୍ଷେତ୍ରରେ ଠୁଳ ।
ବ୍ରହ୍ମର୍ଷି ଦେବର୍ଷି ଯେତେ ରାଜର୍ଷି ମହର୍ଷି
ବାସ କରିଛନ୍ତି ସର୍ବେ ନୀଳାଦ୍ରିରେ ଆସି ।
ମହାମୁନି ବ୍ୟାସଦେବ ଶିଷ୍ୟଗଣ ସଙ୍ଗେ
କ୍ଷେତ୍ରବାସୀ ହୋଇଛନ୍ତି ଅତି ଅନୁରାଗେ ।
ଏହାଶୁଣି ଶୌନକାଦି ଆନନ୍ଦିତ ହେଲେ
ଶ୍ରୀକ୍ଷେତ୍ରେ ବାସ କରିବା ପାଇଁ ବିଚାରିଲେ ।
ସେହି ସାଧୁ ସନ୍ଥମାନଙ୍କର ମୁହିଁ ଦାସ
ବୈଷ୍ଣବ ଦାସ କହେ ଏ ପୁରାଣ ପ୍ରକାଶ ।



## ଶ୍ରୀଜଗନ୍ନାଥ ଦର୍ଶନ ବିଧି

### ଶୌନକ ଉବାଚ

ପୁଚ୍ଛିଲେ ଶୌନକ ଆଦି ବ୍ୟାସଙ୍କର ଠାରେ
ଦୟାକରି ଆମ୍ଭ ଆଗେ କରନ୍ତୁ ପ୍ରକାଶ ।
ଶ୍ରୀଜଗନ୍ନାଥ ଦର୍ଶନ କରିବାର ବିଧି
କହିବା ହେଉ ଆମନଙ୍କୁ ଏବେ ଋଷି ନାଥ ।

### ଜୈମିନି ଉବାଚ

ଜୈମିନି ବୋଲନ୍ତି ଶୁଣ ବିଜ୍ଞ ତପୋଧନ
ଶ୍ରୀଜଗନ୍ନାଥ ଦେବଙ୍କ ଦର୍ଶନ ବିଧାନ ।
ସିଂହଦ୍ୱାରେ ନମସ୍କାର କରି ପ୍ରଥମରେ
ପ୍ରବେଶିବ ଶ୍ରୀହରିଙ୍କ ମନ୍ଦିର ଭିତରେ ।
ପତିତପାବନ ମୂର୍ତ୍ତି ଦର୍ଶନ କରିବ
କାଶୀ ବିଶ୍ୱନାଥେ ଦରଶନ ଆଚରିବ ।
ତଦନ୍ତେ ଭୋଗମଣ୍ଡପଠାକୁ ଯିବଚଳି
ଆଜାନୁନାଥେ ନମିବ ହୋଇ କୃତାଞ୍ଜଳି ।
ବିଘ୍ନେଶ ବଟେଶ ବଟମଙ୍ଗଳ ଦର୍ଶନେ
ବଟ ପ୍ରଦକ୍ଷିଣ କରି ହରଷିତ ମନେ ।
ଅନନ୍ତ ପୁରୁଷୋତ୍ତମ କ୍ଷେତ୍ରପାଳ ଦେବ
ଶ୍ରୀନୃସିଂହ ମୂରତିଙ୍କି ଦର୍ଶନ କରିବ ।
ମୁକ୍ତିମଣ୍ଡପ ଦର୍ଶନ କରି ଆନନ୍ଦରେ
ରୋହିଣୀ କୁଣ୍ଡର ଜଳ ସିଞ୍ଚିବ ମୁଣ୍ଡରେ ।
ତହିଁ କାକ ପଡ଼ି ହୋଇଅଛି ଚତୁର୍ଭୁଜ
ସ୍ପର୍ଶ କରି ତାକୁ ତହୁଁ ଯିବ ହୋଇ ଭଜ ।
ବିମଳା ଦେବୀଙ୍କି ନମସ୍କାର କରି ଜାଣ-
ଦର୍ଶନ କରିବ ତହୁଁ ଚକ୍ର ସୁଦର୍ଶନ ।
ସରସ୍ୱତୀ ଦେବୀ ମହାଲକ୍ଷ୍ମୀ ଠାକୁରାଣୀ
ତାହାଙ୍କ ପାଦେ ନମିବ ଯୋଡ଼ି ବେନି ପାଣି ।
ଅର୍କକ୍ଷେତ୍ର ଆଦି ଭଲେ କରି ଦରଶନେ
ପାତାଳନାଥ ଈଶାନେ କରିବ ପ୍ରଣାମ ।
ଉତ୍ତରେ ଉତ୍ତରାୟଣୀ ଚରଣେ ନମିବ
ପାଦପଦ୍ମ ଯୁଗଳରେ ମଥା ଲଗାଇବ ।
ବଟ ଚକ୍ର ସାଗର ଦର୍ଶନ କରିସାରି
ଜଗନ୍ମୋହନ ମନ୍ଦିରେ ଯିବ ମୋଦଭରି ।
ଦର୍ଶନ କରିବ ତହିଁ ଆର ହନୁମାନେ
ଗରୁଡ଼ ସ୍ତମ୍ଭରେ ଶିର ମଣ୍ଡିବ ଯତନେ ।

ନିଦ୍ରାନ୍ତେ ଚଳିବ ସୁଖେ ଧାଇଁ ମନ୍ଦିରକୁ
କରଯୋଡ଼ି ପ୍ରଣମିବ ଜୟ ବିଜୟଙ୍କୁ ।
ରତ୍ନ ଲେଖାଙ୍କିତ ଦ୍ୱାରେ ଦର୍ଶନ କରିଣ
ଚନ୍ଦନ ଅର୍ଗଳି ଲଙ୍ଘି କରିବ ଗମନ ।
ଶ୍ରୀମନ୍ଦିର ମଧ୍ୟେ ରତ୍ନ ସିଂହାସନ ପରେ
ଚତୁର୍ଦ୍ଧା ମୂର୍ତ୍ତିଙ୍କି ବିଲୋକିବ ଭକ୍ତିଭରେ ।
ବଳଭଦ୍ର ସୁଭଦ୍ରା ଶ୍ରୀଜଗନ୍ନାଥ ଦେବ
ସୁଦର୍ଶନ ସହିତେ ସେ ଦର୍ଶନ କରିବ ।
ସରସ୍ୱତୀ ମହାଲକ୍ଷ୍ମୀ ଜଗତର ମାତା
ପ୍ରଭୁଙ୍କ ନିକଟେ ରତ୍ନସିଂହାସନେ ସ୍ଥିତା ।
ଧ୍ୟାନସ୍ତୁତି କରି ଦଣ୍ଡବତ ଆଚରିବ
ସେ ଭକ୍ତରୁ ବ୍ରହ୍ମଭାଗ ଦର୍ଶନ କରିବ ।
ପ୍ରଦକ୍ଷିଣ କରି ପରେ ବାପିକୁ ବହନ
ଦର୍ଶନ କରିବ ଯାଇ କପାଳମୋଚନ ।
ନୀଳକଣ୍ଠ ଯମେଶ୍ୱର ବିଲ୍ୱେଶ୍ୱର ଶିବ
ଲୋକନାଥ ମାର୍କଣ୍ଡେୟ ଚରଣେ ନମିବ ।
ଏମନ୍ତେ ଦେବ ଦେବୀଙ୍କି ଦରଶନ କରି
ବାଞ୍ଛିତ ଫଳ ଲଭିବ ଆନନ୍ଦ ଉପଗୃହୀ ।
ବିମଳା ଭୈରବୀ ରୂପ ସେ ଦେବ ଦୁର୍ଲ୍ଲଭ
ଆପଣେ ଶ୍ରୀଜଗନ୍ନାଥ ଅଟନ୍ତି ଭୈରବ ।
ଶ୍ରୀନୀଳାଚଳ ନିବାସୀ ପରମାତ୍ମା ନିତ୍ୟ
ବଳଭଦ୍ର ସୁଭଦ୍ରା ଶ୍ରୀସୁଦର୍ଶନ ସାଥ ।
ଏମନ୍ତ ଶ୍ରୀଦାରୁବ୍ରହ୍ମ ମୂର୍ତ୍ତି ଭଗବାନ
ଯୁଗେ ଯୁଗେ ନୀଳାଦ୍ରିରେ ବିଜୟେ ଆପଣ ।
ଆହେ ମୁନିମାନେ ସର୍ବକର୍ମ୍ମ ଦୂରେ ତେଜ
କେବଳ ଭକତି ଭାବେ ଜଗନ୍ନାଥେ ଭଜ ।
ସର୍ବତୀର୍ଥ ସର୍ବଧାମ ସଙ୍ଗେ ଘେନି ହରି
ଶ୍ରୀନୀଳକନ୍ଦରେ ପ୍ରଭୁ ଛନ୍ତି ବିଜେକରି ।
ପତିତଜନ ତାରଣେ କରୁଣା ବିସ୍ତାରି
ବଳୀୟାରଭୁଜକୁ ସେ ଅଛନ୍ତି ପ୍ରସାରି ।
ଏମନ୍ତେ ଜୈମିନି ଋଷି ମୁନି ମଣ୍ଡଳୀରେ
ପ୍ରକାଶକଲେ ଦର୍ଶନ ବିଧି ଆନନ୍ଦରେ ।
ଅଧମ ପାମର ମୁଁ ସେ ବୈଷ୍ଣବ ଦାସ
ପ୍ରଭୁ ଦର୍ଶନକୁ ନ ପାଉଛି ଅବକାଶ ।

—:*:—

## ଗ୍ରନ୍ଥ ସମାପନ

ଏହିସେ ଅବଧି ଗ୍ରନ୍ଥ ହେଲା ସମାପନ
ଶେଷ କରିବାରେ ମୋର ବିଦାରେ ପରାଣ ।
କି ଜାଣେ ବର୍ଣ୍ଣିବ ମୁଁ ଯେ ମୂର୍ଖ ଅଜ୍ଞଜନ
ମହାଜନେ କୃପାକରି କରିବେ ଶୋଧନ ।
ମୁଁ ଅଧମ କରିନାହିଁ ବିଦ୍ୟା ଅଧ୍ୟୟନ
ଶ୍ରୀଗୁରୁଙ୍କ ଆଜ୍ଞାବଳେ କଲି ବିରଚନ ।
ସଂସ୍କୃତ ଭାଷାରୁ ଏହା ଉତ୍କଳଅକ୍ଷରେ
ଲେଖିଲଇଁ ଜଗନ୍ନାଥ ଯାହା ଆଜ୍ଞାକଲେ ।
କପୋଳକଳ୍ପିତ ମୋର କିଛିନାହିଁ ଏଥେ
ଉତ୍କଳ-ଖଣ୍ଡର ଅନୁବାଦ କଲି ଗୀତେ ।
ଶ୍ରୀଜଗଦୀଶ ପୁରାଣ ନାମେ ଗ୍ରନ୍ଥ ସାର
ସାକ୍ଷାତେ ଶ୍ରୀଗୋବିନ୍ଦଙ୍କ ଶ୍ରୀମୁଖୁଁ ବାହାର ।
ଜଗନ୍ନାଥଙ୍କର ଯେତେ ପ୍ରିୟ ଭକ୍ତଗଣ
ଶ୍ରଦ୍ଧା ଅନୁରାଗେ ଏହା କରିବେ ଶ୍ରବଣ ।
ସରଳ ଭାଷାରେ ଜଗନ୍ନାଥଙ୍କ ଚରିତ
ସ୍ୱପ୍ନ ଆଦେଶରୁ ଏ ଯେ ହୋଇଛି ବର୍ଣ୍ଣିତ ।
ସେହି ଯେ ଅଚ୍ୟୁତ ହରି ମୋର ନିଜ ଗୋତ୍ର
ସେ ସମ୍ବନ୍ଧ ହେଲୁ ଏହୁ ପରମ-ପବିତ୍ର ।
ଚାରିଖଣ୍ଡେ ଏ ପୁରାଣ ହୋଇଲା ସମ୍ପୂର୍ଣ୍ଣ
ସୃଷ୍ଟି ଖଣ୍ଡ ଲୀଳା ଖଣ୍ଡ କ୍ଷେତ୍ର ଖଣ୍ଡ ପୁଣ ।
ମହିମା ଖଣ୍ଡ ସହିତେ ବିଭାଗ ଏ ଚାରି
ବିଷ୍ଣୁ ଉପାସକେ ଘେନ ହେ ବୁଝି ବିଚାରି ।
ଏକେ ଏକେ ପ୍ରତିଖଣ୍ଡେ କରି ଆସ୍ୱାଦନ
ଅନୁକ୍ରମେ କହୁଅଛି ଶୁଣ ଶ୍ରୋତାଗଣ ।
ସୃଷ୍ଟି ଖଣ୍ଡେ ବ୍ରହ୍ମସ୍ତବ ମାଧବ ଦର୍ଶନ
ଲକ୍ଷ୍ମୀମୁଖୁଁ କ୍ଷେତ୍ରତତ୍ତ୍ୱ ଶୁଣିଲେ ଶମନ ।
ପୁଣ୍ଡରୀକ ଅମ୍ବରୀଷ ଦୁହିଁଙ୍କ ଉଦ୍ଧାର
ଓଡ୍ରଦେଶ ସୀମା ପୁଣ ମହିମା ପ୍ରଚୁର ।
ଲୀଳା ଖଣ୍ଡେ ଇନ୍ଦ୍ରଦ୍ୟୁମ୍ନ ରାଜାର କଥନ
ଜଟିଳ ବେଶରେ ହରି କଲେ ଆଗମନ ।
ଶ୍ରୀକ୍ଷେତ୍ର ମହିମା କହି ହେଲେ ଅନ୍ତର୍ଦ୍ଧାନ
ତହୁଁ ବିଦ୍ୟାପତି କଲେ ଶ୍ରୀକ୍ଷେତ୍ର ପ୍ରୟାଣ ।
ନୀଳମାଧବ ଦର୍ଶନ ତାଙ୍କ ଅନ୍ତର୍ଦ୍ଧାନ
[illegible]ରାଜାପାଶେ ଗଲେ ସେ ଭକ୍ତ ବ୍ରାହ୍ମଣ ।

ପ୍ରଭୁ ବୃତ୍ତାନ୍ତ କଥନ ନାରଦ ଗମନ
ମୁନିସଙ୍ଗେ ଶ୍ରୀକ୍ଷେତ୍ରକୁ ଯିବାର ସଜନ ।
ଏକାମ୍ର କାନନେ ଶିବ ଚରିତ ଶ୍ରବଣ
ସିଦ୍ଧ ସ୍ୱର୍ଣ୍ଣାଦ୍ରିକ ତାଙ୍କ ଗମନ କାରଣ ।
ଲିଙ୍ଗରାଜ ବିଲ୍ୱେଶ୍ୱର ମହିମା ପ୍ରଚୁର
ସଂକ୍ଷେପରେ କୃଷ୍ଣଲୀଳା ଚରିତ ବିସ୍ତାର ।
ଏମନ୍ତେଣ ଲୀଳା ଖଣ୍ଡ ସୁଧାମୟ ରସ
ଶ୍ରୀକ୍ଷେତ୍ର ଖଣ୍ଡେ ଆବର ବର୍ଣ୍ଣନ ବିଶେଷ ।
ଇନ୍ଦ୍ରଦ୍ୟୁମ୍ନ ରାଜା କ୍ଷେତ୍ର ଗମନ ଉତ୍ତରେ
ଯାହା ଯାହା କାର୍ଯ୍ୟ କଲେ ଯାଇ ସେହିଠାରେ
ଶ୍ରୀପୁରୁଷୋତ୍ତମ ସ୍ତୁତି ନୃସିଂହ ପ୍ରତିଷ୍ଠା
ଅଶ୍ୱମେଧ ମହାଯଜ୍ଞ କଲେ ବିହି ନିଷ୍ଠା ।
ସେ ଭକ୍ତ ରାଜାଙ୍କ ଭଗବତ ଦରଶନ
ତଦନ୍ତେଣ ଦାରୁବ୍ରହ୍ମ ପ୍ରତିମା ନିର୍ମାଣ ।
ଚତୁର୍ଦ୍ଧା ମୂର୍ତ୍ତିରେ ଶ୍ରୀହରିଙ୍କ ଆବିର୍ଭାବ
ପ୍ରିୟମ୍ବଦର ଗନେଶ ଦରଶନ ଲାଭ ।
ଇନ୍ଦ୍ରଦ୍ୟୁମ୍ନ ସରୋବର ଉତ୍ପତ୍ତି କଥନ
ଶ୍ରୀବଡ଼ଦେଉଳ ପ୍ରତିଷ୍ଠାର ବିବରଣ ।
ବ୍ରହ୍ମଲୋକେ ଇନ୍ଦ୍ରଦ୍ୟୁମ୍ନ ଗମନ ବୃତ୍ତାନ୍ତ
ଦେଉଳ ପ୍ରତିଷ୍ଠା ଆୟୋଜନ ଯେ ସମସ୍ତ ।
ଦେବଗଣ ସହ ବ୍ରହ୍ମାଙ୍କର ଆଗମନ
ମହାଉତ୍ସବେ ଦେଉଳ ପ୍ରତିଷ୍ଠା ବିଧାନ ।
ଏ ଅନ୍ତେ ମହିମା ଖଣ୍ଡେ ହୋଇଛି ବର୍ଣ୍ଣନ
ଜଗନ୍ନାଥଙ୍କ ନୃସିଂହ ମୂରତି ଧାରଣ ।
ରଥ ଆଦି ଯେ ସକଳ ଯାତ୍ରା ବିବରଣ
ଦେବଙ୍କ ଭୁଲେ ବ୍ରହ୍ମାଙ୍କ ସ୍ୱସ୍ଥାନେ ଗମନ ।
ଶ୍ୱେତରାଜାକୁ ହରିଙ୍କ ସେବା ସମର୍ପିଣ
ବ୍ରହ୍ମଲୋକେ ଇନ୍ଦ୍ରଦ୍ୟୁମ୍ନ ଗମନ କଥନ ।
ଶ୍ରୀମହାପ୍ରସାଦ ତତ୍ତ୍ୱ ଅମୃତହୁଁ ସ୍ୱାଦ
ମାହାତ୍ମ୍ୟ ପ୍ରସଙ୍ଗେ ଶିବ ନାରଦ ସମ୍ବାଦ ।
ଶାଣ୍ଡିଲ୍ୟ ମୁନି ଆଖ୍ୟାନ କୈବଲ୍ୟ ମହିମା
ଦ୍ୱାଦଶ ଯାତ୍ରା ବିଧାନ ଯାର ନାହିଁ ସୀମା ।
ଚଉଣ୍ଡା ମହିମା ପୁଣି ନିର୍ମାଲ୍ୟ ମହିମା
ତଦନ୍ତେଣ ପୁଷ୍ପ ଫଳ ପ୍ରଦାନ ଗରିମା ।
ଶ୍ରୀକ୍ଷେତ୍ର ଗମନ, ଫଳ ଅତି ଅକଥନ
ସୁଦନ୍ତ ସୁମନ୍ତ ଦୁଇ ଦ୍ୱିଜଙ୍କ ଆଖ୍ୟାନ ।
ସମଦୁଃଖ ବିଷ୍ଣୁଦୂତ ଦ୍ୱନ୍ଦ୍ୱ ସମାପ୍ତର
ମୁକ୍ତିଲାଭ ହୋଇବାର ସୁମନ୍ତ ଦ୍ୱିଜର ।
ମହାବୈକୁଣ୍ଠ ମହିମା ଅତି ଚମତ୍କାର
ଅଷ୍ଟ ବଇକୁଣ୍ଠ ବିବରଣ ତଦନ୍ତର ।
ବଡ଼ ବିଚିତ୍ର କୋଇଲି ବୈକୁଣ୍ଠ ମହିମା
ଦେବାଦେବୀ ଦରଶନ ବେଢ଼ା ପରିକ୍ରମା ।
ଶ୍ରୀଜଗନ୍ନାଥ ଦର୍ଶନ ବିଧି ସମ୍ପନ୍ନତେଣ
ସର୍ବଶୁଭେ ଏ ପୁରାଣ ଗ୍ରନ୍ଥ ସମାପନ
ଏହିସବୁ କଥା ଉତ୍କଳଖଣ୍ଡରେ ପ୍ରଚାର
ବର୍ଣ୍ଣିଛନ୍ତି ବ୍ୟାସଦେବ ବାନ୍ଧି ସାରସାର ।
ଜୈମିନି ଋଷିବରଙ୍କ ଚର୍ଚ୍ଚିତ ଚର୍ବଣ
ଶ୍ରୀଗୁରୁଙ୍କ କୃପାବଳେ କଲି ଆସ୍ୱାଦନ ।
ପୁଣି ସ୍ୱପ୍ନ ଆଜ୍ଞାପାଇ ସର୍ବଶୁଭେ ମୁହିଁ
ବିରଚିଲି ଏ ପୁରାଣ ମାନସେ ଶତୋଇ ।
ମନଗଢ଼ା କଥା ଏଥି କିଛି ନାହିଁ ମୋର
ଶ୍ରୀମୁଖ ବଚନ ଗୀତେ କଲଇଁ ପ୍ରଚାର ।
ଶ୍ରୀକ୍ଷେତ୍ର ନିବାସୀ ବୈଷ୍ଣବଙ୍କ ଅନୁଗ୍ରହେ
ପ୍ରକାଶିତ ଏ ପୁରାଣ ଭକତ ସମୂହେ ।
ଏବେ ଗ୍ରନ୍ଥଫଳ ଯାହା କରିବି ପ୍ରକାଶ
କୃତାଞ୍ଜଳି ଭାବେ ଭଣେ ବଇଷ୍ଣବ ଦାସ ।

—ଃ*ଃ—

## ଫଳଶ୍ରୁତି

ଶ୍ରବଣ କରହେ ସର୍ବ ବିଷ୍ଣୁଭକ୍ତଗଣ
ଏ ପୁରାଣ ଫଳ ଅଟେ ଅତି ଅକଥନ ।
ଏ ସକଳ କଥା ଯେହୁ ଶ୍ରଦ୍ଧାଚିତ୍ତେ ଶୁଣେ
ସବୁଠାରେ ଜୟ ତାର ସୁଖୀ ଦିନୁଦିନେ ।
ଅପୁତ୍ରକ ଜନ ଯେବେ ଶୁଣେ ଏ ପୁରାଣ
କୋଳକୁ ତା ପତ୍ନୀ ପାଏ ଉତ୍ତମ ନନ୍ଦନ ।
ନିର୍ଦ୍ଧନ ପ୍ରାଣୀ ଶ୍ରବଣ କଲେ ଏ ଚରିତ
ଲକ୍ଷ୍ମୀଙ୍କ ପ୍ରସନ୍ନେ ସେହୁ ହୁଏ ଧନବନ୍ତ ।
କାକବନ୍ଧ୍ୟା ନାରୀ ଯେବେ ଶୁଣେ ମନଦେଇ
ଅପୂର୍ବ ସୁନ୍ଦର ପୁତ୍ର ସେ ନିଶ୍ଚେ ଲଭଇ ।
ଦୃଢ଼ଭକ୍ତି କରି ଯେବା ନିଶ୍ଚଳରେ ଶୁଣେ
ଅନାୟାସେ ବିଷ୍ଣୁଧାମେ ଚଳେ ସେ ଆପଣେ
ଭାବେ ଗଦଗଦ ହୋଇ ଶୁଣେ ଯେଉଁ ଜନ
ଯାହାଇଚ୍ଛେ ତାହା ପାଏ ସତ୍ୟ ଏ ବଚନ ।

ଆରମ୍ଭିବ ଏ ପୁରାଣ ପୂଜି ଜଗନ୍ନାଥେ
ପୂର୍ଣ୍ଣଦିବସରେ ପୁଣି ପୂଜିବ ଶ୍ରୀକାନ୍ତେ ।
ଯଥାଯୋଗ୍ୟ ପାଠକଙ୍କୁ କରିବ ସମ୍ମାନ
ସମ୍ପୂର୍ଣ୍ଣ ଦିନ କରିବ ମଙ୍ଗଳ ବିଧାନ ।
ଦୂର୍ବାଧାନ୍ୟ ଦଧି ଦୁଗ୍ଧ ହରିଦ୍ରା ସହିତେ
ସୁମଙ୍ଗଳ କର୍ମ୍ମ ଆଚରିବ ବିଧିମତେ ।
ପ୍ରଭୁ ପ୍ରୀତିଅର୍ଥେ ମହାଉତ୍ସବ ଭିଆଇ
ବିଷ୍ଣୁଭକ୍ତଙ୍କୁ ପ୍ରସାଦ ଭୁଞ୍ଜାଇବ ନେଇ ।
ଦୁଃଖୀ ଦରିଦ୍ରଙ୍କୁ ଅନ୍ନବସ୍ତ୍ରରେ ତୋଷିବ
ଶ୍ରୀହରି ନାମ କୀର୍ତ୍ତନେ ରଯାଇ ରସିବ ।
ଏମନ୍ତ ବିଧାନେ କଲେ ପୁରାଣ ଶ୍ରବଣ
ସର୍ବ ମନୋରଥ ନିଶ୍ଚେ ହୋଇବ ପୂରଣ ।
ବିଷ୍ଣୁଭକ୍ତ ମୁଖୁଁ କଲେ ଏ ଗ୍ରନ୍ଥ ଶ୍ରବଣ
ସହସ୍ରେ ଅଶ୍ୱମେଧର ଫଳମିଳେ ଜାଣ ।

ଅର୍ଦ୍ଧୋଦୟ ଯୋଗେ ଯେଉଁ ପୁଣ୍ୟଲାଭ ହୁଏ
ତହୁଁ କୋଟିଗୁଣେ ପୁଣ୍ୟ ଶୁଣିଲେ ନିଶ୍ଚୟେ ।

ପ୍ରାତଃକାଳେ ଏ ପୁରାଣ ଯେଉଁଜନ ଶୁଣେ
କପିଳା ଗୋଦାନ ଫଳ ପାଏ ତତକ୍ଷଣେ ।

ତ୍ରିସନ୍ଧ୍ୟାକାଳେ ଶ୍ରବଣ କଲେ ଏ ପୁରାଣ
ପୁଷ୍କରଗଙ୍ଗାର ସ୍ନାନ ଫଳଟି ପ୍ରମାଣ ।

ଆୟୁ ଯଶ ଧନ ବଢ଼େ ମିଳେ ସୁଖ ଶାନ୍ତି
ଅନ୍ତକାଳେ ନ ଲାଗଇ କାଳଦଣ୍ଡ ଭ୍ରାନ୍ତି ।

ପ୍ରଭୁଙ୍କ ଆଜ୍ଞାରେ ଏ ପୁରାଣ ହେଲା ଶେଷ
ପଢ଼ି ଶୁଣି ହରିଭକ୍ତେ ଚିନ୍ତ ହୃଷୀକେଶ ।

ସେ କଳା ଶ୍ରୀମୁଖ ହରି ଜଗତ-ନିବାସ
ପାଦପଦ୍ମେ ଶରଣ ମୁଁ ବଇଷ୍ଣବ ଦାସ ।

ସମାପ୍ତଶ୍ଚାୟଂ, ଶ୍ରୀ ଉତ୍କଳ ଖଣ୍ଡସ୍ୟ ଛପାରୂପ
ଶ୍ରୀ ଜଗଦୀଶ ପୁରାଣ ନାମକୋ ଗ୍ରନ୍ଥଃ ।
ଶ୍ରୀ ଶ୍ରୀ କୃଷ୍ଣାର୍ପଣମସ୍ତୁ ।




ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଦାସ୍, ଦୁର୍ଗା ପ୍ରେସ, ଖଟବିନ ସାହି, କଟକ-୧